# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**February-March 2012**


୬୮ ଭାଗ | ୭ମ/୮ମ ସଂଖ୍ୟା | ମାଘ-ଚୈତ୍ର | ଫେବୃଆରୀ-ମାର୍ଚ୍ଚ-୨୦୧୨





**ପ୍ରତିଖଣ୍ଡ : ଟ. ୫.୦୦**


---




ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪-୨୫୩୦୨୧୧

# ସୂଚୀ





## ସମ୍ପାଦକୀୟ

# ଏବେ ବି ରାଷ୍ଟ୍ରରତ୍ନ ବିଜୁ ପଟ୍ଟନାୟକ ଜୀବନ୍ତ

ଆଜି ମାର୍ଚ୍ଚ ୫-ବିଜୁବାବୁଙ୍କ ଜନ୍ମ ଦିନ । ତାଙ୍କର ଅବର୍ତ୍ତମାନରେ ସେ ବେଶି ପ୍ରାସଙ୍ଗିକ ଓ ଜୀବନ୍ତ ହୋଇ ଯାଇଛନ୍ତି । କାରଣ ସ୍ୱାଧୀନତା ପୂର୍ବର ଓଡ଼ିଶାରେ ଦେଶଗୌରବ ମଧୁସୂଦନ ଦାସଙ୍କ ପରି ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାରେ ଯଦି କେହି ଜଣେ ନିର୍ଭୀକ, ସ୍ୱାଭିମାନୀ ତଥା ଉତ୍ତୁଙ୍ଗ ପୁରୁଷାର୍ଥର ଅଧିକାରୀ ଥିଲେ, ତ ସେ ହେଉଛନ୍ତି ଦେଶରତ୍ନ ବିଜୁ ପଟ୍ଟନାୟକ- ଯାହାଙ୍କୁ ପ୍ରତ୍ୟେକ ଓଡ଼ିଆ ଶ୍ରଦ୍ଧାରେ କଳିଙ୍ଗ କେଶରୀ (ଗ୍ରାମାଞ୍ଚଳର ସ୍ୱଳ୍ପ ଶିକ୍ଷିତ ମଣିଷର ସେ ଥିଲେ ସ୍ନେହର 'କଳିଙ୍ଗ ଷଣ୍ଢ') ବୋଲି ସମ୍ବୋଧନ କରୁଥିଲେ, ଆଜି ବି କରୁଛନ୍ତି ।

କ୍ଷମତାରେ ଥାନ୍ତୁ ବା ନ ଥାନ୍ତୁ, ବିଜୁବାବୁ ଥିଲେ ବିଜୁବାବୁ-ଯିଏ ନିଜର ଉଦାହରଣ ନିଜେ ଥିଲେ । ତାଙ୍କ ସମ୍ପର୍କରେ ଅଧିକ କିଛି କହିବା ସୂର୍ଯ୍ୟଙ୍କୁ ପ୍ରଦୀପ ଦେଖାଇବା ପରି ହେବ ।

ତେବେ ତାଙ୍କର ମହାନତାର, ଶ୍ରେଷ୍ଠତାର ଓ ଉତ୍ତୁଙ୍ଗ ନେତୃତ୍ୱର ପ୍ରମାଣ ହେଉଛି ତାଙ୍କ ତିରୋଧାନର ବେଶ୍ କିଛି ବର୍ଷ ପରେ ବି ତାଙ୍କ ବିଚାରଧାରା, କାର୍ଯ୍ୟ ପ୍ରଣାଳୀ ତଥା ଦେଶ ଗଠନର ସ୍ୱପ୍ନ, କୋଟି କୋଟି ଓଡ଼ିଆଙ୍କୁ ଏବେ ବି ଉଦ୍‌ବୁଦ୍ଧ କରୁଛି ଏବଂ ଆଗାମୀ ଅନେକ ବର୍ଷ ଯାଏଁ ଲୋକେ ନିଜ ସ୍ୱପ୍ନର ନାୟକଟିଏ ବୋଲି ବିଜୁବାବୁଙ୍କୁ ହିଁ ସମ୍ମାନ ପ୍ରଦର୍ଶନ କରି ଚାଲିଥିବେ । ସେ ଆଜି ନାହାନ୍ତି, ହେଲେ ସେ ଆମ ମାନସ ରାଜ୍ୟରେ ବଂଚିଛନ୍ତି, ଯେମିତି ସେ ବଂଚିଥିଲେ ନିଜ ସମୟରେ ।

ବିଜୁବାବୁ ଓଡ଼ିଆ ଜାତିର ପ୍ରେରଣାର ଉତ୍ସ, ଯେମିତି ପ୍ରେରଣାର ଉତ୍ସ ଥିଲେ ଖାରବେଳ, କପିଳେନ୍ଦ୍ର, ମଧୁବାବୁ ।

ବିଜୁ ପଟ୍ଟନାୟକଙ୍କ ମାଟିର ଶରୀର ମାଟିରେ ମିଶି ଯାଇଥିଲେ ବି ସେ ଆମ ଚିନ୍ତା ଓ ଚେତନାରେ ଜୀବନ୍ତ ହୋଇ ରହିଛନ୍ତି ଏବଂ ଜୀବନ୍ତ ହୋଇ ସବୁଦିନେ ରହିଥିବେ ।

## ପଞ୍ଚାୟତିରାଜ ଦିବସର ଅନୁଚିନ୍ତା

ମାର୍ଚ୍ଚ ୫ ତାରିଖ- ବେଶ୍ କିଛି ବର୍ଷ ହେଲା ଏହି ଦିବସଟି ଓଡ଼ିଶାରେ ପଞ୍ଚାୟତିରାଜ ଦିବସ ଭାବେ ପାଳିତ ହେଉଛି । ଏହି ଦିନଟି ଓଡ଼ିଶାର ବରପୁତ୍ର ଓ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ସର୍ବାଧିକ ଲୋକପ୍ରିୟ ଜନନାୟକ, ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କର ଜନ୍ମ ଦିବସ । ଓଡ଼ିଶାରେ ପଞ୍ଚାୟତିରାଜ ଅନୁଷ୍ଠାନକୁ ଶକ୍ତିଶାଳୀ କରି ଗଠନ କରିବାରେ ବିଜୁବାବୁଙ୍କ ଅବଦାନ ଅତୁଳନୀୟ । କାରଣ ତାଙ୍କର ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀତ୍ୱ (୧୯୯୦-୯୫) ପୂର୍ବରୁ ଓଡ଼ିଶାରେ ପ୍ରଚଳିତ ପଞ୍ଚାୟତିରାଜ ବ୍ୟବସ୍ଥା ନିହାତି ଦୁର୍ବଳ ଏବଂ ରାଜ୍ୟ ସରକାରଙ୍କ ମର୍ଜି ଅନୁସାରେ ପରିଚାଳିତ ଏକ ଅନୁଷ୍ଠାନ ଥିଲା । ରାଜ୍ୟ ସରକାର ଯେତେବେଳେ ଚାହୁଁଥିଲେ ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତିକୁ ଇଚ୍ଛାନୁସାରେ ଭାଙ୍ଗି ଦେଉଥିଲେ ବା ନିର୍ବାଚିତ ପଞ୍ଚାୟତ ସ୍ତରୀୟ ପ୍ରତିନିଧିଙ୍କୁ ନିଲମ୍ବିତ କିମ୍ବା ବହିଷ୍କାର କରିଦେଇ ପାରୁଥିଲେ । କାରଣ ପଞ୍ଚାୟତିରାଜ ଆଇନ୍‌ଟି ସେହିପରି ଅତି ଦୁର୍ବଳ ତଥା ତ୍ରୁଟିପୂର୍ଣ୍ଣ ଥିବାରୁ ସରକାର ମନଇଚ୍ଛା କାର୍ଯ୍ୟ କରିବାକୁ ଯଥେଷ୍ଟ ସୁଯୋଗ ପାଇ ଯାଉଥିଲେ । ସେହିପରି ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ କୌଣସି ଆରକ୍ଷଣ ନ ଥିଲା ।

୧୯୯୦ରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ହେବା ପରେ ଏ ଦିଗରେ ଧ୍ୟାନ ଦେଲେ । ସେ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା କାଏମ୍ କଲେ । ସେଥିପାଇଁ ବିଧିବଦ୍ଧ ଆଇନ୍ ପ୍ରଣୟନ ହେଲା ଏବଂ ସରକାର ଯଥେଷ୍ଟ କାରଣ ବିନା ପଞ୍ଚାୟତିରାଜ ସଂସ୍ଥାଗୁଡ଼ିକୁ ଭାଙ୍ଗି ପାରିବେ ନାହିଁ ବୋଲି ଏହି ଆଇନ୍‌ରେ ପ୍ରାବଧାନ ରହିଲା । ପୁନଶ୍ଚ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ୩୩% ସ୍ଥାନ

ସଂରକ୍ଷଣ ବ୍ୟବସ୍ଥା କରି ବିଜୁ ପଟ୍ଟନାୟକ ପ୍ରଣୀତ ନୂତନ ଆଇନ ଭାରତବର୍ଷରେ ସର୍ବପ୍ରଥମେ ତୃଣମୂଳ ସ୍ତରରୁ ମହିଳା ଆରକ୍ଷଣ ପାଇଁ ଭିତ୍ତି ସ୍ଥାପନା କରିଥିଲା । ତେଣୁ ମହିଳା ସଶକ୍ତିକରଣର ମୂଳଦୁଆ ସମଗ୍ର ଭାରତରେ ପ୍ରଥମେ ବିଜୁବାବୁ ହିଁ ରଖିଥିଲେ ।

ଏହାର ଏକ ସୁଦୂରପ୍ରସାରୀ ପ୍ରଭାବ ଆମ ଜନଜୀବନ, ବିଶେଷ କରି ଗ୍ରାମାଞ୍ଚଳମାନଙ୍କରେ ପରିଲକ୍ଷିତ ହେଲା । ଅତି ଅନଗ୍ରସର ଅଞ୍ଚଳର ମହିଳାମାନଙ୍କଠାରୁ ଆରମ୍ଭ କରି ଅପେକ୍ଷାକୃତ ଉନ୍ନତ ଅଞ୍ଚଳମାନଙ୍କ ଯାଏଁ ସାଧାରଣ ନାରୀଟି ନିଜ ଅଧିକାର ସମ୍ପର୍କରେ ସଚେତନ ହୋଇ ପାରିଲା ଏବଂ ଏହି ସଚେତନତା ଧୀରେ ଧୀରେ ସଂପ୍ରସାରିତ ହେବାରେ ଲାଗିଛି । ଆନନ୍ଦର କଥା ମହାନ୍ ଜନନାୟକ ବିଜୁବାବୁଙ୍କ ସୁପୁତ୍ର ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମହିଳାମାନଙ୍କୁ ଆହୁରି ଅଧିକ ସଶକ୍ତକରିବା ପାଇଁ ପଞ୍ଚାୟତିରାଜ ଆଇନ୍‌କୁ ସଂଶୋଧନ କରି ମହିଳା ଆରକ୍ଷଣକୁ ୩୩ ଭାଗରୁ ବୃଦ୍ଧି କରି ୫୦ ଭାଗ କରି ଦେଇଛନ୍ତି । ଫଳରେ ମହିଳାମାନେ ଗ୍ରାମାଞ୍ଚଳର ବିକାଶ ପ୍ରକ୍ରିୟାରେ ଅଧିକରୁ ଅଧିକ ଅଂଶ ଗ୍ରହଣ କରିବାର ସୁଯୋଗ ଲାଭ କରି ପାରିଛନ୍ତି ।

ସଦ୍ୟ ସମାପ୍ତ ତ୍ରିସ୍ତରୀୟ ପଞ୍ଚାୟତ ଅନୁଷ୍ଠାନଗୁଡ଼ିକର ନିର୍ବାଚନର ଫଳାଫଳ ବେଶ୍ ଉତ୍ସାହଜନକ ହୋଇଛି । ଅର୍ଥାତ୍ ଆମ ଜନସଂଖ୍ୟାରୁ ପ୍ରାୟ ଅର୍ଦ୍ଧେକ ହେଉଛନ୍ତି ମହିଳା । ତେଣୁ ମହିଳାମାନେ ଖୁବ୍ ଉତ୍ସାହର ସହ ଏହି ନିର୍ବାଚନରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଅଂଶ ଗ୍ରହଣ କରି ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ବାବୁଙ୍କ ଆଦର୍ଶକୁ ବିଜୟମଣ୍ଡିତ କରିଛନ୍ତି । ଯିଏ ଯାହା ଅଭିଯୋଗ କରୁନା କାହିଁକି, ଗ୍ରାମାଞ୍ଚଳର ମହିଳା, ଅନୁସୂଚିତ ଜାତି/ଜନଜାତି, ଅନଗ୍ରସର ବର୍ଗ ତଥା ଧାର୍ମିକ/ଭାଷାଗତ ଅଳ୍ପ ସଂଖ୍ୟକ ଜନସାଧାରଣଙ୍କ ସମ୍ମିଳିତ ପ୍ରଚେଷ୍ଟାରେ ନବୀନ ବାବୁ ବିଜୟଶ୍ରୀ ମଣ୍ଡିତ ହୋଇ ପାରିଛନ୍ତି । ଏଥିପାଇଁ ନବୀନ ବାବୁ ଓ ତାଙ୍କ ସରକାରଙ୍କର ଦୂରଦୃଷ୍ଟି ସଂପନ୍ନ କାର୍ଯ୍ୟକ୍ରମ ଯେ ଦାୟୀ, ଏହା ନିଃସନ୍ଦେହରେ କୁହାଯାଇପାରିବ । ଏବେ ଆମ ରାଜ୍ୟରେ ଯେଉଁ ଜନଜାଗରଣର ଧାରା ଦୃଶ୍ୟମାନ ହେଉଅଛି, ସେଥିରୁ ଜଳ ଜଳ ହୋଇ ଦେଖାଯାଉଛି ଯେ, ଏକବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିପରି, ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିଟି ମଧ୍ୟ ନବୀନବାବୁଙ୍କ ଦ୍ୱାରା ପରିଚାଳିତ ହେବ ।

ସେ ଯାହା ହେଉ, ସାର ସଂକ୍ଷେପ ହେଉଛି, ଓଡ଼ିଶାର ଅବହେଳିତ ଗ୍ରାମ୍ୟ ମଣିଷଟିର (ଉଭୟ ନାରୀ ଓ ପୁରୁଷ) ଜୟଯାତ୍ରାର ପର୍ବ ଅବ୍ୟାହତ ରହିବ ଏବଂ ଓଡ଼ିଶା ଆଗାମୀ ଦଶନ୍ଧିଟିରେ ଭାରତର ଉନ୍ନତ ରାଜ୍ୟମାନଙ୍କର ସମକକ୍ଷ ହୋଇପାରିବ । କିନ୍ତୁ ସେଥିପାଇଁ ଆମ ରାଜ୍ୟର ମଣିଷଟିକୁ ବେଶ୍ ସଚେତନ ଭାବେ ନିଜ ଅଧିକାରର ସୁରକ୍ଷା ପାଇଁ ତଥା ନିଜ ବିକାଶ କାର୍ଯ୍ୟର ଅଗ୍ରଗତି ଲାଗି ନିଜଆଡୁ ଉଦ୍ୟମ କରିବା ସହିତ ରାଜ୍ୟ ସରକାରଙ୍କୁ ସହଯୋଗ କରିବାକୁ ପଡ଼ିବ । ଅନ୍ୟଥା ଆମର ବିକାଶ ପ୍ରକ୍ରିୟା ଶିଥିଳ ହୋଇଯିବାର ଆଶଙ୍କା ରହିଅଛି ।

ବର୍ତ୍ତମାନ କେନ୍ଦ୍ର ସରକାର ଓଡ଼ିଶା ପ୍ରତି ଯେପରି ବୈମାତୃକ ମନୋଭାବ ଦେଖାଇ, ସବୁ କ୍ଷେତ୍ରରେ ରାଜ୍ୟକୁ ଉପେକ୍ଷା କରି ଚାଲିଛନ୍ତି, ତାହା ଉଦ୍‌ବେଗର ବିଷୟ । ତେଣୁ ମହାନାୟକ ବିଜୁବାବୁ ଭାରତର ସମ୍ବିଧାନ ପ୍ରଦତ୍ତ ସଂଘୀୟ ବ୍ୟବସ୍ଥା ଭିତରେ ରାଜ୍ୟମାନଙ୍କୁ ଆର୍ଥିକ ସ୍ୱାୟତ୍ତତା ପ୍ରଦାନର ଯେଉଁ ପରିକଳ୍ପନା କରିଥିଲେ ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ତାହା ବେଶ୍ ଭଲ ଭାବେ ହୃଦୟଙ୍ଗମ କରି ସେ ଦିଗରେ ଅଧିକ କେତେପାଦ ଆଗେଇ ଚାଲିଛନ୍ତି– ଏହା ଆଶା ଓ ଆଶ୍ୱସନାର କଥା । ଆମେ ଓଡ଼ିଶାର ସାଧାରଣ ନାଗରିକ ଏଥିରେ ପୂର୍ଣ୍ଣ ସହଯୋଗ କରି ବିଜୁବାବୁଙ୍କ ଆଦର୍ଶକୁ ଉର୍ଦ୍ଧ୍ୱରେ ଟେକିଧରିଲେ ଓଡ଼ିଶାର ସର୍ବାଙ୍ଗୀନ ବିକାଶର ଧାରାକୁ କେହି ହେଲେ ବାଧା ଦେଇପାରିବେ ନାହିଁ, ଏହା ଧ୍ରୁବ ସତ୍ୟ ।

ବନ୍ଦେ ଉତ୍କଳଜନନୀ

ଜୟହିନ୍ଦ୍ ।

# ଶ୍ରଦ୍ଧାଞ୍ଜଳି



## ସ୍ୱର୍ଗତ ବିବୁଧେନ୍ଦ୍ର ମିଶ୍ର

ଧରାବତରଣ : ୩୦.୧୧.୧୯୨୦

ସ୍ୱର୍ଗାରୋହଣ : ୧୫.୦୨.୨୦୧୨

### ମହାନ୍ ଦେଶପ୍ରେମୀର ବିୟୋଗରେ

ମହାନ୍ ସ୍ୱାଧୀନତା ସଂଗ୍ରାମୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଘନିଷ୍ଠ ସହକର୍ମୀ, ସୁସାହିତ୍ୟିକ, ବରିଷ୍ଠ ଆଇନ୍‌ଜୀବୀ, ପୂର୍ବତନ କେନ୍ଦ୍ରମନ୍ତ୍ରୀ ଓ ସର୍ବୋପରି ଜଣେ ଶ୍ରେଷ୍ଠ ମଣିଷ ଶ୍ରୀଯୁକ୍ତ ବିବୁଧେନ୍ଦ୍ର ମିଶ୍ର ଯାହାଙ୍କୁ ଶ୍ରଦ୍ଧାରେ ସମସ୍ତେ 'କୁନିଭାଇନା' ବୋଲି ଜାଣନ୍ତି, ଗତ ଫେବୃୟାରୀ ୧୫ରେ ନିଜର କଟକ ସୂତାହାଟସ୍ଥିତ ବାସଭବନରେ ପରଲୋକ ଗମନ କରିଛନ୍ତି ।

ତାଙ୍କର ତିରୋଧାନରେ ଓଡ଼ିଶା ନିଜର ଅତି ଆଦରର ପୁଅଟିଏ ହରାଇଛି, ଯାହା ସତରେ ଆମ ଜାତି ପାଇଁ ଅପୂରଣୀୟ କ୍ଷତି । ସେ ଥିଲେ ପ୍ରବାଦ ପୁରୁଷ ବିଜୁବାବୁଙ୍କର ଦୀର୍ଘବର୍ଷର ସହକର୍ମୀ ଓ ସହଧର୍ମୀ ।

ଏହି ମହାନ୍ ଚିନ୍ତାନାୟକ ବିବୁଧେନ୍ଦ୍ର ବାବୁଙ୍କ ସ୍ମୃତି ପ୍ରତି 'ଉତ୍କଳ ପ୍ରସଙ୍ଗ' ନିଜର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ଏବଂ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଅଛି ।



# ପଞ୍ଚାୟତିରାଜ ଓ ମୋ'ସ୍ୱପ୍ନର ଭାରତବର୍ଷ

ବିଜୁ ପଟ୍ଟନାୟକ

ଷଷ୍ଠ ଦଶକରେ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କହିଥିଲେ ସରପଞ୍ଚ ହେଉଛି ପଞ୍ଚାୟତିରାଜର ମୁଖ୍ୟମନ୍ତ୍ରୀ । ଗ୍ରାମାଞ୍ଚଳର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ସେ ପଞ୍ଚାୟତ ପଞ୍ଚାୟତ ଭିତରେ ଉନ୍ନୟନ କ୍ଷେତ୍ରରେ ପ୍ରତିଯୋଗିତାମୂଳକ ମନୋଭାବ ସୃଷ୍ଟି କରିଥିଲେ । ସର୍ବୋତ୍କୃଷ୍ଟ ବିବେଚିତ ଗ୍ରାମପଞ୍ଚାୟତ ସମିତି ପାଇଁ ଜିଲ୍ଲାସ୍ତରରେ ଆକର୍ଷଣୀୟ ପୁରସ୍କାର ବ୍ୟବସ୍ଥା କରାଯାଇଥିଲା ।

ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ ହେବାପରେ ଶ୍ରୀ ବିଜୁ ପଟ୍ଟନାୟକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକ ସକ୍ରିୟ କରିବାକୁ ଉଦ୍ୟମ ଆରମ୍ଭ କଲେ । ନିର୍ବାଚନରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ସ୍ଥାନ ସଂରକ୍ଷଣ କରାଯିବାରୁ ୨୭ ହଜାର ମହିଳା ନିର୍ବାଚିତ ପ୍ରତିନିଧି ହେବାର ଗୌରବ ହାସଲ କଲେ । ଗ୍ରାମପଞ୍ଚାୟତରେ ସରପଞ୍ଚ ପୁରୁଷ ଥିଲେ ମହିଳା ନାଏବ ସରପଞ୍ଚ ଏବଂ ପଞ୍ଚାୟତିରାଜ ସମିତିରେ ପୁରୁଷ ଚେୟାରମ୍ୟାନ ଥିଲେ, ମହିଳା ଭାଇସ୍ ଚେୟାରମ୍ୟାନ୍ ରହିବା ପାଇଁ ଆଇନ୍ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ଆଇନ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ, ବନୀକରଣ, ପୁଷ୍ଟିକର ଖାଦ୍ୟ ଯୋଗାଣ, ଅତ୍ୟାବଶ୍ୟକ ସାମଗ୍ରୀ ବଣ୍ଟନ କ୍ଷେତ୍ରରେ ମହିଳା ପ୍ରତିନିଧିମାନଙ୍କୁ ଦାୟିତ୍ୱରେ ରଖିବା ପାଇଁ ସେ ନିର୍ଦ୍ଦେଶ ଦେଲେ ।



୧୯୯୩ ମାର୍ଚ୍ଚ ୫ ତାରିଖ ଦିନ ତାଙ୍କ ଜନ୍ମ ଦିନରେ ରାଜଧାନୀ ଭୁବନେଶ୍ୱରରେ ରାଜ୍ୟସ୍ତରୀୟ ପଞ୍ଚାୟତିରାଜ ଦିବସ ପାଳିତ ହୋଇଥିଲା । ଏହି ସମାରୋହରେ ଓଡ଼ିଶାର ପୁରପଲ୍ଲୀରୁ ସମବେତ ହୋଇଥିବା ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ନିର୍ବାଚିତ ପ୍ରତିନିଧିମାନଙ୍କୁ ଉଦ୍‌ବୋଧନ ଦେଇ ସେ କହିଥିଲେ ଏହି ଅନୁଷ୍ଠାନଗୁଡ଼ିକୁ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନ କଲେ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଜନସହଯୋଗ ମିଳିବା କଷ୍ଟକର ହେବ ।

ସେଠାରେ ସ୍ୱର୍ଗୀୟ ପଟ୍ଟନାୟକଙ୍କର ଅଭିଭାଷଣ ନିମ୍ନରେ ପ୍ରଦତ୍ତ ହେଲା -

**ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତ ସଭ୍ୟ, ସଭ୍ୟାବୃନ୍ଦ !**

ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତ ବର୍ଷର ସ୍ୱପ୍ନ ଦେଖୁଥିଲି । ମୋ ସ୍ୱପ୍ନର ଭାରତ ରେ ଗଣତନ୍ତ୍ର କେଇଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହି ନଥାନ୍ତା । ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନସର୍ବସ୍ୱ ହେବ ନାହିଁ । ଏହା ହେବ ଲୋକଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠଭାବେ ଜଡ଼ିତ କରାଇବାର ଏକ ମାଧ୍ୟମ । ଗାଁ ଗଣ୍ଡା ହେଉଛି ଭାରତର ଆତ୍ମା । ମୋ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ହିଁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥାନ୍ତା ।

୩୨ ବର୍ଷ ତଳେ ମୋତେ ଓଡ଼ିଶାର ଜନସାଧାରଣଙ୍କ ଅଭୂତପୂର୍ବ ସମର୍ଥନ ମିଳିଥିଲା । ସେତେବେଳେ ମୁଁ ଗଣତନ୍ତ୍ରରେ ଲୋକଙ୍କୁ ସଂଶ୍ଳିଷ୍ଟ କରି ରାଜ୍ୟର ପ୍ରତ୍ୟେକଟି ଗ୍ରାମକୁ ନୂଆକରି ଗଢ଼ିବାର ପ୍ରକ୍ରିୟା ଆରମ୍ଭ କରିଥିଲି । ଏଥିପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା ଏବଂ ଲୋକଙ୍କ ହାତରେ କ୍ଷମତା ଓ ଦାୟିତ୍ୱ ଦେବା ପାଇଁ ଅନେକ ନୂଆ ଆଇନ ମଧ୍ୟ ତିଆରି କରାଯାଇଥିଲା । ଷଷ୍ଠ ଦଶକରେ ରାଜନୈତିକ ଝଡ଼ଝଞ୍ଜାରେ ସେହି ସ୍ୱପ୍ନକୁ ସାକାର କରିବାର କାର୍ଯ୍ୟ ଅସମାପ୍ତ ରହିଯାଇଥିଲା । ଆଜି ମୁଁ ଯେତେବେଳେ ପଛକୁ ଫେରି ଚାହୁଁଛି, ମୋତେ କିଛିଟା ହତାଶା, କିଛିଟା ବାକି ରହିଥିବା କାମ ଓ କିଛିଟା ପୂରା ହୋଇ ନ ଥିବା ପ୍ରତିଶ୍ରୁତି ଅସ୍ତବ୍ୟସ୍ତ କରୁଛି ।

ଆପଣମାନଙ୍କର ନାହିଁ ନଥିବା ସମର୍ଥନ ପାଇ ଦ୍ୱିତୀୟ ଥର ପାଇଁ ଆମେ ସମସ୍ତେ ଆମର ଜୟଯାତ୍ରା ଆରମ୍ଭ କରିଛୁଁ । ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତି ସମ୍ପର୍କରେ ପ୍ରଚଳିତ ଆଇନଗୁଡ଼ିକୁ ସଂଶୋଧନ କରାଯାଇ ତ୍ରିସ୍ତରୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ପାଇଁ ଏକ ସମ୍ପୂର୍ଣ୍ଣ ନୂଆ ଆଇନ ପ୍ରଣୟନ କରାଯାଇଛି । ଗ୍ରାମପଞ୍ଚାୟତ ଓ ପଞ୍ଚାୟତସମିତିଗୁଡ଼ିକ ପାଇଁ ନିର୍ବାଚନ ଶେଷ ହୋଇଛି । ଜିଲ୍ଲା ପରିଷଦ ପାଇଁ ଖୁବ୍ ଶୀଘ୍ର ନିର୍ବାଚନ କରାଯିବ ।

ସେ ସମୟ ଓ ଆଜି ଭିତରେ ଅନେକଟା ତଫାତ୍ ଆପଣମାନେ ଲକ୍ଷ୍ୟ କରୁଥିବେ । ଏହି ପରିବର୍ତ୍ତନର ଆହ୍ୱାନ ହେଉଛି – ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ଅଧିକ ପ୍ରତିନିଧିମୂଳକ କରିବା, ସେଗୁଡ଼ିକୁ ଅଧିକ କାର୍ଯ୍ୟକାଳ ଦେବା ଓ ସେଥିପାଇଁ ଅଧିକ ସମ୍ବଳର ବ୍ୟବସ୍ଥା କରିବା । କାରଣ ଆମର ଅନୁଷ୍ଠାନଗୁଡ଼ିକ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନ ହେଲେ ଉନ୍ନୟନ ଯୋଜନା କରିବା ଓ ଜନସହଯୋଗ ମାଧ୍ୟମରେ ସେଗୁଡ଼ିକୁ ଠିକ୍ ରୂପେ କାର୍ଯ୍ୟକାରୀ କରାଇବା ମୁସ୍କିଲ ହେବ । ଏହି ପରିବର୍ତ୍ତନ ମାଧ୍ୟମରେ ଆମେ ବଡ଼ବଡ଼ କଥା ଅପେକ୍ଷା ପ୍ରକୃତ କାମ କରିପାରିବା । ଆମେ କେବଳ କାମ ହିଁ ଚାହୁଁ । ଆପଣମାନଙ୍କ ଭିତରୁ ଅନେକ ପ୍ରଶ୍ନ କରୁଛନ୍ତି –ମୋର କ୍ଷମତା କ'ଣ ? ମୋର କାମ କ'ଣ ? କୌଣସି ବ୍ୟକ୍ତିବିଶେଷକୁ କ୍ଷମତା ଦିଆଯାଏ ନାହିଁ । କ୍ଷମତା ଦିଆଯାଏ ଏକ ପ୍ରତିନିଧିମୂଳକ ବ୍ୟବସ୍ଥାକୁ । ପଞ୍ଚାୟତିରାଜ ବ୍ୟବସ୍ଥା ଏକ ପ୍ରତିନିଧିମୂଳକ ବ୍ୟବସ୍ଥା ହୋଇଥିବାରୁ ସ୍ୱାସ୍ଥ୍ୟ, ଶିକ୍ଷା, ସମାଜ ମଙ୍ଗଳ, ଦାରିଦ୍ର୍ୟ ଦୂରୀକରଣ, ବୃକ୍ଷରୋପଣ, ପରିବେଶ, କୃଷି, ପଶୁପାଳନ, ଜଳସେଚନ ଏବଂ ରାସ୍ତାଘାଟ ଆଦି ବିଷୟରେ ନିଷ୍ପତ୍ତି ନେବାର କ୍ଷମତା ଏହି ସଂସ୍ଥା ଉପରେ ନ୍ୟସ୍ତ କରାଯାଇଛି । ଏହି ସମ୍ମିଳନୀ ଉପଲକ୍ଷେ ଆପଣମାନଙ୍କୁ ଯେଉଁ ପୁସ୍ତିକା ସବୁ ଦିଆଯାଇଛି, ସେଥିରୁ ଭଲ ଭାବେ ଜଣାଯିବ ଯେ, ଯୋଜନା ତିଆରି କରିବା, ତାକୁ କାର୍ଯ୍ୟକାରୀ କରିବା ଏବଂ ଏ ସମସ୍ତ କାର୍ଯ୍ୟକୁ ତଦାରଖ ଓ ତଦ୍‌ବିର କରିବାର ଦାୟିତ୍ୱ ସବୁ ଆପଣମାନଙ୍କର ।

ଆପଣମାନେ ଯଦି ଏହି କ୍ଷମତାକୁ ବିଜ୍ଞତାର ସହିତ ବ୍ୟବହାର କରନ୍ତି, ତା'ହେଲେ ପଞ୍ଚାୟତିରାଜ ବ୍ୟବସ୍ଥା ମଜଭୁତ୍ ହେବ । କ୍ଷମତା ସାଙ୍ଗକୁ ଆମେ ସମ୍ବଳ ମଧ୍ୟ ହସ୍ତାନ୍ତର କରିବୁ । ରାଜ୍ୟସ୍ତରରୁ କିଭଳି ଭାବେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ସମ୍ବଳ ଦିଆଯାଇପାରିବ ସେ ବିଷୟରେ ଏକ ସ୍ୱତନ୍ତ୍ର ଅର୍ଥ କମିଶନ୍ ଟିକିନିଖି କରି ପରୀକ୍ଷାନିରୀକ୍ଷା କରୁଛନ୍ତି । ଏହାର ସୁପାରିଶଗୁଡ଼ିକ ଖୁବ୍ ଶୀଘ୍ର ମିଳିଯିବ । ସମ୍ବଳକୁ ଚାହିଁ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ଦାୟିତ୍ୱ ମଧ୍ୟ ନିର୍ଦ୍ଧାରଣ କରାଯିବ ।

ଶାସନ ବ୍ୟବସ୍ଥାର ପ୍ରକୃତ ବିକେନ୍ଦ୍ରୀକରଣ ପାଇଁ ମହିଳାମାନଙ୍କୁ ସଂଶ୍ଳିଷ୍ଟ କରାଇବା ଉପରେ ମୁଁ ସଦାବେଳେ ଜୋର୍ ଦେଇଆସିଛି । ନାରୀମାନଙ୍କର ସୃଜନଶୀଳତା ଓ ଶକ୍ତିକୁ ଉପଯୋଗ କରି ତାଙ୍କର ସ୍ୱତନ୍ତ୍ର ସମସ୍ୟାଗୁଡ଼ିକର ସମାଧାନ ପାଇଁ ଏ ଯାବତ୍ କୌଣସି ବିଧିବଦ୍ଧ ଉଦ୍ୟମ ଆରମ୍ଭ ହୋଇ ନାହିଁ । ସେମାନେ ଏ ପର୍ଯ୍ୟନ୍ତ ସମାଜ ଓ ଶାସନର ମୁଖ୍ୟ ସ୍ରୋତକୁ ଆସିପାରି ନାହାନ୍ତି । ପୁରୁଷପ୍ରଧାନ ସମାଜରେ ସେମାନଙ୍କ ସମସ୍ୟାପ୍ରତି ଯଥାର୍ଥ ଧ୍ୟାନ ଦିଆଯାଇନାହିଁ । ସେମାନଙ୍କଠାରେ ଥିବା ଅନ୍ୟକୁ ପ୍ରବର୍ତ୍ତାଇବା, ସହୃଦୟତା ଓ ସମ୍ବେଦନଶୀଳତା ପ୍ରଭୃତି ଗୁଣଗୁଡ଼ିକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ଗୁଣାତ୍ମକମାନ ନିଶ୍ଚିତଭାବେ ବୃଦ୍ଧି କରିବ । ବିଶେଷ କରି ଶିକ୍ଷା, ସ୍ୱାସ୍ଥ୍ୟ, ବୃକ୍ଷରୋପଣ, ପରିବାର କଲ୍ୟାଣ, ମା' ଓ ଶିଶୁର ସ୍ୱାସ୍ଥ୍ୟରକ୍ଷା ଓ ପରିବେଶ ବିକାଶ ଭଳି କାମଗୁଡ଼ିକ ସେମାନଙ୍କ ଉପରେ ନ୍ୟସ୍ତ କରାଯିବା ଆବଶ୍ୟକ । ମୁଁ ଚାହେଁ, ଉପରୋକ୍ତ ବିଷୟଗୁଡ଼ିକ ପାଇଁ ଯେଉଁ ଷ୍ଟାଣ୍ଡିଂ କମିଟି ରହିବ, ତା'ର ନେତୃତ୍ୱ ମହିଳାମାନେ ନିଅନ୍ତୁ । ତାଙ୍କୁ ପୂର୍ଣ୍ଣ ସୁଯୋଗ ଦିଆଯାଉ ।

ମୁଁ ଏ କଥା ୧୯୬୧ରେ କହିଥିଲି, ଆଜି ମଧ୍ୟ କହୁଛି ଯେ, ଆମେ ସମାଜର ତଳସ୍ତରରେ ନେତା ଓ ନେତ୍ରୀ ଗଢ଼ିବା ପାଇଁ ଉଦ୍ୟମ କରୁଛୁ । ଏହା ଏକ ସହଜସାଧ୍ୟ ବ୍ୟାପାର ନୁହେଁ । ଏହି ଗଣଆନ୍ଦୋଳନକୁ ଆମେ କିଛି ରୂପ, କିଛି ଦିଗ୍‌ଦର୍ଶନ ଏବଂ କିଛି କର୍ତ୍ତୃତ୍ୱ ଦେଉଛୁ । ସୁନ୍ଦର ଭବିଷ୍ୟତକୁ ଆଖି ଆଗରେ ରଖି ଅଧିକ ସମ୍ବେଦନଶୀଳତା ଓ ଦୂରଦର୍ଶିତା ସହ ଆମକୁ ଚିନ୍ତା କରିବାକୁ ହେବ । ଆମେ ଗୋଟିଏ ନୂଆ ଶିଶୁ ଗଢୁଛୁ - ଏକ ଗଣତାନ୍ତ୍ରିକ ଶିଶୁ, ଯାହାର ଚିନ୍ତାରେ ଓ କାର୍ଯ୍ୟରେ ନେତୃତ୍ୱର ବିକାଶ ଘଟିବ । ଲୋକଙ୍କ ଭିତରେ ଯେଉଁ ସୁପ୍ତ ଶକ୍ତି ରହିଛି, ପଞ୍ଚାୟତି ବ୍ୟବସ୍ଥା ମାଧ୍ୟମରେ ତାକୁ ଜାଗ୍ରତ କରିବାକୁ ହେବ, ବିକଶିତ କରିବାକୁ ହେବ ।

ଆମର ସାମୂହିକ ବିଜ୍ଞତା ଦ୍ୱାରା ଆମେ ସମୟକ୍ରମେ ଏପରି ବାଟ ବାହାର କରିବା ଯଦ୍ୱାରା ଜନସାଧାରଣଙ୍କର ବିଶ୍ୱାସ ଓ ନେତୃତ୍ୱକୁ ଆଧାର କରି ବର୍ତ୍ତମାନର ପ୍ରଶାସନିକ ବ୍ୟବସ୍ଥା ଦ୍ୱାରା ସମ୍ଭବ ହେଉଥିବା କାର୍ଯ୍ୟଠାରୁ ବହୁ ଅଧିକ ସଫଳତା ହାସଲ କରାଯାଇପାରିବ ।

ସବୁଠାରେ ଦୋଷ ତ୍ରୁଟି ଅଛି ଏବଂ ରହିବ । ମଣିଷ ଚରିତ୍ର ଓ ପ୍ରକୃତିକୁ ମୁଁ ଯାହା ବୁଝିଛି, ଏଥିରେ କିଛି ଅସ୍ୱାଭାବିକତା ନାହିଁ । ଆମେ ଏଭଳି ଏକ ଶାସନ ଢାଞ୍ଚା ତିଆରି କରିବା ଯେଉଁଥିରେ କି ପ୍ରତ୍ୟେକ ସ୍ତ୍ରୀ, ପୁରୁଷ, ବଡ଼ ହେଉ କି ଛୋଟ ହେଉ, ଉତ୍କୃଷ୍ଟ ହେଉ କି ନିକୃଷ୍ଟ ହେଉ, ନିଜ ପ୍ରତିଭା ବିକାଶ ପାଇଁ ସୁଯୋଗ ପାଇବେ । ଚୀନ ଦାର୍ଶନିକ ତାଇ ଚୁଙ୍ଗ କହିଥିଲେ, 'ଯଦି ଆମେ କୌଣସି ଏକ କାର୍ଯ୍ୟକୁ ତ୍ରୁଟିଶୂନ୍ୟ ଭାବେ କରିବାକୁ ବସିବା, ଆମକୁ ଅନନ୍ତକାଳ ପାଇଁ ଅପେକ୍ଷା କରିବାକୁ ହେବ ।' ଆମ ହାତରେ ସମୟ ନାହିଁ । ଗଲା ତିରିଶ ବର୍ଷ ଭିତରେ ଅନେକ କିଛି ସୁଯୋଗ ଆମର ହାତଛଡ଼ା ହୋଇଯାଇଛି । ତେଣୁ ଆମକୁ ଆଜି ସଙ୍କଳ୍ପ ନେବାକୁ ହେବ - ବିଜ୍ଞତା, ଦୂରଦୃଷ୍ଟି, କରୁଣା ଓ ଉତ୍ତମ ବୁଝାମଣାକୁ ପୁଞ୍ଜି କରି ଆମେ ଆମ ନିଜର ସମସ୍ୟା ସମାଧାନର ରାସ୍ତା ବାହାର କରିବା ।





ପ୍ରଜାତନ୍ତ୍ରର ୬୪ତମ ପ୍ରତିଷ୍ଠା ଦିବସରେ କଟକ ସହିଦ ଭବନରେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ବିଶିଷ୍ଟ ସାମ୍ବାଦିକ ଦେବୁ ଚାଟାର୍ଜିଙ୍କୁ ଡକ୍ଟର ହରେକୃଷ୍ଣ ମହତାବ ସ୍ୱର୍ଣ୍ଣ ପଦକ ପ୍ରତିଭା ସମ୍ମାନ ପ୍ରଦାନ କରୁଛନ୍ତି ।

# ବିଂଶ ଶତାବ୍ଦୀର ବିସ୍ମୟ : ବିଜୁ ପଟ୍ଟନାୟକ

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

କଳିଙ୍ଗ ସମ୍ରାଟ୍ ଦ୍ୱିତୀୟ ଖାରବେଳ, ଦେଶର ମହାନ୍ ଜନନାୟକ ପ୍ରଚଣ୍ଡ ସାହସୀ ନେତା, ରାଜ୍ୟରେ ଶିଳ୍ପ ବିପ୍ଳବର ବାର୍ତ୍ତାବହ, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଇଣ୍ଡୋନେସିଆର ଭୂମିପୁତ୍ର ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ବିଂଶ ଶତାବ୍ଦୀର ବିସ୍ମୟ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତୁଳସୀ ଦୁଇପତ୍ରରୁ ବାସିବା ପରି ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ କନିଷ୍ଠ ପୁତ୍ର ବିଜୟାନନ୍ଦ ପଟ୍ଟନାୟକଙ୍କ ସାହସିକ ପ୍ରତିଭାର ପରିଚୟ ତାଙ୍କ ପିଲାଦିନରୁ ମିଳିଥିଲା । ପଣ୍ଡିତ ଗୋପବନ୍ଧୁ ଦାସ ବନ୍ୟାଞ୍ଚଳର ବନ୍ୟାଦୁର୍ଗତମାନଙ୍କୁ ରିଲିଫ୍ ଦେବା ପାଇଁ ଚୁଡ଼ାଚାଉଳ ଲୁଗାପଟା ଧରି କଟକ ପୁରୀଘାଟଠାରୁ ଅଳ୍ପ କେତେକ ସହକର୍ମୀଙ୍କ ସହ ଡଙ୍ଗାରେ ବସି କାଠଯୋଡ଼ୀ ନଦୀରେ ଯାଉଥିବାବେଳେ ହଠାତ୍ ଝଟକାଏ ପବନ ଆସି ତାଙ୍କ ଛତାଟିକୁ ଉଡ଼ାଇନେଇ ନଈ ପାଣିରେ ପକାଇଦେଲା । ହଠାତ୍ ଛୋଟ ପିଲାଟିଏ ସମସ୍ତଙ୍କ ଅଜାଣତରେ ଡଙ୍ଗାରୁ ବଢ଼ନ୍ତା କାଠଯୋଡ଼ୀ ନଦୀ ପାଣିକୁ ଡେଇଁପଡ଼ି ପହଁରି ପହଁରି ଯାଇ ପାଣିରୁ ଛତାଟି ଆଣି ଡଙ୍ଗା ଉପରକୁ ଉଠି ଆସିଲା । ପଣ୍ଡିତ ଗୋପବନ୍ଧୁଙ୍କ ସମେତ ଡଙ୍ଗାରେ ବସିଥିବା ସମସ୍ତ କର୍ମୀ ତଟସ୍ଥ ହୋଇଗଲେ । ପିଲାଟିର ସାହସକୁ ସମସ୍ତେ ପ୍ରଶଂସା କରିବାକୁ ଲାଗିଲେ । ଗୋପବନ୍ଧୁ ଅଶ୍ରୁ ଛଳ ଛଳ ନେତ୍ରରେ ପିଲାଟିକୁ ବୁକୁରେ କୁଣ୍ଢାଇ ଧରି ତା'ର ନାମ ଓ ବାପ ନାମ ପଚାରିଲେ । ପିଲାଟି ଧୀର ଗଳାରେ କହିଲା ମୁଁ ଲକ୍ଷ୍ମୀକାନ୍ତ ପଟ୍ଟନାୟକଙ୍କ ପୁତ୍ର ବିଜୟାନନ୍ଦ । ଗୋପବନ୍ଧୁ ଆଶ୍ଚର୍ଯ୍ୟ ହୋଇଗଲେ । ନିଜର ପ୍ରିୟ ବନ୍ଧୁ ଲକ୍ଷ୍ମୀକାନ୍ତର ପୁତ୍ର । ସେ ପିଲାଟିକୁ ଆଶୀର୍ବାଦ ଦେଇ କହିଥିଲେ ତୁ ନିଶ୍ଚୟ ଦିନେ ବଡ଼ମଣିଷ ହେବୁ । ଗୋପବନ୍ଧୁଙ୍କ ଏହି ଆଶୀର୍ବାଦ ଅକ୍ଷରେ ଅକ୍ଷରେ ସତ୍ୟ ହୋଇଥିଲା । ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ପ୍ରଥମ ଓଡ଼ିଶା ଗସ୍ତ ସମୟରେ ସେ କିଛି ସମୟ କଟକ ରେଭେନ୍ସା କଲିଜିଏଟ୍ ସ୍କୁଲଠାରେ ଅବସ୍ଥାନ କରିଥିଲେ । ତାଙ୍କୁ ଦେଖିବା ପାଇଁ ପ୍ରବଳ ଜନଗହଳି ହୋଇଥିଲା । ମିଲିଟାରୀ ପୋଲିସମାନେ ଚାରି ଦିଗରେ ଜଗି ରହିଥିଲେ ଓ ଗହଳି ହେତୁ ଲୋକମାନଙ୍କୁ ଭିତରକୁ ଛାଡୁ ନ ଥିଲେ । ଏହି ସମୟରେ ବାଳକ ବିଜୟାନନ୍ଦ ଜନଗହଳି ଦେଇ ମହାତ୍ମାଗାନ୍ଧୀଙ୍କୁ ଦର୍ଶନ କରିବା ପାଇଁ ଚେଷ୍ଟା କରୁଥିବାବେଳେ ଜନୈକ ମିଲିଟାରୀ ପୋଲିସ ତାଙ୍କୁ ଲାଠି ପ୍ରହାର କରିଥିଲା । ବାଳକ ବିଜୟାନନ୍ଦଙ୍କ ମନରେ ଏହା ଗାର ହୋଇ ରହିଥିଲା ଓ ଏହାର ପ୍ରତିଶୋଧ ନେବା ପାଇଁ ସେ ସୁବିଧା ଓ ସୁଯୋଗ ଖୋଜୁଥିଲେ । ଦିନେ ବାଳକ ବିଜୟାନନ୍ଦ ବାରବାଟୀ କିଲା ପଡ଼ିଆରେ ବୁଲୁଥିବାବେଳେ ସେହି ମିଲିଟାରୀ ପୋଲିସଙ୍କୁ ଦେଖିବାକୁ ପାଇଥିଲେ । ତାଙ୍କ ମନରେ ପ୍ରତିଶୋଧର ହିଂସା ଜଳିଉଠିଲା । ଗୋଟିଏ ଗଛ ଉହାଡ଼ରେ ଥାଇ ତା ଉପରକୁ ଟେକା ମାରି ତାକୁ ଲହୁଲୁହାଣ କରି ଦଉଡ଼ି ଦଉଡ଼ି ଆନନ୍ଦଭବନ (ଲକ୍ଷ୍ମୀକାନ୍ତଙ୍କ ବାସଭବନ)କୁ ଚାଲି ଯାଇଥିଲେ, ସେହି ମିଲିଟାରୀ ପୋଲିସ ପିଲାଟିର ପତା ପାଇ ପାରି ନ ଥିଲା ।



ରେଭେନ୍ସା କଲେଜରେ ପଢୁଥିବାବେଳେ ସେ ଦୁଇ ଜଣ ସହପାଠୀଙ୍କ ସହ ସାଇକେଲ୍‌ରେ ସୁଦୂର ପେଶୱାର ଯାଇଥିଲେ । କେତେ ବଣ, ଜଙ୍ଗଲ ଓ ପାହାଡ଼ ଅତିକ୍ରମ କରି କେତେ ଦିନ ରାତି ସାଇକେଲ ଚଳାଇ ଚଳାଇ ଶେଷରେ ପେଶୱାରରେ ପହଞ୍ଚି ପାରିଥିଲେ । ଭଗବାନ୍‌ଙ୍କ କୃପା ଯୋଗୁଁ ସେ ଏକ ମହାବଳ ବାଘ ହାବୁଡ଼ରୁ ରକ୍ଷା ପାଇ ପାରିଥିଲେ । ତିନି ବନ୍ଧୁ ଆନ୍ଧ୍ର ଜଙ୍ଗଲ ଅତିକ୍ରମ କରୁଥିବାବେଳେ ହଠାତ୍ ଏକ ମହାବଳ ବାଘ ରାସ୍ତା

ଉପରେ ବସିଥିବାର ଦେଖିଲେ । କିନ୍ତୁ ବିଜୁବାବୁଙ୍କ ସାଥୀଦ୍ୱୟ ପୈତୃକ ପ୍ରାଣର ଆଶା ଛାଡ଼ି ଦେଇ ଥରିବାକୁ ଲାଗିଲେ । ବିଜୁବାବୁ ସାଥୀଦ୍ୱୟଙ୍କୁ ସାହସ ଦେଇ କହିଲେ ଆମେ ତିନିଜଣ ଖାଡ଼ା ଠିଆହୋଇ ବାଘ ଚକ୍ଷୁରେ ଚକ୍ଷୁ ମିଶାଇ ଚାହିଁରହିବା । ବିଜୁବାବୁଙ୍କ ପରାମର୍ଶ ଗ୍ରହଣ କରି ତିନି ବନ୍ଧୁ ବାଘ ଆଖିରେ ଆଖି ମିଳାଇ ସାଇକେଲ୍ ଧରି ଖାଡ଼ା ହୋଇ ଠିଆ ହୋଇ ରହିଲେ । ବାଘ ପାଞ୍ଚ ମିନିଟ୍ ରାସ୍ତାରେ ଠିଆ ହୋଇ ରହିଲା ଓ ତା'ପରେ ପଳାଇଗଲା । ସାହସ ଯୋଗୁଁ ମହାବଳ ବାଘ ହାବୁଡ଼ରୁ ସେମାନେ ରକ୍ଷା ପାଇ ପାରିଥିଲେ ।

ଏହିସବୁ ଆଲୋଚନା କଲେ ପିଲାଦିନର ବିଜୁବାବୁଙ୍କର କିପରି ଅଦମ୍ୟ ସାହସ ଥିଲା, ତାହା ଜଣାପଡ଼େ । ବିଜୟାନନ୍ଦ ପାଇଲଟ୍ ଟ୍ରେନିଂ ପାଇ ନିଜର ଅଧ୍ୟବସାୟ ବଳରେ ଦେଶର ସର୍ବଶ୍ରେଷ୍ଠ ପାଇଲଟ୍‌ରେ ପରିଣତ ହୋଇପାରିଥିଲେ ଓ ବଡ଼ଲାଟ୍‌ଙ୍କ ବିମାନ ଚଳାଇବା ଦାୟିତ୍ୱରେ ରହିଥିଲେ ।

କିନ୍ତୁ ତାଙ୍କ ବିପ୍ଳବୀ ପ୍ରାଣ ଏଥିରେ ସନ୍ତୁଷ୍ଟ ହୋଇପାରି ନ ଥିଲା । ବ୍ରିଟିଶ୍ ଶାସନ କବଳରୁ ଦେଶମାତୃକାକୁ ଉଦ୍ଧାର କରିବା ପାଇଁ ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତୀୟ ଜାତୀୟ କଂଗ୍ରେସର ସ୍ୱାଧୀନତା ସଂଗ୍ରାମକୁ ସେ ଦୃଢ଼ ସମର୍ଥନ କରୁଥିଲେ ଓ ସ୍ୱାଧୀନତା ସଂଗ୍ରାମରେ ଭାଗୀଦାର ହେବା ପାଇଁ ସୁବିଧା ଓ ସୁଯୋଗ ଖୋଜୁଥିଲେ ।

୧୯୪୨ ମସିହା ଅଗଷ୍ଟ ୯ ତାରିଖରେ ଭାରତ ଛାଡ଼ ଆନ୍ଦୋଳନ ଆରମ୍ଭ ହୋଇ ଦାବାଗ୍ନିପରି ଆକୁମାରୀ ହିମାଚଳ ବ୍ୟାପି ଯାଇଥିଲା । ଇଂରେଜ ସରକାର ମହାତ୍ମାଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ, ଡଃ ରାଜେନ୍ଦ୍ର ପ୍ରସାଦ ଆଦି ତୁଙ୍ଗ ନେତାମାନଙ୍କୁ ଗିରଫ କରି କାରାଗାରରେ ରଖିଥିଲେ ଓ ଦେଶର ହଜାର ହଜାର ସ୍ୱାଧୀନତା ସଂଗ୍ରାମୀ ବନ୍ଦୀ ହୋଇଥିଲେ । ଏହି ସମୟରେ ଦେଶବାସୀ ଆନ୍ଦୋଳନ ଚାଲୁ ରଖିବା ପାଇଁ ଜୟପ୍ରକାଶ ନାରାୟଣ, ଅରୁଣା ଆସଫ ଅଲ୍ଲୀ ଓ ଡଃ ରାମମନୋହର ଲୋହିଆ ଅଣ୍ଡରଗ୍ରାଉଣ୍ଡରେ ପହଞ୍ଚିଲେ । ଏହି ସମୟରେ ପାଏଲଟ୍ ବିଜୟାନନ୍ଦ ସେମାନଙ୍କୁ ସମ୍ପୂର୍ଣ୍ଣ ସହଯୋଗ ପ୍ରଦାନ କରିଥିଲେ । ରାତ୍ରିକାଳରେ ସେମାନଙ୍କୁ ନିଜ ବିମାନରେ ବସାଇ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇ ଯାଇଥିଲେ । ଫଳରେ ବ୍ରିଟିଶ ସରକାରଙ୍କ ଗୁପ୍ତଚରମାନେ ସେମାନଙ୍କର ଟେର୍ ପାଇ ନ ଥିଲେ । ବ୍ରିଟିଶ୍ ସରକାର ବ୍ୟତିବ୍ୟସ୍ତ ହୋଇ ପଡ଼ିଥିଲେ ଓ ଏହାର ରହସ୍ୟ ଭେଦ କରିବା ପାଇଁ ଗୁପ୍ତଚରମାନଙ୍କୁ କଡ଼ା ନିର୍ଦ୍ଦେଶ ଦେଇଥିଲେ । ଶେଷରେ ବିଜୁବାବୁ ଏ କାର୍ଯ୍ୟ କରୁଥିବାର ଗୁପ୍ତଚରମାନେ ଜାଣିପାରିଥିଲେ ଓ ବିଜୁବାବୁଙ୍କୁ ଗିରଫ କରାଯାଇ କାରାଗାରକୁ ପଠାଇ ଦିଆଯାଇଥିଲା । ଜେଲ୍‌ରେ ବିଜୁବାବୁଙ୍କୁ ବହୁତ ଶାରୀରିକ ଓ ମାନସିକ ଯନ୍ତ୍ରଣା ଦିଆଯାଇଥିଲା । ୧୯୪୭ରେ ଭାରତ ସ୍ୱାଧୀନତା ଲାଭ କରି ନ ଥିଲେ ବିଜୁବାବୁଙ୍କୁ ହୁଏତ ବ୍ରିଟିଶ୍ ସରକାର ଫାଶୀ ଖୁଣ୍ଟରେ ଝୁଲାଇଥାନ୍ତା ।

ଭାରତ ସ୍ୱାଧୀନ ହେବା ପରେ ବିଜୟାନନ୍ଦ ପଟ୍ଟନାୟକ ଜେଲରୁ ମୁକ୍ତ ହେଲେ । ତାଙ୍କର ସାହସିକତା କାର୍ଯ୍ୟ ପାଇଁ ସେ ଦେଶରେ ଚର୍ଚ୍ଚିତ ହେବାକୁ ଲାଗିଲେ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ତାଙ୍କ ସାହସକୁ ଖୁବ୍ ତାରିଫ୍ କରୁଥିଲେ ।

ଏହି ସମୟରେ ସ୍ୱାଧୀନତା ପାଇଁ ଇଣ୍ଡୋନେସିଆର ମୁକ୍ତି ସଂଗ୍ରାମ ଜୋରଦାର ଚାଲିଥାଏ । ସୁକର୍ଣ୍ଣୋ ଆଦି ନେତାମାନେ ନଜରବନ୍ଦୀରେ ଥାନ୍ତି । ଜୀବନ ରକ୍ଷା ପାଇଁ ଇଣ୍ଡୋନେସିଆର ପ୍ରଧାନମନ୍ତ୍ରୀ ଡଃ ସାହାରିଆର୍ ଓ ଉପରାଷ୍ଟ୍ରପତି ମହମ୍ମଦ ଭଟ୍ଟଙ୍କୁ ଇଣ୍ଡୋନେସିଆରୁ ଉଦ୍ଧାର କରି ନୂଆଦିଲ୍ଲୀ ନେଇଆସିବା ପାଇଁ ପଣ୍ଡିତ ନେହେରୁ ବିଜୟାନନ୍ଦଙ୍କୁ ଦାୟିତ୍ୱ ଦେଇଥିଲେ । କାରଣ ପଣ୍ଡିତ ନେହେରୁ ଜାଣିଥିଲେ ଯେ ଏ କାମ କେବଳ ବିଜୟାନନ୍ଦ କରିପାରିବେ । ଯୁବକ ବିଜୟାନନ୍ଦ ନିଜ ଡାକୋଟା ବିମାନରେ ନିଜ ପତ୍ନୀ ଜ୍ଞାନ ପଟ୍ଟନାୟକଙ୍କୁ ସାଥୀରେ ଧରି ଇଣ୍ଡୋନେସିଆ ଅଭିମୁଖେ ଯାତ୍ରା କରିଥିଲେ । ଏହି ବିପଦସଂକୁଳ ଯାତ୍ରାପଥରେ ଜ୍ଞାନଦେବୀ ନିଜ ପତି ବିଜୟାନନ୍ଦଙ୍କୁ ଏକାକୀ ଛାଡ଼ିବାକୁ ରାଜି ନ ଥିଲେ । ଅତି ସନ୍ତର୍ପଣରେ ଶବ୍ଦନଶୀ ବିଜୁବାବୁ ଡାକୋଟା ବିମାନ ଜାକର୍ତ୍ତାରେ ପହଞ୍ଚି ଏହି ଦୁଇ ନେତାଙ୍କୁ ନିଜ ବିମାନରେ ବସାଇ ନୂଆଦିଲ୍ଲୀକୁ ଘେନି ଆସିଥିଲେ ସମଗ୍ର ବିଶ୍ୱବାସୀଙ୍କୁ ଚକିତ କରିଦେଇ । ବିଜୁବାବୁଙ୍କ ଏହି ସାହସକୁ ସମଗ୍ର ବିଶ୍ୱ ପ୍ରଶଂସା କରିଥିଲା ଓ ଇଣ୍ଡୋନେସିଆ ସ୍ୱାଧୀନତା ଲାଭ କରିବା ପରେ ବିଜୁବାବୁଙ୍କୁ ସେ ଦେଶର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ସମ୍ମାନରେ ସମ୍ମାନିତ କରାଯାଇଥିଲା ।

ଏହା ପରେ ବିଜୁବାବୁ ଓଡ଼ିଶା ଫେରିଆସି ଓଡ଼ିଶାର ପ୍ରଗତି ପାଇଁ ମନ ପ୍ରାଣ ଢାଳି ଦେଇଥିଲେ । ଚୌଦ୍ୱାରଠାରେ ଓ.ଟି.ଏମ୍. ଲୁଗାକଳ ପ୍ରତିଷ୍ଠା ତାଙ୍କର ପ୍ରଥମ କାର୍ଯ୍ୟ ହୋଇଥିଲା । ତା'ପରେ ସେ ଗୋଟିକ ପରେ ଗୋଟିଏ କଳକାରଖାନା ସ୍ଥାପନ କରିଥିଲେ । ଚୌଦ୍ୱାରଠାରେ ତାଙ୍କ ପ୍ରତିଷ୍ଠିତ କଳିଙ୍ଗ ଟିଉବ୍‌ସ କାରଖାନା ସମଗ୍ର ଏସିଆ ମହାଦେଶରେ ସୁନାମ ଅର୍ଜନ କରିଥିଲା । ବଡ଼ବିଲ୍‌ରେ

କଳିଙ୍ଗ ଇଣ୍ଡଷ୍ଟ୍ରିଜ୍ ସେ ସ୍ଥାପନ କରିଥିଲେ । ଓଡ଼ିଶାକୁ ଶିଳ୍ପାଞ୍ଚଳ ରାଜ୍ୟ କରିବା ପାଇଁ ଶିଳ୍ପପତି ବିଜୁ ପଟ୍ଟନାୟକ ଭୀଷ୍ମ ପ୍ରତିଜ୍ଞା ନେଇଥିଲେ । ସେ ରାଜ୍ୟ ମନ୍ତ୍ରୀ ଓ କେନ୍ଦ୍ର ଇସ୍ପାତ ଖଣି ମନ୍ତ୍ରୀ ଥିବାବେଳେ ଓଡ଼ିଶାରେ ସୁନାବେଡ଼ା ମିଗ୍ କାରଖାନା, ଯାଜପୁର ରୋଡ଼ରେ ଫେରୋକ୍ରମ କାରଖାନା ଓ ଅନୁଗୋଳଠାରେ ନାଲ୍କୋ କାରଖାନା ପ୍ରତିଷ୍ଠା କରାଇପାରିଥିଲେ ।

ସେ ରାଜନୀତିରେ ପ୍ରବେଶ କରି ୧୯୬୧ରେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ତାଙ୍କ ନେତୃତ୍ୱରେ ୧୯୬୧ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ ଦଳ ଓଡ଼ିଶା ବିଧାନସଭାରେ ୮୫ଟି ଆସନ ଲାଭ କରିଥିବାରୁ ପଣ୍ଡିତ ନେହେରୁ ବିଜୁବାବୁଙ୍କୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଅର୍ପଣ କରିଥିଲେ । ତାଙ୍କର ମୁଖ୍ୟମନ୍ତ୍ରିତ୍ୱ କାଳରେ ପାରାଦ୍ୱୀପଠାରେ ଗଭୀରତମ ବନ୍ଦର ପ୍ରତିଷ୍ଠା ହୋଇପାରିଥିଲା ଓ ଦୈତାରୀ–ପାରାଦ୍ୱୀପ ଏକ୍ସପ୍ରେସ ରୋଡ଼ ନିର୍ମିତ ହୋଇଥିଲା । ଉତ୍କଳ କୃଷି ବିଶ୍ୱ ବିଦ୍ୟାଳୟ, ଭୁବନେଶ୍ୱର ସୈନିକ ସ୍କୁଲ, ବ୍ରହ୍ମପୁର ଓ ସମ୍ବଲପୁରଠାରେ ଦୁଇଟି ବିଶ୍ୱବିଦ୍ୟାଳୟ, ବୁର୍ଲା ଓ ବ୍ରହ୍ମପୁରଠାରେ ଦୁଇଟି ମେଡ଼ିକାଲ କଲେଜ ଓ ରାଉରକେଲାଠାରେ ଇଂଜିନିୟରିଂ କଲେଜ ଓ ଭୁବନେଶ୍ୱରଠାରେ ରିଜିଓନାଲ୍ କଲେଜ ପ୍ରତିଷ୍ଠା ହୋଇ ପାରିଥିଲା । ତାଙ୍କ ନେତୃତ୍ୱରେ ୧୯୭୧ରେ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ମିଳିତ ସରକାର ଗଠିତ ହୋଇଥିଲା ଯଦିଓ ଏହା ମାତ୍ର ୧୪ ମାସ ପରେ ଭାଙ୍ଗି ଯାଇଥିଲା । ୧୯୭୫ ମସିହାରେ ଜରୁରିକାଳୀନ ପରିସ୍ଥିତି ଘୋଷିତ ହେବା ପରେ ସେ ଜୟପ୍ରକାଶ ନାରାୟଣ, ମୋରାରଜୀ ଦେଶାଇ, ଚରଣ ସିଂହ ଆଦି ତୁଙ୍ଗ ନେତାଙ୍କ ସହ ଦିଲ୍ଲୀରେ ଗିରଫ ହୋଇ ୧୮ ମାସ କାରାବରଣ କରିଥିଲେ ଓ ଜେଲ ଭିତରେ ଜନତାପାର୍ଟି ଜନ୍ମଲାଭ କରିଥିଲା । ଜନତାପାର୍ଟି ୧୯୭୭ ନିର୍ବାଚନରେ ଇନ୍ଦିରା କଂଗ୍ରେସକୁ ଓ ଇନ୍ଦିରାଗାନ୍ଧୀଙ୍କୁ ପରାସ୍ତ କରି ପ୍ରଥମ ଥର ପାଇଁ ଅଣକଂଗ୍ରେସ ସରକାର କେନ୍ଦ୍ରରେ ସ୍ଥାପନ କରିଥିଲା । ମୋରାରଜୀ ଦେଶାଇଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଗଠିତ ସରକାରରେ ବିଜୁବାବୁ ଇସ୍ପାତ ଓ ଖଣିମନ୍ତ୍ରୀ ଦାୟିତ୍ୱ ବହନ କରିଥିଲେ ।

୧୯୯୦ରେ ବିଜୁବାବୁଙ୍କ ନେତୃତ୍ୱରେ ଓଡ଼ିଶା ବିଧାନସଭାରେ ୧୪୭ଟି ଆସନରୁ ୧୨୩ଟି ଆସନ ଲାଭ କରିଥିଲା ଓ ବିଜୁବାବୁ ଦ୍ୱିତୀୟ ବାର ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କରିଥିଲେ । ୧୯୮୯ରେ ଲୋକସଭା ନିର୍ବାଚନରେ କଂଗ୍ରେସ ଦଳ ସମଗ୍ର ଦେଶରେ ପରାଜିତ ହୋଇଥିଲା । କେନ୍ଦ୍ରରେ ଜନତାଦଳ ସରକାର ବାମପନ୍ଥୀ ଦଳ ଓ ବିଜେପିର ସମର୍ଥନରେ ଓଡ଼ିଶା ଭବନରେ ଜନତାଦଳ ତୁଙ୍ଗ ନେତାଙ୍କ ବୈଠକରେ ବିଶ୍ୱନାଥ ପ୍ରତାପ ସିଂହ (ଭି.ପି. ସିଂହ)ଙ୍କୁ ପ୍ରଧାନମନ୍ତ୍ରୀ କରାଇବା ପାଇଁ ସ୍ଥିର ହୋଇଥିଲା । ଭି.ପି. ସିଂହଙ୍କୁ ପ୍ରଧାନମନ୍ତ୍ରୀ କରାଇବାର ଗୌରବ ବିଜୁବାବୁ ବହନ କରିଥିଲେ । ୧୯୯୦ରୁ ୯୫ ପାଞ୍ଚବର୍ଷ ଧରି ବିଜୁବାବୁ ଦ୍ୱିତୀୟ ବାର ମୁଖ୍ୟମନ୍ତ୍ରୀ ହୋଇ ରାଜ୍ୟ ଶାସନ କରିଥିଲେ । ଏହି ପାଞ୍ଚ ବର୍ଷ ମଧ୍ୟରେ ବହୁ ଉଲ୍ଲେଖନୀୟ କାର୍ଯ୍ୟ ସେ କରିଥିଲେ । ଓଡ଼ିଶାର ୧୩ଟି ଜିଲ୍ଲାକୁ ୩୦ଟି ଜିଲ୍ଲାରେ ପରିଣତ କରାଯାଇଥିଲା । ଭୁବନେଶ୍ୱର ଓ କଟକ ମହାନଗର ନିଗମ ପ୍ରତିଷ୍ଠା କରାଯାଇଥିଲା, ମ୍ୟୁନିସିପାଲିଟି ଓ ପଞ୍ଚାୟତ ନିର୍ବାଚନରେ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷିତ କରାଯାଇଥିଲା ଓ ଶ୍ରମିକମାନଙ୍କ ଦୈନିକ ମଜୁରି ୧୧ଟଙ୍କାରୁ ୨୫ ଟଙ୍କାକୁ ବୃଦ୍ଧି କରାଯାଇଥିଲା । ଯାଜପୁର ରୋଡ଼ ନିକଟସ୍ଥ କଳିଙ୍ଗ ନଗରରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠାପାଇଁ ଶୁଭ ଦିଆଯାଇଥିଲା ।

୧୯୯୬ ଲୋକସଭା ନିର୍ବାଚନରେ ବିଜୁ ବାବୁ କଟକ ଓ ଆସ୍କା ଦୁଇଟି ନିର୍ବାଚନ ମଣ୍ଡଳୀରୁ ବିପୁଳ ଭୋଟ ପାଇ ଲୋକସଭାକୁ ନିର୍ବାଚିତ ହୋଇଥିଲେ ।

୧୯୯୭ ଏପ୍ରିଲ ୧୭ ତାରିଖ ଦିନ ଏହି ମହାମନୀଷୀଙ୍କର ସ୍ୱର୍ଗାରୋହଣ ହୋଇଥିଲା ୮୧ ବର୍ଷ ବୟସରେ । ସମଗ୍ର ଦେଶ ମର୍ମାହତ ହୋଇଯାଇଥିଲା । ପ୍ରଧାନମନ୍ତ୍ରୀ, ବିରୋଧୀଦଳ ନେତା, ବହୁ କେନ୍ଦ୍ରମନ୍ତ୍ରୀ, ବହୁ ରାଜ୍ୟ ମୁଖ୍ୟମନ୍ତ୍ରୀ, ବିଜୁବାବୁଙ୍କୁ ଶେଷ ଦର୍ଶନ ପାଇଁ ଭୁବନେଶ୍ୱରରେ ପହଞ୍ଚିଥିଲେ । ଲକ୍ଷ ଲକ୍ଷ ଶୋକାକୁଳ ଜନତା ଓ ରାଜନେତାଙ୍କ ଉପସ୍ଥିତିରେ ପୁରୀ ସ୍ୱର୍ଗଦ୍ୱାରଠାରେ ବିଜୁବାବୁଙ୍କ ମର ଶରୀର ସଂସ୍କାର କରାଯାଇଥିଲା । ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ପରେ ଆଉ କୌଣସି ଜାତୀୟ ନେତାଙ୍କ ବିୟୋଗରେ ଏପରି ବିଶାଳ ଜନସମୁଦ୍ର ସୃଷ୍ଟି ହୋଇ ନ ଥିଲା । ତିନୋଟି ରାଷ୍ଟ୍ର ଭାରତ, ଇଣ୍ଡୋନେସିଆ ଓ ରୁଷିଆର ଜାତୀୟପତାକା ଅର୍ଦ୍ଧନମିତ ହୋଇଥିଲା ।

ବିଜୁବାବୁଙ୍କ ନାମରେ ନାମିତ ବିଜୁ ଜନତା ଦଳ ଆଜିକୁ ୧୨ ବର୍ଷ ଧରି ଓଡ଼ିଶାକୁ ଶାସନ କରିଚାଲିଛି ଓ ଆହୁରି ଅନେକ ବର୍ଷ ଧରି ଶାସନ କରିବ ବୋଲି ମୋର ଆଶା ।



ପୂର୍ବତନ ବିଧାୟକ, ମାହାଙ୍ଗା

# ଗଣର ଗଜପତି ଓ ସମୟର ସ୍ଥପତି

ଡକ୍ଟର ନାରାୟଣ ପଣ୍ଡା

ଉତ୍କଳଜନନୀ ଯେଉଁ କେତେଜଣ ସାର୍ଥକ ସନ୍ତାନମାନଙ୍କୁ କୋଳରେ ଧରି ଗର୍ବିତ, ସେମାନଙ୍କ ମଧ୍ୟରେ ବିଜୟାନନ୍ଦ ପଟ୍ଟନାୟକ ଅନ୍ୟତମ । ଅନନ୍ୟ ଅସାଧାରଣ ବ୍ୟତିକ୍ରମ ବ୍ୟକ୍ତିତ୍ୱ ଭାବରେ ସେ ଯେପରି ସମ୍ମାନନୀୟ ନୀତିନିଷ୍ଠ ନୈୟାୟିକ ଭାବରେ ସେପରି ପ୍ରଶଂସନୀୟ । ଲକ୍ଷ୍ମୀନାରାୟଣଙ୍କ ଔରସରୁ ଆଶାଲତା ଦେବୀଙ୍କ ଜଠରରୁ ଯେଉଁ ପୁତ୍ରସନ୍ତାନ ଜାତ ହୋଇଥିଲା କିଏ ଜାଣିଥିଲା ତାଙ୍କ ଯୋଗୁଁ ନିଖିଳ ଉତ୍କଳ ଦିନେ ଅଖିଳରେ ପରିଣତ ହେବ । ୧୯୧୬ ମସିହା ମାର୍ଚ୍ଚ ୫ ତାରିଖ ତୁଳସୀପୁରର ଆନନ୍ଦ ଭବନ କେବଳ ଆନନ୍ଦରେ ମୁଖରିତ ହୋଇ ନ ଥିଲା, କଟକ ସହର ନବ ବସନ୍ତର ସ୍ପର୍ଶରେ ଶିହରିତ ହୋଇଥିଲା । ତିନି ଭାଇ ଓ ଗୋଟିଏ ଭଉଣୀର ମିଳନରେ ପରିବାର ହୋଇଥିଲା ଉତ୍ସବ ମୁଖରିତ । ଜଣେ ସଚ୍ଚୋଟ, ଦକ୍ଷ ଓ ସ୍ୱାଧୀନଚେତା ବ୍ୟକ୍ତି ଥିଲେ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ପିତାଙ୍କ ଆଦର୍ଶରେ କାୟ-ମନ-ବାକ୍ୟରେ ଅନୁପ୍ରାଣିତ ହୋଇ ଥିଲେ ବିଜୟାନନ୍ଦ ପଟ୍ଟନାୟକ ।



## ଶ୍ୟାମଳ ଶୈଶବ ଓ ସବୁଜ ସ୍ୱପ୍ନ

ଶ୍ୟାମଳ ଶୈଶବର ସବୁଜ ସ୍ୱପ୍ନ ଜୀବନ ବିଦ୍ୟାଳୟକୁ ମନ୍ତ୍ରୀମାନ ମଧୁକୋଷରେ ପରିଣତ କରେ । ସ୍ମୃତିର ସୁରଭି ଅତୀତର ଆଲବମ୍‌ରେ ଭବିଷ୍ୟତ୍‌ର ମାନଚିତ୍ର ଅଙ୍କନ କରେ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ବିଜୟାନନ୍ଦଙ୍କ ସଦ୍‌ଗୁଣ ଶୈଶବରୁ ଜଣାପଡ଼ିଥିଲା ।

୧୯୨୬ ମସିହା । କଅଁଳ ବୟସ ଚଳଚଞ୍ଚଳ ମନ । ସାଙ୍ଗସାଥୀ ଗହଣରେ ଛବିଳ ପ୍ରଜାପତି । ଶୁଣିଲେ ବିଜୁ ଗାନ୍ଧିଜୀ ଆସିଛନ୍ତି ଓଡ଼ିଶା । ସବୁ କାମ ଛାଡ଼ି ଚାଲିଲେ ଗାନ୍ଧିଜୀଙ୍କୁ ଭେଟିବାକୁ । ଲୋକଗହଳି ପାର ହୋଇ ଗାନ୍ଧୀଙ୍କ ପାଖକୁ ଗଲାବେଳକୁ ଖାଇଲେ ବେତ ପାହାର (ପୋଲିସର ଲାଠିମାଡ଼ରେ ମୁଣ୍ଡରୁ ବୋହୁଥାଏ ଧାର ଧାର ରକ୍ତ) କ୍ଷତକୁ ଖାତିର ନ କରି ଗାନ୍ଧୀଙ୍କ ନିକଟତର ହେଲେ । ବିଜୁଙ୍କ ଦୁଃଖ ଦେଖି ଗାନ୍ଧୀଙ୍କ ଆଖି ଛଳ ଛଳ ହୋଇଗଲା । ପିଲାଟିର ମୁଣ୍ଡ ଆଉଁଶି ଦେଲେ । ପିଲାଟିର ସାହସ ଓ ଧୈର୍ଯ୍ୟ ଦେଖି ଗାନ୍ଧୀ ଅବାକ୍ ହୋଇଥିଲେ । କିଶୋର ବାଳକ ବିଜୁ ଗାନ୍ଧୀଙ୍କ ହାତସ୍ପର୍ଶ ପାଇଥିବାରୁ ଯେତିକି ପୁଲକିତ ହେଲେ ସେତିକି ଗର୍ବ ଅନୁଭବ କଲେ । ବିଜୁ ଗାନ୍ଧୀଙ୍କ ମିଳନ ସେଦିନ ମଣିକାଞ୍ଚନର ସଂଯୋଗ ଘଟିଥିଲା । ବଡ଼ମଣିଷଙ୍କ ଆଶିଷ ଲାଭ କଲେ ଜୀବନ କିପରି ମହକିତ ହୁଏ, ତାହା ଏହାର ନଗ୍ନ ନମୁନା । ଯିଏ ଯାହା ଚାହେଁ ଯଦି ପାଇଯାଏ ତେବେ ତା'ର ଈପ୍‌ସିତ ବସ୍ତୁ ପାଇବାରେ ଯେଉଁ ଦୁଃଖ ଜାତ ହୋଇଥାଏ, ତାହା ସହଜରେ ପାସୋର ଯାଏ । ଉତ୍କଳମଣି ଗୋପବନ୍ଧୁଙ୍କ 'ଧର୍ମପଦ'ରୁ ଗୋଟିଏ ପଦ ମନେପଡ଼େ-

ନୟନେ ନୟନ ହେଲେ ଭେଟାଭେଟି<br>
ହେବ ପରାଣ-ମିଳନ<br>
ଯେ ଯାହାର ତାକୁ ଲୋଡ଼େ ସେ ସହଜେ<br>
କରିବାକୁ ଆଲିଙ୍ଗନ ।

ଶୈଶବରୁ ବଡ଼ ହେବାର ଲକ୍ଷଣ ଦେଖାଦିଏ । ବିଜୁଙ୍କ ପରୋପକାର, ସାହାଯ୍ୟ ସହାନୁଭୂତି ଛାତ୍ର ଜୀବନରୁ ଜଣା ପଡ଼ିଥିଲା । ବନ୍ୟାବିପନ୍ନ ଲୋକମାନଙ୍କୁ ଚୁଡ଼ା ଚାଉଳ ରନ୍ଧନଖାଦ୍ୟ ଯୋଗାଇ ଦେବା ପାଇଁ ଉତ୍କଳମଣି ଗୋପବନ୍ଧୁ କେତେଜଣ ସ୍କୁଲ ପିଲାଙ୍କୁ ସାଙ୍ଗରେ ଧରି ପଟାମୁଣ୍ଡାଇ ଯାଉଥିଲେ । ନଈ ଦୁଇକୂଳ ଖାଉଚି ଡଙ୍ଗାରେ ବସି ଗୋପବନ୍ଧୁ ନଦୀ ପାର ହେଉଛନ୍ତି । ତୁହାକୁ ତୁହା ପବନ ବହୁଛି । ଝିପିଝିପି ବର୍ଷା ସାଙ୍ଗକୁ ସାପମୁଣ୍ଡ ଛିଡ଼ା ଲହଡ଼ି । ଗୋପବନ୍ଧୁଙ୍କ ହାତରୁ ଛତାଟି ଉଡ଼ି ନଦୀଗର୍ଭରେ ପଡ଼ିଲା । ଡଙ୍ଗାରେ ବସିଥିବା ସବୁ ଛାତ୍ର ଏ ଦୃଶ୍ୟ ଦେଖୁଥାନ୍ତି କେହି ନଦୀଗର୍ଭକୁ ଯିବାକୁ ସାହସ କରୁ ନ ଥାନ୍ତି । ଇତ୍ୟବସରେ ଜଣେ ଡେଙ୍ଗା ପିଲା (ବିଜୁ) ପୂରନ୍ତା ନଈକୁ ଡେଇଁ ପଡ଼ିଲେ । ନଦୀସୁଅରେ ଭାସିଯାଉଥିବା ଛତାଟି ଆଣି ଗୋପବନ୍ଧୁଙ୍କୁ ଦେଲେ । ଏକଥା ଦେଖି ଗୋପବନ୍ଧୁ ଭୟରେ ଆଖିବୁଜି ଦେଲେ । ପିଲାଟି ପିଠିରେ ହାତ ମାରି କହିଲେ ଆରେ ବାବୁ ତୁମେ ଏ କ'ଣ କଲ ? ଜୀବନଟା ବଡ଼ ନା ମୋ ଛତାଟା ବଡ଼ ? ଗୋପବନ୍ଧୁଙ୍କ ପାଟିରୁ ପ୍ରଶ୍ନ ନ ସରୁଣୁ ପିଲାଟି ନିର୍ଭୟରେ ଉତ୍ତର ଦେଲା 'ଆପଣ ନିଜ ଜୀବନକୁ ପାଣି ଛଡ଼ାଇ କେତେ ଲୋକଙ୍କ ସେବା କରୁଛନ୍ତି । ଆପଣଙ୍କ ଛତା ମୋ ଜୀବନଠାରୁ କିଛି କମ୍ ମୂଲ୍ୟବାନ୍ ନୁହେଁ । ସେଦିନ ଗୋପବନ୍ଧୁ ବରଫଳ ଭିତରେ ଏକ ବିରାଟ ଶାଖାପ୍ରଶାଖା ବିଶିଷ୍ଟ ବଟବୃକ୍ଷକୁ ଆବିଷ୍କାର କରିଥିଲେ । 'ଧର୍ମପଦ'ର ଏକ ପଂକ୍ତି ମନେ ପଡ଼େ-

''ଶିଶୁ ବଢ଼ି କ୍ରମେ ହୁଏ ଯୁବା ବୃଦ୍ଧ
ଚତୁର ପ୍ରବୀଣ ନର
ପ୍ରଭାତ ଅରୁଣେ ଲୁଚି ରହିଥାଏ
ମଧ୍ୟାହ୍ନ ତେଜ ପ୍ରଖର'' ।

ସ୍ୱରାଜ ଆଶ୍ରମ ପରିଦର୍ଶନ ନିମନ୍ତେ ଗାନ୍ଧିଜୀ ଆସିଥିଲେ । ବିଜୁବାବୁ ଓ ତାଙ୍କ ବଡ଼ଭାଇ ଗାନ୍ଧୀଙ୍କୁ ଦେଖା କରିବାକୁ ଯାଇଥିଲେ । ସବୁ ପିଲାଙ୍କ ଭିତରେ ବିଜୁବାବୁ ଡେଙ୍ଗା ଥିବାରୁ ବାହାରକୁ ବାରି ହୋଇ ପଡୁଥିଲେ । ସେତେବେଳେ କଟକରେ ଏସ୍.ପି. ଥିଲେ ଗୋରାସାହେବ ମିଷ୍ଟର ହାରଗ୍ରିଭ । କିଛି ନବୁଝି ବିଚାରି ଗୋରା ସାହେବ ପିଉଳମୁଣ୍ଡିଆ ରୁଲ୍ ବାଡ଼ିରେ ବିଜୁଙ୍କ ମୁଣ୍ଡକୁ ବାଡ଼େଇ ଦେଲେ । ମୁଣ୍ଡ କଣା ହୋଇଗଲା, ରକ୍ତ ବୋହିଲା । ସେହିଦିନଠାରୁ ବିଜୁବାବୁଙ୍କ ମନରେ ଗୋରାମାନଙ୍କ ପ୍ରତି ଘୃଣାଭାବ ଜାଗ୍ରତ ହେଲା । ଅସନ୍ତୋଷର ବହ୍ନି ବିଜୁବାବୁଙ୍କ ମନରେ ପ୍ରଜ୍ୱଳିତ ହେଲା । ଗୋରା ସାହେବଙ୍କୁ ଦେଶରୁ ହଟେଇବା ପାଇଁ ବଜ୍ର ଶପଥ ନେଲେ ।

ଖେଳପ୍ରେମୀ ବିଜୁ ୧୯୩୨ ମସିହା ମଇ ମାସ ୩୧ ତାରିଖରେ ସାଇକେଲରେ କଟକରୁ ପେଶୱାର ଯାତ୍ରା କରିଥିଲେ । ଅମର ଦେଓ ଓ ଭ୍ରମରବର ସାହୁ ଗହଣରେ ଜୁନ୍ ଚାରି ତାରିଖରେ ପେଶୱାରରେ ପହଞ୍ଚିଥିଲେ । ପୋଲଭୋଲ୍ଟ ଖେଳ ବିଜୁ ଆରମ୍ଭ କରିଥିଲେ । ସେ ସର୍ବଦା ଖେଳରେ ପ୍ରଥମ ହେଉଥିଲେ । ସେ ଘୋଷଣା କରିଥିଲେ ପୋଲଭୋଲ୍ଟ ଖେଳରେ ଯିଏ ତାଙ୍କ ରେକର୍ଡ଼ ଭାଙ୍ଗିବ ସେ ପୁରସ୍କୃତ ହେବ । ନନ୍ଦକିଶୋର ଦାସ ବିଜୁବାବୁଙ୍କ ରେକର୍ଡ଼ ଭାଙ୍ଗିଲେ ଓ ଶହେ ଟଙ୍କା ପୁରସ୍କାର ପାଇଲେ ।

## ଆଗ୍ନେୟ ଶପଥର ମହାନାୟକ

ବିଜୁବାବୁ ପାଠ ପଢୁଥିବା ସମୟରେ ନୂଆ ହୋଇ କଟକ କିଲ୍ଲା ପଡ଼ିଆକୁ ଉଡ଼ାଜାହାଜଟିଏ ଆସିଥାଏ । ଉଡ଼ାଜାହାଜ ଦେଖିବା ପାଇଁ ବିଜୁବାବୁଙ୍କ ମନରେ ଆଗ୍ରହ କହିଲେ ନ ସରେ । ଉଡ଼ାଜାହାଜ ଚାରିପାଖ ପୋଲିସ ଛାଉଣି ତଥାପି ଲୋକଗହଳି ଭିତରେ ବିଜୁବାବୁ ଉଡ଼ାଜାହାଜ ପାଖକୁ ଗଲେ, ସନ୍ତର୍ପଣରେ ଜାହାଜକୁ ଛୁଇଁଲେ । ଏ ଦୃଶ୍ୟ ଦେଖି ଗୋରା ପୁଲିସ ରାଗିଗଲେ । ନିର୍ମମ ଭାବରେ ବିଜୁଙ୍କୁ ଚାବୁକ୍ ମାରିଲେ । ଦୃଢ଼ମନା ଯୁବକ ବିଜୁ ବଜ୍ର ଶପଥ ନେଲେ ପାଇଲଟ ହୋଇ ନୀଳ ଆକାଶରେ ମୁକ୍ତ ବିହଙ୍ଗ ପରି ଉଡ଼ିବାକୁ ସ୍ୱପ୍ନ ଦେଖିଲେ ।

କଲେଜରେ ଅଧ୍ୟୟନ ସମୟରେ ଅତୀତ ଶପଥ ମନେ ପଡ଼ିଲା । ପାଇଲଟ୍ ଟ୍ରେନିଂ ଯିବାକୁ ବାପାଙ୍କୁ ଅନୁରୋଧ କଲେ । ଆର୍ଥିକ ଅନଟନ ଭିତରେ ବିଜୁଙ୍କୁ ଉଡ଼ାଜାହାଜ ଶିକ୍ଷା କରିବାକୁ ପଠାଇବା ପାଇଁ ତାଙ୍କ ପକ୍ଷରେ କଷ୍ଟସାଧ ହୋଇପଡ଼ିଲା । ଅନେକ ମନସ୍ତାପରେ ନିଜ କୋଠାଘରଖଣ୍ଡକ ବିକ୍ରି କରି ବିଜୁଙ୍କୁ ପାଇଲଟିଂ ଟ୍ରେନିଂ ଦେବାକୁ ଇଚ୍ଛା କଲେ । କିନ୍ତୁ ବିଧିର ବିଧାନ ବିଚିତ୍ର । ଲକ୍ଷ୍ମୀନାରାୟଣଙ୍କୁ ବିଜୁଙ୍କ ପାଇଁ ଘର ବିକ୍ରି କରିବାକୁ ପଡ଼ିଲା ନାହିଁ । ଜଗନ୍ନାଥ ବିଶ୍ୱାସୀ ଲକ୍ଷ୍ମୀନାରାୟଣଙ୍କ ଡାକ ମହାପ୍ରଭୁ ଶୁଣିଲେ । ସେଦିନ ଏକ ଜରୁରୀ ଚିଠି ଆସି ପହଞ୍ଚିଲା । ପାରଳା ମହାରାଜା ମାସିକ ୧୨୦୦ ଟଙ୍କା ବେତନରେ ଲକ୍ଷ୍ମୀନାରାୟଣଙ୍କୁ ରାଜ୍ୟର ଦେବାନ କରିନେବାକୁ ଚାହିଁଲେ ।

ଚିଠିଟି ପାଇବା ପରେ ପରିବାର ମଧ୍ୟରେ ଆନନ୍ଦର ଲହରି ଖେଳିଯାଇଥିଲା । ସପରିବାର ଦୟାମୟ ପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରଣତି ବାଢ଼ିଲେ ।

ବହୁ ବ୍ୟୟସାପେକ୍ଷ ଉଡ଼ାଜାହାଜ ଚାଳନା ଶିକ୍ଷାକେନ୍ଦ୍ରରେ ବିଜୁ ସମସ୍ତ ଶକ୍ତି ସାହସ, ପ୍ରତ୍ୟୁତ୍ପନ୍ନମତିତା ବଳରେ କୃତିତ୍ୱର ସହ ଟ୍ରେନିଂ ଶେଷ କଲେ । ଟ୍ରେନିଂ ଶିକ୍ଷା କେନ୍ଦ୍ରରେ ସମସ୍ତ ଶିକ୍ଷାର୍ଥୀମାନଙ୍କର ଆଦର୍ଶର କେନ୍ଦ୍ରବିନ୍ଦୁ ଥିଲେ ବିଜୁ । ନିଷ୍ଠା ଦକ୍ଷତାର ପ୍ରତୀକ ବିଜୁ କଳିଙ୍ଗପୁଅର ଅନନ୍ୟ ଅବତାର ଓ ଭାବନାର ଭାସ୍କର୍ଯ୍ୟ । ଓଡ଼ିଆ ପୁଅ ଭାବରେ ସେ ଯେତିକି ଗର୍ବ ଅନୁଭବ କରୁଥିଲେ, ଅତୀତ ଗୌରବକୁ ମନେପକାଇ ସେତିକି ମନରେ ସାହସ ସଞ୍ଚୟ କରୁଥିଲେ । ବିଦେଶୀମାନଙ୍କ ଦୃଷ୍ଟିରେ ସେ ଖାରବେଳଙ୍କ ବଂଶଧର ଓ କଳିଙ୍ଗର ବୀର । କଳିଙ୍ଗର ଦ୍ୱିତୀୟ ଖାରବେଳ ଭାବରେ ସେ ଯେପରି ସମ୍ମାନନୀୟ ଓଡ଼ିଆର ସଂସ୍କୃତି ଓ ସମ୍ମାନକୁ ବିଶ୍ୱଦରବାରରେ ପହଞ୍ଚାଇଥିବାରୁ ସେ ସେପରି ଅଷ୍ଟରତ୍ନଖଚିତ ମୁକୁଟବିହୀନ ସମ୍ରାଟ୍ ଭାବରେ ସର୍ବବାଦୀସମ୍ମତ ।

ଉଡ଼ାଜାହାଜ ତାଲିମ ଶେଷ ପରେ ବିଜୁ ଇଣ୍ଡିଆନ୍ ନ୍ୟାସନାଲ ଏୟାରୱେଜରେ ନିଯୁକ୍ତି ପାଇଲେ । ଆନନ୍ଦର ବାତାବରଣ ଭିତରେ ଶୁଭ ଖବର ପ୍ରିୟଜନମାନଙ୍କୁ ଜଣାଇ ଦେଲେ । ଅନେକ ଦିନର ଆଶା ସଫଳ ହୋଇଛି ବିଜୁଙ୍କ ଆନନ୍ଦ ଆକାଶ ଛୁଉଁଚି । କଠିନ ଅଧ୍ୟବସାୟ ଓ ନୈତିକ ସାହସ ସଫଳତାର ଜନନୀ ।

## ମଙ୍ଗଳ ମହୁରି ଓ ବିଜୟ ବୈଜୟନ୍ତୀ

କାଶ୍ମିରୀ ଅନନ୍ୟ ସୁନ୍ଦରୀ ଗୁଣବତୀ କନ୍ୟା ସୁଶ୍ରୀ ଜ୍ଞାନ ଦେବୀଙ୍କ ସହିତ ୧୯୩୯ ମସିହାରେ ବିଜୁ ପଟ୍ଟନାୟକଙ୍କ ବିବାହ କାର୍ଯ୍ୟ ସମାପନ ହୋଇଥିଲା । ଜଣେ ଅସମାନ୍ୟା ଲଳନା, ଜଣେ ଦକ୍ଷ ବୈମାନିକ, ଜଣେ ଅଲିଅଳୀ ଲାଜକୁଳୀ, ଜଣେ ଗଣର ଗଜପତି ଜଣେ ଅନୁରକ୍ତ ରୂପବତୀ, ଜଣେ ସମୟର ସ୍ଥପତି ଏ ଦୁଇଟି ଆତ୍ମାର ମିଳନ, କଳିଙ୍ଗ କଳାର କାରୁକାର୍ଯ୍ୟ । ସେ ଥିଲେ ସାଧାରଣ, ତାଙ୍କ କାର୍ଯ୍ୟ ଥିଲା ଅସାଧାରଣ । ଅପୂର୍ବ ସାଜସଜ୍ଜାରେ ସଜ୍ଜିତ ସାତଟି ବିମାନ ନୀଳ ଆକାଶରେ ରାଓଲପିଣ୍ଡିରେ ଅବତରଣ କଲା, ବର ବେଶରେ କଳିଙ୍ଗବୀର ବିଜୁ ପଟ୍ଟନାୟକ ବୀର ଦର୍ପରେ ବିବାହ ମଣ୍ଡପକୁ ଚାଲିଲେ । ଶୁଭଚିନ୍ତକ, ବନ୍ଧୁପରିଜନ ବିବାହ କାର୍ଯ୍ୟରେ ଯୋଗ ଦେଲେ । ରୂପବାନ୍, ଗୁଣବାନ୍ ଯୁବକ ବିଜୁଙ୍କୁ ଦେଖି କନ୍ୟା ପକ୍ଷର ଲୋକ ବିସ୍ମିତ ହେଲେ । ସମସ୍ତଙ୍କର ସହଯୋଗ ସାହାଯ୍ୟ ଆଶୀର୍ବାଦକୁ ପାଥେୟ କରି ଜ୍ଞାନଦେବୀଙ୍କ ସହିତ ବୈବାହିକ କାର୍ଯ୍ୟ ସମ୍ପନ୍ନ ହେଲା । ବିବାହ ବନ୍ଧନରେ ସ୍ୱାମୀ ସ୍ତ୍ରୀ ରୂପରେ ବାନ୍ଧି ହୋଇ କାଳାତିପାତ କଲେ ଜ୍ଞାନଦେବୀ ଓ ବିଜୁବାବୁ ।

ରୂପ ଗୁଣ ବିଭବରେ ଅନନ୍ୟା ରୂପସୀ ଜ୍ଞାନଦେବୀ ପ୍ରତି ଓଡ଼ିଆ ପ୍ରାଣର ମମତାମୟୀ ସ୍ନେହସ୍ନିଗ୍ଧା ଜନନୀ । ଯେପରି ନାମ ସେପରି କାମ । ଆଭିଜାତ୍ୟ ମଧ୍ୟରେ ରହି ସେ ଯେପରି ସ୍ୱାମୀ ଅନୁରକ୍ତା, ବୈଭବଲକ୍ଷ୍ମୀଙ୍କ ଅଙ୍କ ମଣ୍ଡନ କରି ସେ ସେପରି ସନ୍ତାନବତ୍ସଳା, ସ୍ୱାଭିମାନୀ । ଓଡ଼ିଶାବାସୀଙ୍କ ହୃଦୟର ଦେବୀ ନଥିଲେ, ଥିଲେ ଶତ ଜନନୀର ଅଧିକାରିଣୀ ଜ୍ଞାନଦେବୀ ।

ଏସିଆ ଓ ଆଫ୍ରିକାର ଅନେକ ଦେଶ ଔପନିବେଶିକ ଶାସନ ମଧ୍ୟରେ ଶାସିତ ହୋଇ ମୁକ୍ତିର ସ୍ୱପ୍ନ ଦେଖୁଥାନ୍ତି । ବିଦେଶୀମାନଙ୍କ କବଳରୁ ମୁକ୍ତି ନିଶାରେ ଜୀବନମୂର୍ଚ୍ଛା ସଂଗ୍ରାମ କରୁଥାନ୍ତି । ଭାରତରେ ମହାତ୍ମାଗାନ୍ଧୀଙ୍କ ଡାକରାରେ ସ୍ୱାଧୀନତା ସଂଗ୍ରାମରେ ସମଗ୍ର ଭାରତବାସୀ ଝାସ ଦେଲେ ଏବଂ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ସ୍ୱାଧୀନତା ହାସଲ କଲେ ।

ଏହି ଆନ୍ଦୋଳନ ଅନେକ ପରାଧୀନ ଜାତିକି ପ୍ରେରଣା ଯୋଗାଇଲା । ଇଂରେଜମାନଙ୍କ କବଳରୁ ଭାରତ ସ୍ୱାଧୀନତା ହାସଲ କରିବା ପରେ ଡଚ୍ ଅଧିକୃତ ଇଣ୍ଡୋନେସିଆ ଅଧିବାସୀଙ୍କ ଉପରେ ଭାରତର ପ୍ରଭାବ ପଡ଼ିଲା । ବିଦେଶୀ ଶାସନରୁ ମୁକ୍ତିଲାଭ କରିବା ନିମନ୍ତେ ଇଣ୍ଡୋନେସିଆର ବହୁ ସଂଗ୍ରାମୀ ନେତା ଜୀବନକୁ ବାଜି ଲଗେଇ ସଂଗ୍ରାମରେ ଝାସ ଦେଲେ । ନେତାଙ୍କ ମଧ୍ୟରେ ଥିଲେ ଡକ୍ଟର ସୁକର୍ଣ୍ଣୋ, ଡକ୍ଟର ମହମ୍ମଦ ହଟ୍ଟା, ଡକ୍ଟର ସାହାରିଆର ।

ଇଣ୍ଡୋନେସିଆର ଜୀବନପଣ ଆନ୍ଦୋଳନକୁ ଦବାଇବା ପାଇଁ ଡଚ୍ ସରକାର ପ୍ରବଳ ଅମାନୁଷିକ ଅତ୍ୟାଚାର ଜନସାଧାରଣଙ୍କ ଉପରେ ଚଳାଇଥାନ୍ତି । କୌଣସି ଖବର ଅନ୍ତର ବାହାର ଦୁନିଆକୁ ଇଣ୍ଡୋନେସିଆରୁ ଯାଇପାରୁ ନ ଥିଲା । ଇଣ୍ଡୋନେସିଆକୁ ସ୍ୱାଧୀନତା ଦେବାରେ ପଣ୍ଡିତ ଜବାହରଲାଲ ନେହେରୁ ଓ ଗାନ୍ଧୀଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଦୁଃସାହସିକ, ଦୁର୍ଦ୍ଧର୍ଷ ବୈମାନିକ ବିଜୁ ପଟ୍ଟନାୟକଙ୍କୁ ପ୍ରଧାନମନ୍ତ୍ରୀ ନେହେରୁ ଇଣ୍ଡୋନେସିଆବାସୀଙ୍କୁ ସାହାଯ୍ୟ ସହଯୋଗ କରିବାକୁ ନିଯୁକ୍ତି ଦେଲେ । ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ବିଜୁ ବିପଦକୁ ବରଣ କଲେ ।

ଡଚ୍ ସରକାରଙ୍କ ସୈନ୍ୟ ଗୁଳିଗୁଳାକୁ ଖାତିର ନ କରି ଉଡ଼ାଜାହାଜରେ ଯାଇ ସମସ୍ତ ଖବର ଆଣି ନେହେରୁଙ୍କୁ ଦେଲେ । ସବୁ ଅସାଧ କାର୍ଯ୍ୟକୁ ସାଧନ କରିବାରେ ବିଜୁ ଥିଲେ ଆଗଭର ଓ ତତ୍ପର । ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ପରୀକ୍ଷାର ସମ୍ମୁଖୀନ ହେବା ଜଣେ ବୀରପୁରୁଷର ଲକ୍ଷଣ– ପ୍ରସଙ୍ଗକ୍ରମେ ବିଜୁ କହିଥିଲେ, ଡଚ୍ ସୈନ୍ୟମାନଙ୍କ କବଳରୁ ଜୀବନବାଜି ଲଗେଇ ବିଜୁ ଇଣ୍ଡୋନେସିଆର ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାରମାନଙ୍କୁ ଉଦ୍ଧାର କରିଥିଲେ ।

ବିଜୁବାବୁ ସହଧର୍ମିଣୀ ଜ୍ଞାନ ପଟ୍ଟନାୟକଙ୍କୁ ସାଙ୍ଗରେ ଧରି ଏକ ଡାକୋଟା ବିମାନ ଯୋଗେ ଇଣ୍ଡୋନେସିଆର ରାଜଧାନୀ ଜାକର୍ତ୍ତା ଗଲେ ଓ ସୁକର୍ଣ୍ଣୋଙ୍କୁ ସୁମାତ୍ରାର ଗୋଟିଏ ଘାଟୀରେ ଭେଟିଲେ । ସୁକର୍ଣ୍ଣୋ ବଡ଼ ଚିନ୍ତାରେ ଥାଆନ୍ତି, କାରଣ ସ୍ତ୍ରୀ ଫାତମା ଗର୍ଭଯନ୍ତ୍ରଣା ଭୋଗ କରୁଥାନ୍ତି । କିଛି ସମୟ ଅତିବାହିତ ହେବା ପରେ ସୁକର୍ଣ୍ଣୋଙ୍କର ଏକ ଝିଅ ଜନ୍ମ ହେଲା । ବିଜୁ ଓ ସୁକର୍ଣ୍ଣୋ ଆନନ୍ଦରେ କୋଳାକୋଳି ହେଲେ । ଇଣ୍ଡୋନେସିଆବାସୀ ମୁସଲମାନ ହେଲେ ମଧ୍ୟ ସେମାନେ ସନ୍ତାନସନ୍ତତିଙ୍କର ସଂସ୍କୃତ ଭାଷାରେ ନାମକରଣ କରନ୍ତି । ସୁକର୍ଣ୍ଣୋ ନବଜନ୍ମିତ ଝିଅର ନାମ ଦେବା ପାଇଁ ବିଜୁଙ୍କୁ ଅନୁରୋଧ କଲେ । ବିଜୁ କାଳବିଳମ୍ବ ନ କରି ଅନୁରୋଧ ରକ୍ଷାକରି ସୁକର୍ଣ୍ଣୋଙ୍କ ଝିଅର ନାମ ଦେଲେ ‘‘ମେଘାବତୀ ସୁକର୍ଣ୍ଣା ପୁତ୍ରୀ’’ ।

ଏକ ବିରାଟ ସମାରୋହରେ ବିଜୁଙ୍କୁ ଇଣ୍ଡୋନେସିଆର ସମ୍ମାନଜନକ ସମ୍ମାନ ‘ଭୂମିପୁତ୍ର’ ଉପାଧି ପ୍ରଦାନ କରାଗଲା । ସମବେତ ଶ୍ରୋତୃମଣ୍ଡଳୀ ବିଜୁଙ୍କ ଭାଷଣ ଶୁଣି ସ୍ତବ୍ଧ ଓ ଚକିତ ହେଲେ । ଇଣ୍ଡୋନେସିଆବାସୀ ପୁଷ୍ପମାଲ୍ୟରେ ବିଜୁଙ୍କୁ କୋଳାଗ୍ରତ କଲେ । ସମ୍ମାନ ଓ ଭୂଷଣରେ ଶୀର୍ଷ ଛୁଇଁଲେ ବିଜୁ । କୋଠା, ଖଣି, ଜଙ୍ଗଲ ବନ୍ଦର, ସମସ୍ତ ପ୍ରକାର ଉପହାର, ଉପଢୌକନ ବିଜୁଙ୍କ ହାତରେ ଅର୍ପଣ କଲେ ଇଣ୍ଡୋନେସିଆବାସୀ (ଯାହାର ମୂଲ୍ୟ ସେତେବେଳେ ଦଶହଜାର କୋଟି ହେବ ।) ନମ୍ରତାର ସହ ସବୁ ଗ୍ରହଣ କଲେ ବିଜୁ କିନ୍ତୁ ହସି ହସି ସବୁ ଫେରାଇ ଦେଲେ । ପ୍ରାପ୍ତିର ଆନନ୍ଦ ତାଙ୍କୁ ଅଧୀର କରି ନ ଥିଲା କି ଅପ୍ରାପ୍ତିର ବେଦନା ତାଙ୍କୁ ତିଳେମାତ୍ର ସ୍ପର୍ଶ କରି ନ ଥିଲା । ସୁଖ ଦୁଃଖରେ ସେ ଥିଲେ ଅବିଚଳିତ, ସ୍ଥିତିପ୍ରାଜ୍ଞ ଦୃଢ଼ଚିତ । ବିନମ୍ରତାର ସହିତ ବିଜୁ ଇଣ୍ଡୋନେସିଆବାସୀଙ୍କୁ ଜଣାଇଲେ ‘‘କଳିଙ୍ଗର ରାଜା କୌଣସି ଉପହାର ନିଅନ୍ତି ନାହିଁ । ମୁଁ ସେହି କଳିଙ୍ଗମାଟିର ସନ୍ତାନ ଏସବୁକୁ ଗ୍ରହଣ କରିବି କେମିତି ?

## ପ୍ରଶଂସାର ପ୍ରତ୍ୟୟରେ ପ୍ରଥିତଯଶା

ଗୋଟିଏ ପଟରେ ଦେଶର ଆହ୍ୱାନ, ଅନ୍ୟ ପଟରେ ଚାକିରି ଜୀବନ ବିଜୁଙ୍କୁ ଗୋଲକଧନ୍ଦାର ସମ୍ମୁଖୀନ କରିଥିଲା । ଯଦିଓ ସେ ପାଇଲଟ ଚାକିରି କରିଥିଲେ କିନ୍ତୁ ଗୋରାସରକାରଙ୍କ ବିରୋଧରେ ଲଢ଼ିବାକୁ ଛାତ୍ର ଜୀବନରୁ ଶପଥ ନେଇଥିଲେ । ଜୟପ୍ରକାଶଙ୍କଠାରୁ ସମସ୍ତ ବିଷୟ ଅବଗତ ହେବା ପରେ ଚାକିରି ଛାଡ଼ି ଦେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ ସ୍ଥିର କଲେ । ଜୟପ୍ରକାଶଜୀ ବିଜୁଙ୍କ ମନୋଭାବକୁ ଗ୍ରହଣ କଲେ ନାହିଁ । ଚାକିରିରେ ରହି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସାହାଯ୍ୟ ସହଯୋଗ କରିବାକୁ ବିଜୁଙ୍କୁ ଉପଦେଶ ଦେଲେ । ଦେଶ ପାଇଁ ଜୀବନ ଉତ୍ସର୍ଗର ଶପଥ ନେଇଥିଲେ ବିଜୁ ଶୈଶବରୁ । ଉତ୍କଳ ଜନନୀର ଆହ୍ୱାନ, ପିତାଙ୍କ ବଚନ ତାଙ୍କ ଶ୍ରବଣରେ ପ୍ରତିଧ୍ୱନିତ ହେଉଥିଲା ଶୟନେ ସପନେ ଜାଗରଣେ ।

ଗୋଇନ୍ଦା ବିଭାଗ ଆଖିରେ ଧୂଳି ଦେଇ ନିଜ ବିମାନରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନେବାଆଣିବା କଲେ । ଛଦ୍ମ ବେଶରେ ଦେଶର ମଙ୍ଗଳ ପାଇଁ ଗୋରାମାନଙ୍କ ଆଖିରେ ଆଖି ମିଳେଇ ଜାତୀୟ କଂଗ୍ରେସ ପ୍ରଚାରପତ୍ର ବିଜୁ ନିର୍ଭୟରେ ଉଡ଼ାଜାହାଜରେ ତଳକୁ ପକାଇଲେ । ବିଜୁଙ୍କ କାର୍ଯ୍ୟକଳାପ ଗୋରାମାନଙ୍କୁ ଅଛପା ରହିଲା ନାହିଁ । ୧୯୪୩ ମସିହା ଜାନୁୟାରୀ ୧୩ ତାରିଖରେ ଗୋରା ଗୋଇନ୍ଦା ବିଭାଗ ବିଜୁଙ୍କୁ ଦିଲ୍ଲୀରେ ଗିରଫ କଲେ । ହାତରେ କଡ଼ି ଗୋଡ଼ରେ ବେଡ଼ି ପକାଇ ରାଜପଥରେ ନିଆଯାଇ ଲାଲକିଲ୍ଲା ଦୁର୍ଗ କାରାଗାର ଭିତରେ ବିଜୁଙ୍କୁ ରଖାଗଲା । ବହୁ ଦୁଃଖ ଓ ଯାତନା ଭିତରେ ବିଜୁ ଥିଲେ ଅବିଚଳିତ ନିର୍ଲିପ୍ତ । ଫିରୋଜପୁର ଜେଲକୁ ସ୍ଥାନାନ୍ତରିତ ହେବା ପରେ ହସ ହସ ମୁଖରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ବିଜୁ କହିଥିଲେ ‘ଏ ଦେହର ଅବସାନ ଅଛି ଦେଶ ଜାତି ପାଇଁ କାରାବରଣ କରିବା କ’ଣ ବଡ଼ କଥା ?’

ଭାଇର କାରାବରଣ କଥା ଶୁଣି ବଡ଼ଭାଇ ଜର୍ଜ ପଟ୍ଟନାୟକ ଦୁଃଖରେ ଭାଙ୍ଗିପଡ଼ିଲେ । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଥାଆନ୍ତି ଓଡ଼ିଶାର ପ୍ରଧାନମନ୍ତ୍ରୀ । ଭାରତର ବଡ଼ଲାଟଙ୍କ ସହିତ କୃଷ୍ଣଚନ୍ଦ୍ର ଗଜପତିଙ୍କ ସଂପର୍କ ଥିଲା କ୍ଷୀରନୀର ସଂପର୍କ । ଜର୍ଜ ପଟ୍ଟନାୟକ ପାରଳା ମହାରାଜାଙ୍କୁ ଅନୁରୋଧ କଲେ ବିଜୁଙ୍କୁ କାରାଗାରରୁ ମୁକ୍ତ କରିବା ପାଇଁ । ଅନୁରୋଧ ରକ୍ଷା କରି ପାରଳା ରାଜା ଭାରତର ତଦାନୀନ୍ତନ ବଡ଼ଲାଟ ଲର୍ଡ଼

ୱେଭେଲ୍‌ଙ୍କ ନିକଟକୁ ଗଲେ ଓ ବହୁ ସମୟ ଖୁସି ଗପ କରିବା ଭିତରେ ବିଜୁଙ୍କୁ ଜେଲରୁ ଖଲାସ କରିବାକୁ ଅନୁରୋଧ କଲେ । ଗଜପତିଙ୍କ ଅନୁରୋଧ ଶୁଣି ବଡ଼ଲାଟ ଉତ୍ତର ଦେଲେ– ''ମୁଁ ଆପଣଙ୍କର ସବୁ କଥା ରଖିବି ହେଲେ ବିଜୟାନନ୍ଦଙ୍କୁ ଜେଲରୁ ଖଲାସ କରିପାରିବି ନାହିଁ । ମୁଁ ବିଜୟାନନ୍ଦଙ୍କୁ ଭଲ ଭାବରେ ଜାଣେ । ତାଙ୍କ ପରି ସାହସୀ ପାଇଲଟ ଭାରତ କାହିଁକି ସାରା ପୃଥିବୀରେ କମ୍ ଅଛନ୍ତି । ସେହି ବିଜୟାନନ୍ଦ ମତେ ମରଣ ମୁହଁରୁ ଥରେ ବଞ୍ଚାଇଛନ୍ତି । ତାଙ୍କ ପାଖରେ ଚିରଋଣୀ । ସେ ଜେଲ ଭୋଗୁଥିବାରୁ ଆପଣଙ୍କ ପରି ମୋ ମନ ବଡ଼ ଦୁଃଖ । ହେଲେ ମୁଁ ନିରୁପାୟ । ବିଜୟାନନ୍ଦ ଥରେ ଜେଲରୁ ଖଲାସ ହୋଇଗଲେ, କେଉଁଆଡ଼େ ଉଡ଼ି ପଳାଇବେ ତାଙ୍କୁ ଆଉ ଧରିହେବ ନାହିଁ ।''

ବିଜୁଙ୍କୁ ଗଜପତି ଜେଲରୁ ମୁକୁଳାଇ ପାରିଲେନି ବୋଲି ଅନୁଶୋଚନା ନ ଥିଲା । ଓଡ଼ିଆ ପୁଅର ପ୍ରଶଂସା ଶୁଣି ମହାରାଜା ଭୋକ ଶୋଷ ଭୁଲି ଯାଇଥିଲେ । ଭାରତର ବଡ଼ଲାଟଙ୍କ ମୁହଁରୁ ଜଣେ କାରାଗାର ଅନ୍ତେବାସୀର ପ୍ରଶଂସା ପାରଳାରାଜାଙ୍କୁ ଯେତିକି ବିସ୍ମୟ କଲା ତା'ଠାରୁ ଅଧିକ ଆନନ୍ଦ ଦେଲା । ଏହାଠାରୁ ଗର୍ବ ଓ ଗୌରବର ବିଷୟ ଆଉ କ'ଣ ଥାଇପାରେ ?

## କୀର୍ତ୍ତି କୋଣାର୍କର କାରିଗର

ଯାହାର ଦୃଷ୍ଟି ଯେପରି ତା'ର ସୃଷ୍ଟି ସେପରି । ସୃଷ୍ଟି ପାଇଁ ସ୍ରଷ୍ଟା ହୁଏ ଅମର । ବ୍ୟକ୍ତିଦୃଶ୍ୟ ବ୍ୟକ୍ତିତ୍ୱ ଅଦୃଶ୍ୟ । ବ୍ୟକ୍ତିତ୍ୱ ପାଇଁ ଗଣମନରେ ବ୍ୟକ୍ତିସତ୍ତା କାଳ କାଳ ଧରି ସ୍ମରଣ ରହେ । ବିଜୁବାବୁ ଥିଲେ ଶିଳ୍ପ ପ୍ରତିଷ୍ଠାନର ପ୍ରଖ୍ୟାପକ ଓ କଳାନୈପୁଣ୍ୟର କାରିଗର । ଗରିବ ପାଇଁ ଥିଲେ ଦୟାର ଅବତାର ଶ୍ରମିକ ପାଇଁ ସେ ଥିଲେ ସମୟର ସ୍ଥପତି । କାରାଗାରରୁ ମୁକ୍ତ ହେବା ପରେ ବହୁ ଘାତ ପ୍ରତିଘାତ ଭିତରେ ଚୌଦ୍ୱାରରେ ବସାଇଲେ ବିଜୁ ଲୁଗାକଳ । ଭଲ କାମ କରିବାକୁ ଗଲେ ବହୁ ବାଧାବିଘ୍ନ ପହଞ୍ଚିବ । ସବୁକୁ ପଦାନତ କରି ଆଗକୁ ଯିବାକୁ ପଡ଼ିବ – ଏହା ଥିଲା ବିଜୁବାବୁଙ୍କ ମାନବିକତାର ପରମ ଆଦର୍ଶ । ମିଥ୍ୟା କେବେ ସତ୍ୟର ପଥରୋଧ କରିପାରେନା । ବିଜୁ ସତ୍ୟର ପୂଜାରୀ । ଚୌଦ୍ୱାର ଲୁଗାକଳରେ ବହୁ ଶ୍ରମିକ କାମ ପାଇଲେ, ଗମନାଗମନର ସୁବିଧା ହେଲା । ଟାଙ୍ଗରା ଭୂଇଁ ବିଜୁଳି ଆଲୁଅରେ ହସି ଉଠିଲା । ଗାଆଁକୁ ମିଳିଲା କାମ, ମାଆକୁ ମିଳିଲା ସମ୍ମାନ । ଓଡ଼ିଶାବାସୀଙ୍କୁ ଚୌଦ୍ୱାରର ଲୁଗାକଳ ବିଜୁବାବୁଙ୍କ ପ୍ରଥମ ଅବଦାନ ।

ବିଜୁବାବୁଙ୍କ ସ୍ୱପ୍ନ ଥିଲା ଓଡ଼ିଆ ପୁଅ ସବୁ କ୍ଷେତ୍ରରେ ଆଗରେ ରହନ୍ତୁ ଓ ଆତ୍ମନିର୍ଭରଶୀଳ ଜୀବନ ବଞ୍ଚନ୍ତୁ । ସୁପ୍ତ ଓଡ଼ିଆ ଜାତିକୁ ସାହସୀ, ଜାଗ୍ରତ କରିବା ପାଇଁ ସମୟର ସବ୍ୟସାଚୀ ବିଜୁ 'ଓଡ଼ିଶା ଫ୍ଲାଇଙ୍ଗ୍ କ୍ଲବ' ନାମକ ଏକ ଅନୁଷ୍ଠାନ ଗଢ଼ିଥିଲେ । କ୍ଲବର ସଭାପତି ଥିଲେ ଡକ୍ଟର ହରେକୃଷ୍ଣ ମହତାବ । କ୍ଲବ ପରିଚାଳନା କରିବା ପାଇଁ କରାଚିରୁ ଜଣେ ଦକ୍ଷ ଇଞ୍ଜିନିୟରଙ୍କୁ ରେଡ଼ିଓ ଅଫିସର କରି ଆଣିଥିଲେ । ଟାନା ସାହେବ କରାଚିର ହେଲେ ମଧ୍ୟ ବିଜୁଙ୍କ ଅନୁରକ୍ତ ଥିଲେ । ବିଜୁଙ୍କ କଳାକୁଶଳତା ଓ କାର୍ଯ୍ୟଦକ୍ଷତାକୁ କରାଚି ସାହେବ ଭୂରି ଭୂରି ପ୍ରଶଂସା କରୁଥିଲେ । ଜୀବନ ବିଦ୍ୟାଳୟର ବିଜୁ ଥିଲେ ଜଣେ ସାର୍ଥକ ସାଧକ ଓ ଧୂରୀଣ ଧୂର୍ଜଟୀ ।

ଚୌଦ୍ୱାରର ଲୁଗାକଳ ପରେ 'କଳିଙ୍ଗ ଟ୍ୟୁବ୍‌ସ' କାରଖାନା ବସାଇ ଲୋକଙ୍କୁ କାମ ଦେଲେ ଓ 'କଳିଙ୍ଗ ରେଫ୍ରିଜେରେଟର୍ସ', 'କଳିଙ୍ଗ ଇଣ୍ଡଷ୍ଟ୍ରିଜ' ଗଢ଼ି ଚୌଦ୍ୱାରକୁ ସମୃଦ୍ଧ କରିବା ସହିତ ଓଡ଼ିଶାକୁ ବିଶ୍ୱଦରବାରରେ ସ୍ଥାନ ଦେଲେ ।

ବିଜ୍ଞାନକୁ ଜାତୀୟ ସ୍ତରରେ ଲୋକପ୍ରିୟ କରିବା ନିମନ୍ତେ ପ୍ରଜ୍ଞାପୁରୁଷ ବିଜୁ ପଟ୍ଟନାୟକ 'କଳିଙ୍ଗ ପୁରସ୍କାର' ଆରମ୍ଭ କରିଥିଲେ । ଓଡ଼ିଶାର ଜନଜୀବନ ବାର୍ତ୍ତାକୁ ପ୍ରଚାର କରିବା ପାଇଁ ସେ 'କଳିଙ୍ଗ' ନାମକ ଦୈନିକ ସମ୍ବାଦପତ୍ର ପ୍ରକାଶ କରି ସାଧାରଣରେ ବହୁ ଆଲୋଚିତ ହୋଇଥିଲେ । ସେ ଶିକ୍ଷାରେ ସଂସ୍କାର ଆଣିବା ସଙ୍ଗେ ସଙ୍ଗେ ଗ୍ରାମପଞ୍ଚାୟତର ଜନମଙ୍ଗଳ କାର୍ଯ୍ୟଗୁଡ଼ିକୁ ସୁଚାରୁରୂପେ ଅନୁଧ୍ୟାନ କରୁଥିଲେ ।

ପଞ୍ଚଚାଳିଶ ବର୍ଷ ବୟସରେ ବିଜୁ ମୁଖ୍ୟମନ୍ତ୍ରୀ ପଦରେ ଅଭିଷିକ୍ତ ହୋଇଥିଲେ । ଦେଶବାସୀଙ୍କର ସେବା କରିବାକୁ ସୁଯୋଗ ପାଇଲେ । ପାରାଦ୍ୱୀପରେ ଭାରତର ସବୁଠାରୁ ବୃହତ୍ ଓ ଗଭୀରତମ ବନ୍ଦର ନିର୍ମାଣ କଲେ । ଓଡ଼ିଶାର ଏକ୍ସପ୍ରେସ ପଥ ନିର୍ମାଣ ତାଙ୍କ ହାତର ତାରକସୀ କାମ । ଶିଳ୍ପର ପ୍ରସାର ପାଇଁ ଶିଳ୍ପବିକାଶ ସଂସ୍ଥା ଗଠନ କରି, ଶିଳ୍ପପତିମାନଙ୍କ ସହିତ ଭାବ ବିନିମୟରେ ଓଡ଼ିଶାର ପ୍ରଭୂତ ଉନ୍ନତି କଲେ । କୋରାପୁଟର ସୁନାବେଡ଼ାଠାରେ ମିଗ୍‌ବିମାନ କାରଖାନା, ଭୁବନେଶ୍ୱରଠାରେ ସୈନିକ ସ୍କୁଲ, ଆଞ୍ଚଳିକ ଗବେଷଣା କେନ୍ଦ୍ର, ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ ପ୍ରଭୃତି ଅନୁଷ୍ଠାନ ବିଜୁଙ୍କ ମନୀଷା ଓ ଦୂରଦୃଷ୍ଟିର ପ୍ରତୀକ ।

ବିଜୁବାବୁଙ୍କ ସମୟରେ ପାଠ୍ୟପୁସ୍ତକ ଜାତୀୟକରଣ ହୋଇଥିଲା । ରେଭେନ୍‌ସା ସାନ୍ଧ୍ୟ କଲେଜ, ଭୁବନେଶ୍ୱର ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ, ରାଉରକେଲା ଆଞ୍ଚଳିକ ଇଞ୍ଜିନିୟରିଂ ମହାବିଦ୍ୟାଳୟ ପ୍ରଭୃତି ଶିକ୍ଷାନୁଷ୍ଠାନ ବିଜୁଙ୍କ ପରିଶ୍ରମର ବିରଳ ଉଦାହରଣ । ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳ ସମୟରେ ଚଉତିରିଶ ଗୋଟି ବେସରକାରୀ କଲେଜ ଓଡ଼ିଶାରେ ସ୍ଥାପନ ହୋଇଥିଲା ।

ବେସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ପୁରୀ, ବାଲେଶ୍ୱର, ବଲାଙ୍ଗୀର ଓ ସମ୍ବଲପୁର ଏପରି ଚାରିଗୋଟି ମହିଳା କଲେଜକୁ ବିଜୁବାବୁଙ୍କ ସମୟରେ ସରକାର ହାତକୁ ନେଲେ । ଢେଙ୍କାନାଳ, ସୁନ୍ଦରଗଡ଼, କେନ୍ଦୁଝର, କଳାହାଣ୍ଡିରେ ଥିବା ଚାରୋଟି ବେସରକାରୀ କଲେଜ ସରକାରୀ ହୋଇଥିଲା । ସବୁ ଜିଲ୍ଲାର ସଦର ମହକୁମାରେ ବିଜୁବାବୁ ଚାହୁଁଥିଲେ ଗୋଟିଏ ଲେଖାଏଁ ସରକାରୀ କଲେଜ ସ୍ଥାପନ ହେଉ । ଚାରିଆଡ଼େ ଶିକ୍ଷାର ପ୍ରସାର ଓ ବିସ୍ତାର ହେଉ ।

### ଅମୃତ ଆଲୋକର ଅବସାନ :

ଓଡ଼ିଶାର ପୁରପଲ୍ଲୀରେ ବୈଭବ ଲକ୍ଷ୍ମୀଙ୍କର ପୂଜା ଚାଲିଥାଏ । ସଧବା ନାରୀମାନେ ନବବସ୍ତ୍ର ପରିଧାନ କରି ମାଣବସା ଗୁରୁବାର ପାଳନ କରୁଥାନ୍ତି । ତରୁଣ ଅରୁଣ ଆଭାରେ ତଟିନୀ ତଟମାଳିନୀ ଜନନୀ ହସୁଥାଏ । ସୁବର୍ଣ୍ଣ ସକାଳର ମନ୍ଦ ମରୁତ ଦେହରେ ଶିହରଣ ଆଣୁଥାଏ । କିଏ କେଉଁଠି ଥାଏ କାହାର ପତା ନ ଥାଏ । ୧୯୯୭ ମସିହା ଏପ୍ରିଲ ମାସ ୧୭ ତାରିଖ ପବିତ୍ର ଗୁରୁବାର ସୁଦଶାବ୍ରତ ପାଳନ ଅବସରରେ ଦିନ ୮ଟା ୧୫ ମିନିଟ୍‌ରେ ଓଡ଼ିଆ ଜାତିର ସ୍ୱାଭିମାନର ସ୍ୱରୂପ, ମହାନାୟକ ବିଜୟାନନ୍ଦ ପଟ୍ଟନାୟକଙ୍କର ଜୀବନ ପ୍ରଦୀପର ଅବସାନ ହେଲା ।

ଅନନ୍ତ ଅମୃତ ଆଲୋକର ଅବସାନ ସାରା ବିଶ୍ୱକୁ ଚକିତ କରିଦେଲା । ଦିଲ୍ଲୀରୁ ପଲ୍ଲୀ, କଟକରୁ କୋରାପୁଟ, ଭୁବନେଶ୍ୱରରୁ ଭବାନୀପାଟଣା, ଛତିଆରୁ ଛତିଶଗଡ଼, ସୁନ୍ଦରଗଡ଼ରୁ ସିକନ୍ଦରବାଦ, ଆଠଗଡ଼ରୁ ଅନୁଗୋଳ, ସୁନାବେଡ଼ାରୁ ସୋନପୁର, ଫୁଲବାଣୀରୁ ଫରିଦାବାଦ, ଇଞ୍ଚୁଡ଼ିରୁ ଇଣ୍ଡୋନେସିଆ, ଜାକର୍ତ୍ତାରୁ ଜାରକା, ପିପିଲିରୁ ଫିଲପାଇନ୍‌ସ, କେରଳରୁ କୋଇମ୍ବାଟୁର, ବାରିପଦାରୁ ବିଶାଖାପାଟନା, ଯିଏ ଯେଉଁଠି ଥିଲେ ବିଜୁଙ୍କ ଶେଷ ଦର୍ଶନ ନିମନ୍ତେ ଭୁବନେଶ୍ୱର ବିମାନବନ୍ଦରକୁ ଆସିଥିଲେ । ପୁରୀରେ ବିଜୁଙ୍କ ଶବ ଶୋଭାଯାତ୍ରା ସମୟରେ ଦ୍ୱିତୀୟ ରଥଯାତ୍ରାର ଲୋକ ଅଶ୍ରୁଳ ନୟନରେ ଶେଷ ଦର୍ଶନ କରିଥିଲେ । ଆଧୁନିକ ଓଡ଼ିଶାର ନିର୍ମାତା, ଓଡ଼ିଆ ସ୍ୱାଭିମାନର ପ୍ରତୀକ, ଜାତୀୟ ରାଜନୀତିର ପ୍ରବାଦପୁରୁଷ, ମାଟିମଲାଟର ମହାନାୟକଙ୍କ ପ୍ରସ୍ଥାନ, ଉତ୍କଳ ଜନନୀର ଅଙ୍କ ଚିରଦିନ ଶୂନ୍ୟ ହୋଇ ରହିଲା, ଏଥିରେ ତିଳେ ହେଲେ ସନ୍ଦେହର ଅବକାଶ ନାହିଁ ।



ପ୍ରମୁଖ ସଚିବ
ସିସୋର ସାହିତ୍ୟ ଏକାଡ଼େମୀ,
ଶହୀଦ ନଗର, ଭୁବନେଶ୍ୱର

### ସହାୟକ ଗ୍ରନ୍ଥ ସୂଚୀ :


୧. ଓଡ଼ିଶା ଇତିହାସ : ଡକ୍ଟର ହରେକୃଷ୍ଣ ମହତାବ, ପ୍ରକାଶକ : ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ, ବିହାରିବାଗ, କଟକ–୭୫୩୦୦୨

୨. ମୋ ଜୀବନ ସଂଗ୍ରାମ : ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପ୍ରକାଶକ : ଅନ୍ନପୂର୍ଣ୍ଣା ପବ୍ଲିଶର୍ସ, ବ୍ରହ୍ମପୁର – ୭୬୦୦୦୩

୩. ମୋ ସମୟର ଓଡ଼ିଶା : ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପ୍ରକାଶକ : କିତାବମହଲ, କଲେଜ ସ୍କୋୟାର, କଟକ–୭୫୩୦୦୩

୪. କଳିଙ୍ଗର ବରପୁତ୍ର : କାଳିନ୍ଦୀ ବେହେରା, ପ୍ରକାଶକ : ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ

୫. Biju Pattnaik - A political Biography written by - Bhaskar Parichha

# ବିଜୁଙ୍କ ଆହ୍ୱାନ -'ଗାଁକୁ କାମ, ମାଆଙ୍କୁ ସମ୍ମାନ'

ପବିତ୍ର ମୋହନ ବାରିକ

ଓଡ଼ିଆ ଜାତିର ଗର୍ବ, ଗୌରବ, ସ୍ୱାଭିମାନର ପ୍ରତୀକ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ଅନେକ କାଳଜୟୀ କୃତିତ୍ୱ ମଧ୍ୟରୁ ନାରୀ ଜାଗରଣ ଓ ନାରୀ ଜାତିର ବିକାଶ ପ୍ରତି ଥିଲା ତାଙ୍କର ଅସୀମ ଶ୍ରଦ୍ଧା ଓ ସଭକ୍ତି ସମ୍ମାନ । ତାଙ୍କ ଜୀବଦଶାରେ ମହିଳାମାନଙ୍କ ମହତ୍ୱକୁ ସେ ଶ୍ରେଷ୍ଠ ସ୍ଥାନ ଦେଇ ଆସିଥିଲେ । ଏକ ସ୍ୱାଭିମାନୀ, ବୀର ଓ ନିର୍ଭୀକ ଓଡ଼ିଆ ଜାତି ଗଠନ ଦିଗରେ ମା'ମାନଙ୍କର ଗୁରୁଦାୟିତ୍ୱ ରହିଛି - ଏହା ବିଜୁ ବାବୁ ଉପଲବ୍ଧି କରିଥିଲେ ।

ବିଜୁବାବୁଙ୍କମାତା ଆଶାଲତା ଦେବୀ ସ୍ୱାଧୀନତା ସଂଗ୍ରାମ ପରିପ୍ରେକ୍ଷୀରେ ମୁକ୍ତି ଯୋଦ୍ଧାମାନଙ୍କର ସଂଘର୍ଷପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ତାଙ୍କ ହୃଦୟରେ ଜାତିପ୍ରେମ ଓ ଦେଶଭକ୍ତିର ଭାବଧାରା ସୃଷ୍ଟି କରିପାରିଥିଲେ । ଆଶାଲତା ଦେବୀ ଥିଲେ ବିଜୁବାବୁଙ୍କ ପାଇଁ ପ୍ରେରଣା ଓ ଉତ୍ସାହର ଏକ ପ୍ରବାହମାନଧାରା । ଚିଟାଗଞ୍ଜ ଅସ୍ତ୍ରାଗାର ଲୁଣ୍ଠନ କାର୍ଯ୍ୟରେ ବିଜୁବାବଙ୍କ ମାତା ଆଶାଲତା ଦେବୀଙ୍କ ସାନ ଭାଇ ବିଜୟଶ୍ରୀ, ତାଙ୍କ ପୁତୁରା ଦେବପ୍ରସାଦ, ଆନନ୍ଦ ପ୍ରସାଦ ମୁଖ୍ୟ ନେତୃତ୍ୱ ନେଇଥିଲେ । ଦେବପ୍ରସାଦ ପୋଲିସ ଗୁଳିରେ କ୍ଷତବିକ୍ଷତ ହୋଇ ଛୁରି ଦ୍ୱାରା ଆତ୍ମହତ୍ୟା କଲେ । ଆନନ୍ଦ ପ୍ରସାଦ ବନ୍ଦୀ ହୋଇ ଜେଲଦଣ୍ଡରେ ଦଣ୍ଡିତ ହୋଇଥିଲେ । ଆଶାଲତା ଦେବୀ ଏମାନଙ୍କ ବୀରତ୍ୱପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ବିଜୁବାବୁଙ୍କ ମନରେ ସ୍ୱାଧୀନତା ସଂଗ୍ରାମ ପ୍ରତି ପ୍ରବଳ ଆଗ୍ରହ ସୃଷ୍ଟି କରିପାରିଥିଲେ । ମାତା ଆଶାଲତା ଦେବୀଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ସେ ପରବର୍ତ୍ତୀ ସମୟରେ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ପ୍ରଚଣ୍ଡ ବିପ୍ଳବିଣୀ ଶ୍ରୀମତୀ ଅରୁଣା ଆସଫ ଅଲ୍ଲୀଙ୍କୁ ବିଜୁବାବୁ ନିଜ ବିମାନରେ ଆଣି କଟକସ୍ଥିତ ତୁଳସୀପୁରର ବାସଭବନରେ ଗୋପନରେ ରଖିଥିଲେ ।

ସାଧାରଣତଃ ଗ୍ରାମୀଣ ଓ ପଛୁଆବର୍ଗର ମହିଳାମାନଙ୍କର ଉନ୍ନତି ଆଣିବା ଦିଗରେ ଅନେକ ଯୋଜନା କାର୍ଯ୍ୟକାରୀ କରାଯାଇଅଛି । ମହିଳାମାନଙ୍କୁ ରାଜନୈତିକ ସଶକ୍ତିକରଣ, ଅର୍ଥନୈତିକ ସ୍ୱାବଲମ୍ବୀ ଓ ସାମାଜିକ ସମାନତା ପ୍ରଦାନ କରିବା ଦିଗରେ ଅନେକ ଦୂରଦୃଷ୍ଟିସଂପନ୍ନ ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ ଓ ବିଦ୍ୱାନମାନେ ନିରନ୍ତର ପ୍ରଚେଷ୍ଟା ଅବ୍ୟାହତ ରଖିଛନ୍ତି । ନାରୀଜାତିକୁ ତା'ର ନ୍ୟାଯ୍ୟ ଅଧିକାର ପ୍ରଦାନ ନିମନ୍ତେ ବିଜୁ ପଟ୍ଟନାୟକ ବହୁ ବୈପ୍ଳବିକ ପରିବର୍ତ୍ତନ ଆରମ୍ଭ କରିଥିଲେ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱର ଦ୍ୱିତୀୟ ପର୍ଯ୍ୟାୟରେ ନାରୀ ସମାଜର ମଙ୍ଗଳ ନିମନ୍ତେ ଅନେକ ଯୁଗୋପଯୋଗୀ ପଦକ୍ଷେପମାନ ଗ୍ରହଣ କରିଥିଲେ । ବିଜୁବାବୁ ନାରୀ ନିର୍ଯ୍ୟାତନାକୁ ଦୃଢ଼ ହସ୍ତରେ ଦମନ କରିବା ନିମନ୍ତେ କଠୋର ପ୍ରଶାସନିକ ବ୍ୟବସ୍ଥା ପ୍ରଣୟନ କରିବା ସହିତ ନାରୀମାନଙ୍କୁ ପୁରୁଷମାନଙ୍କ ସହିତ ସମକ୍ଷମ କରିବା ପାଇଁ ଉଦ୍ୟମ କରିଥିଲେ ।

### ନାରୀଶିକ୍ଷା

ନାରୀମାନେ ଆତ୍ମନିର୍ଭରଶୀଳ ହୋଇପାରିଲେ ସେମାନଙ୍କର ଅଧିକାଂଶ ସମସ୍ୟାର ସମାଧାନ ହୋଇପାରିବ ବୋଲି ବିଜୁବାବୁ ଆଶାବାଦୀ ଥିଲେ । ଅନ୍ୟାନ୍ୟ ଖ୍ୟାତନାମା ବ୍ୟକ୍ତିତ୍ୱମାନଙ୍କ ପରି ବିଜୁବାବୁ ନାରୀଶିକ୍ଷା ସପକ୍ଷରେ ଥିଲେ । ସାମାଜିକ ଉନ୍ନତି ଓ ସଶକ୍ତିକରଣର ମୌଳିକ ବ୍ୟବସ୍ଥା ନାରୀଶିକ୍ଷା ଉପରେ ନିର୍ଭର କରେ, ଏହା ବିଜୁବାବୁ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ତାଙ୍କ ଶାସନ ସମୟରେ ଓଡ଼ିଶା ମଧ୍ୟରେ ଅନେକଗୁଡ଼ିଏ ବାଳିକା ବିଦ୍ୟାଳୟ, ମହିଳା ମହାବିଦ୍ୟାଳୟ, ମହିଳା ଶିକ୍ଷା ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ମଧ୍ୟ ବିଜୁବାବୁ ଅନେକ ବାଳିକା ବିଦ୍ୟାଳୟ ସ୍ଥାପନରେ ସହାୟତା ଯୋଗାଇ ଦେଇଥିଲେ । ବିଜୁବାବୁ ଅଧିକ ସଂଖ୍ୟାରେ ହରିଜନ ଓ ଆଦିବାସୀ ଛାତ୍ରୀମାନଙ୍କୁ ଛାତ୍ରବୃତ୍ତି ତାଙ୍କ ଶାସନ ସମୟରେ ପ୍ରଦାନ କରିଥିଲେ । ଘରୋଇ ଉଦ୍ୟମରେ ପ୍ରତିଷ୍ଠିତ ଏବଂ ସରକାରୀ ଅନୁଦାନ ପାଇଥିବା ବାଳିକା

ଉଚ୍ଚବିଦ୍ୟାଳୟ ଓ ମହିଳା ମହାବିଦ୍ୟାଳୟମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଅଧିକ ସହାୟତା ଯୋଗାଇ ଦେଇଥିଲେ । ଛାତ୍ରୀମାନଙ୍କୁ ବିଜ୍ଞାନ, ବୈଷୟିକ ଶିକ୍ଷା, ପ୍ରତିଭା ବିକାଶ ପ୍ରଭୃତି ବିଷୟରେ ଶିକ୍ଷା ଦେବାରେ ବିଜୁବାବୁ ଗୁରୁତ୍ୱ ଦେଉଥିଲେ ।

୧୯୯୪ ମସିହା ମାର୍ଚ୍ଚ ମାସ ୧ ତାରିଖରୁ ୮ ତାରିଖ ପର୍ଯ୍ୟନ୍ତ ଆନ୍ତର୍ଜାତିକ ମହିଳା ସପ୍ତାହ ପାଳନ ଅବସରରେ ରାଜ୍ୟ ସମାଜମଙ୍ଗଳ ପରିଷଦଦ୍ୱାରା ମହିଳାମାନଙ୍କୁ ସଶକ୍ତିକରଣ ଓ ସମାନତା ପ୍ରଦାନ ଦିଗରେ ଗଣ ସଚେତନତା କାର୍ଯ୍ୟକ୍ରମମାନ ଆରମ୍ଭ ହୋଇଥିଲା । ମହିଳାମାନଙ୍କ ନିମନ୍ତେ ଆୟୋଜିତ ରାଜ୍ୟସ୍ତରୀୟ ଆଲୋଚନାଚକ୍ରରେ ବିଜୁବାବୁ ନିଜେ ଅଂଶ ଗ୍ରହଣ କରି ମହିଳାମାନଙ୍କ ମଧ୍ୟରେ ବିଜ୍ଞାନ ଓ ବୈଷୟିକ ଜ୍ଞାନ ବୃଦ୍ଧିନିମନ୍ତେ ଗୁରୁତ୍ୱାରୋପ କରିଥିଲେ । ଓଡ଼ିଶା ସରକାରଙ୍କର ବିଭିନ୍ନ ବିଭାଗରେ ଚାକିରି କରିବା ନିମନ୍ତେ ମହିଳା ପ୍ରାର୍ଥୀମାନଙ୍କର ବୟସସୀମା ପାଞ୍ଚବର୍ଷ ପର୍ଯ୍ୟନ୍ତ ବୃଦ୍ଧି କରିବା ପାଇଁ ବିଜୁବାବୁଙ୍କ ସରକାର ନିଷ୍ପତ୍ତିଗ୍ରହଣ କରିଥିଲେ ।

୧୯୯୪ ମସିହାରେ ବିଜୁବାବୁ ସବାଇଘାସ ବିକାଶ ନିଗମ ନାମକ ଏକ ସଂସ୍ଥା ସ୍ଥାପନ କରିଥିଲେ । ସବାଇଘାସରୁ ସାଧାରଣତଃ ହରିଜନ ଓ ଆଦିବାସୀ ସଂପ୍ରଦାୟର ମହିଳାମାନେ ବିଭିନ୍ନ ଗୃହୋପକରଣ ପଦାର୍ଥମାନ ପ୍ରସ୍ତୁତ କରନ୍ତି । ସେମାନେ ଏଥିରୁ ମୁଖ୍ୟତଃ ଦଉଡ଼ି ପ୍ରସ୍ତୁତ କରନ୍ତି । ଗରିବ ମହିଳାମାନଙ୍କ ଦ୍ୱାରା ସବାଇଘାସରୁ ପ୍ରସ୍ତୁତ ପଦାର୍ଥମାନ ମଧ୍ୟସ୍ଥି ଓ ଅସାଧୁ ବ୍ୟବସାୟୀମାନେ ଶୋଷଣ କରୁଥିଲେ । ଏହାର ନିରାକରଣ ନିମନ୍ତେ ବିଜୁବାବୁ ସବାଇଘାସ ବିକାଶନିଗମ ପ୍ରତିଷ୍ଠା କରିଥିଲେ। ଏହି ନିଗମ ମାଧ୍ୟମରେ ଗରିବ ମହିଳାମାନଙ୍କୁ ଉନ୍ନତ କିସମର ସବାଇଘାସ ବିହନମାନ ଯୋଗାଇ ଦିଆଯାଉଥିଲା ଏବଂ ସେମାନଙ୍କୁ ସମସ୍ତ ବ୍ୟବସାୟୀଙ୍କର ସହଯୋଗ ମଧ୍ୟ ପ୍ରଦାନ କରାଯାଉଥିଲା । ଏହି ନିଗମ ମଧ୍ୟ ମହିଳାମାନଙ୍କର ଦକ୍ଷତା ବୃଦ୍ଧି ପାଇଁ ବୈଷୟିକ ତାଲିମର ବ୍ୟବସ୍ଥା କରିଥିଲେ । ସେମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥର ବିକ୍ରୟ ଦାୟିତ୍ୱ ମଧ୍ୟ ଗ୍ରହଣ କରାଯାଇଥିଲା। ଗରିବ ଆଦିବାସୀ-ହରିଜନ ମହିଳାମାନଙ୍କ ସ୍ୱାର୍ଥପ୍ରତି ବିଜୁବାବୁଙ୍କର ଥିବା ଆନ୍ତରିକତାର ଏହା ପ୍ରକୃତ ଉଦାହରଣ । ମହିଳାମାନଙ୍କ ପାଇଁ ବିଭିନ୍ନ ସରକାରୀ ଓ ସରକାରଙ୍କ କର୍ତ୍ତୃତ୍ୱାଧୀନ ନିଗମମାନଙ୍କରେ ଶତକଡ଼ା ୩୦ ଭାଗ ଚାକିରି ସଂରକ୍ଷଣ କରିବାର ଏକ ଐତିହାସିକ ପଦକ୍ଷେପ ବିଜୁବାବୁ ଗ୍ରହଣ କରିଥିଲେ । ଏପର୍ଯ୍ୟନ୍ତ ଅନ୍ୟ କୌଣସି ରାଜ୍ୟ ଏହାକୁ କାର୍ଯ୍ୟକାରୀ କରିନାହାନ୍ତି । ଅସହାୟ ବିଧବା ପେନ୍‌ସନ୍‌ଧାରୀମାନଙ୍କ ବୟସସୀମା ବିଜୁବାବୁ ଉଚ୍ଛେଦ କରିଥିଲେ।

## ମହିଳା ବିକାଶନିଗମ

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଓଡ଼ିଶା ସରକାର ମହିଳାମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ୧୯୯୧ ମସିହାରେ ମହିଳା ବିକାଶନିଗମ ସ୍ଥାପନ କରିଥିଲେ । ଏହା ଏକ ମିଳିତ ସଂଗଠନ । ଭାରତ ସରକାର, ଓଡ଼ିଶା ସରକାର ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ମିଳିତ ଉଦ୍ୟମରେ ଗଠିତ ମହିଳା ବିକାଶ ନିଗମ ଓଡ଼ିଆନାରୀମାନଙ୍କର ସର୍ବବିଧ ମଙ୍ଗଳ ସାଧନ ନିମନ୍ତେ ନିରନ୍ତର ଉଦ୍ୟମ ଅବ୍ୟାହତ ରଖିଅଛି । ମହିଳା ବିକାଶନିଗମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବ୍ୟାପକ । ପ୍ରଥମତଃ ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ବିକାଶ ଯୋଜନାକୁ ଜିଲ୍ଲା, ବ୍ଳକ୍, ଗ୍ରାମପଞ୍ଚାୟତ ଓ ଗ୍ରାମସ୍ତରରୁ ଆରମ୍ଭ କରିବା ଏହିନିଗମର ଲକ୍ଷ୍ୟ ଅଟେ । ଦ୍ୱିତୀୟତଃ ମହିଳାମାନଙ୍କର ସାମାଜିକ ବିକାଶ ଓ ଅର୍ଥନୈତିକ ଅଭିବୃଦ୍ଧି ଦିଗରେ ମହିଳା ବିକାଶନିଗମ କାର୍ଯ୍ୟ କରିଥାଏ । ମହିଳା ଉଦ୍ୟୋଗୀମାନଙ୍କୁ ପ୍ରଶିକ୍ଷଣ ଦେବା ମହିଳା ବିକାଶନିଗମର ଅନ୍ୟତମ ଲକ୍ଷ୍ୟ । ମହିଳାମାନଙ୍କ ଦ୍ୱାରା ପରିଚାଳିତ ଉଦ୍ୟୋଗମାନଙ୍କ ପାଇଁ ମହିଳା ବିକାଶ ନିଗମ ବିଭିନ୍ନ ବ୍ୟାଙ୍କ ଓ ଅର୍ଥ ଲଗାଣକାରୀ ସଂସ୍ଥାଠାରୁ ଋଣ ଆଣି ମହିଳାମାନଙ୍କୁ ସହାୟତା ଯୋଗାଇ ଦେଇଥାଏ । ମହିଳା ବିକାଶନିଗମ ଦକ୍ଷତାର ସହିତ ତା'ର କାର୍ଯ୍ୟ ସମାପନ କରି ବିଜୁବାବୁଙ୍କ ସ୍ୱପ୍ନକୁ ସାକାର କରିବାରେ ଅଙ୍ଗୀକାରବଦ୍ଧ। ମହିଳାମାନଙ୍କର ଆର୍ଥିକ ଅଭିବୃଦ୍ଧି ନିମନ୍ତେ ମହିଳା ବିକାଶ ନିଗମ ଅନେକ ଆୟକାରୀ କାର୍ଯ୍ୟପନ୍ଥା ଗ୍ରହଣ କରିଛି । ସାମାଜିକ ସଶକ୍ତିକରଣ, ମହିଳାମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥର ବିକ୍ରୟରେ ସହଯୋଗ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ ଏବଂ ମହିଳା ଉଦ୍ୟୋଗୀମାନଙ୍କର ସମ୍ମିଳନୀ ଇତ୍ୟାଦି ଆୟୋଜନ କରିବାରେ ମହିଳା ବିକାଶନିଗମ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ଆର୍ଥିକ ସହାୟତା ପ୍ରଦାନ କରିବା ଏବଂ ଅନ୍ୟାନ୍ୟ ଅର୍ଥ ଲଗାଣକାରୀ ସଂସ୍ଥାଠାରୁ ସେମାନଙ୍କୁ ସହଜରେ ଋଣ ମଂଜୁର କରାଇବାରେ ମହିଳା ବିକାଶ ନିଗମ ତା'ର ଗୁରୁଦାୟିତ୍ୱ ନିଷ୍ଠାର ସହିତ ସଂପାଦିତ କରିଥାଏ । ବିଭିନ୍ନ ପ୍ରତିଯୋଗିତାମୂଳକ

ପରୀକ୍ଷାରେ ମହିଳା ପ୍ରାର୍ଥୀମାନଙ୍କର ଦକ୍ଷତା ବୃଦ୍ଧିନିମନ୍ତେ ମହିଳା ଶିକ୍ଷା କେନ୍ଦ୍ରମାନ ଖୋଲାଯାଇ ସେମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ଦେବାରେ ବ୍ୟବସ୍ଥା ମହିଳା ବିକାଶନିଗମ କାର୍ଯ୍ୟକାରୀ କରିଅଛି ।

## ଶାଶୁ ହାତକଡ଼ି ନଣନ୍ଦ ବେଡ଼ି

ଯୌତୁକ ପ୍ରଥା ଏକ ସାମାଜିକ କଳଙ୍କ । ଯୌତୁକଜନିତ ବଧୂନିର୍ଯ୍ୟାତନା ଏକ ଅମାନବିକ ଓ ଅବିବେକିତା କାର୍ଯ୍ୟ । ଧନ କାଙ୍ଗାଳ, ଅର୍ଥଲୋଭୀମାନେ ଅନେକ ସମୟରେ ନବବଧୂର ପରିବାରଠାରୁ ନିଜ ଇଚ୍ଛା ମୁତାବକ ଯୌତୁକ ନପାଇଲେ ପରିଶେଷରେ ନବବଧୂକୁ ନିର୍ଯ୍ୟାତନା ଦେବାକୁ ଏପରିକି ହତ୍ୟା କରିବାକୁ ପଛଘୁଞ୍ଚା ଦିଅନ୍ତିନାହିଁ । ୧୯୯୦ ମସିହା ପୂର୍ବରୁ ଯୌତୁକଜନିତ ହତ୍ୟା ଓ ନିର୍ଯ୍ୟାତନା ଥିଲା ସର୍ବାଧିକ । ପ୍ରତିଦିନ ଏଭଳି ଜଘନ୍ୟ ଘଟଣା ସବୁ ସମ୍ବାଦପତ୍ରର ପୃଷ୍ଠାମଣ୍ଡନ କରୁଥିଲା । ଏପରି ଅମାନୁଷିକ ଓ ନିନ୍ଦନୀୟ ଘଟଣା ବିଜୁବାବୁଙ୍କୁ ଗଭୀର ଭାବରେ ମର୍ମାହତ ଓ ବ୍ୟଥିତ କରିଥିଲା । ଏହା ଅପ୍ରିୟ ସତ୍ୟ ଯୌତୁକଜନିତ ବଧୂହତ୍ୟା ଓ ନିର୍ଯ୍ୟାତନା ପଛରେ ଘରର ସ୍ତ୍ରୀଲୋକମାନଙ୍କର ମୁଖ୍ୟ ଭୂମିକା ଥାଏ । ସାଧାରଣତଃ ଶାଶୁ ଓ ନଣନ୍ଦ ଏହି ଘଟଣାମାନଙ୍କରେ ମୁଖ୍ୟ ଖଳନାୟିକା ସାଜିଥାନ୍ତି । ବିଜୁବାବୁ ହୃଦୟଙ୍ଗମ କରିଥିଲେ ଯେ ଘରର ମହିଳାମାନଙ୍କର ବିନା ପ୍ରରୋଚନା ଓ ସମର୍ଥନରେ ଏଭଳି ହୃଦୟହୀନ କାର୍ଯ୍ୟ କେବେ ସମ୍ଭବ ନୁହେଁ । ଶାଶୁ ଓ ନଣନ୍ଦର ମିଳିତ ଆକ୍ରମଣର ଶିକାର ହୋଇଥାଏ ନବବଧୂ । ବଧୂହତ୍ୟା ଓ ନିର୍ଯ୍ୟାତନାର ନିବାରଣ ନିମନ୍ତେ ବିଜୁବାବୁ ଏକ ପ୍ରଶଂସନୀୟ ଓ ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଥିଲେ । ଯେଉଁ ପରିବାରରେ ଏଭଳି ଘଟଣାମାନ ଘଟିବ ସେହି ପରିବାରର ଶାଶୁ ଓ ନଣନ୍ଦଙ୍କୁ ପ୍ରଥମେ ଗିରଫ କରିବାକୁ ବିଜୁବାବୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ । ଏପରି ଖଳ ପ୍ରକୃତିର ଶାଶୁ ଓ ନଣନ୍ଦଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ବିଜୁବାବୁ ଗୋଟିଏ ସ୍ଲୋଗାନ ପ୍ରଣୟନ କରିଥିଲେ – 'ଶାଶୁ ହାତ କଡ଼ି ନଣନ୍ଦ ବେଡ଼ି ।' ବିଜୁବାବୁଙ୍କର ଏହି ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରି ପୋଲିସବାହିନୀ ବଧୂହତ୍ୟାକାରୀ ଶାଶୁ ଓ ନଣନ୍ଦମାନଙ୍କୁ ହାତକଡ଼ି ପକାଇ ରାଜରାସ୍ତାରେ ଚଲାଇଚଲାଇ ହାଜତକୁ ନେଉଥିଲେ । ବିଜୁବାବୁ ଥିଲେ ବାସ୍ତବବାଦୀ । ତାଙ୍କର ଏହି ଦୃଢ଼ ପଦକ୍ଷେପ ରାଜ୍ୟବ୍ୟାପି ବିପୁଳ ସମର୍ଥନ ଓ ପ୍ରଶଂସା ମିଳିଥିଲା । ବିଜୁବାବୁଙ୍କର ଏହି ପଦକ୍ଷେପର ଫଳାଫଳ ଥିଲା ସୁଦୂରପ୍ରସାରୀ ଏବଂ ଏହାଫଳରେ ଯୌତୁକଜନିତ ବଧୂହତ୍ୟା ଓ ନିର୍ଯ୍ୟାତନା ଅନେକାଂଶରେ କମି ଯାଇଥିଲା । ଯୌତୁକ ବିରୋଧରେ ସଂଗ୍ରାମ କରିବାକୁ ବିଜୁବାବୁ ରାଜ୍ୟବାସୀଙ୍କୁ ଆହ୍ୱାନ ଜଣାଇଥିଲେ । ସେ ମଧ୍ୟ ଏକ ସରକାରୀ ଆଦେଶନାମା ଜାରି କରିଥିଲେ ଯଦି କୌଣସି ସରକାରୀ କର୍ମଚାରୀ ଯୌତୁକଜନିତ ଅପରାଧରେ ଦୋଷୀ ସାବ୍ୟସ୍ତ ହୁଅନ୍ତି ତାଙ୍କୁ ଚାକିରିରୁ ନିଲମ୍ବିତ କରାଯିବ । ଯୌତୁକ ପ୍ରଥା ବିରୋଧରେ ଜନସଚେତନତା ସୃଷ୍ଟି କରିବା ପାଇଁ ବିଜୁବାବୁ ଅନେକ ପଦକ୍ଷେପ ଗ୍ରହଣ କରିଥିଲେ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ଯୌତୁକ ପ୍ରଥା ବିରୁଦ୍ଧରେ ପଥପ୍ରାନ୍ତ ନାଟକ ଓ ଜାତୀୟ ଆଲୋଚନାଚକ୍ରମାନ ଆୟୋଜନ କରିବା ପାଇଁ ଆର୍ଥିକ ସହାୟତାର ବ୍ୟବସ୍ଥା ମଧ୍ୟ କରିଥିଲେ । ଯୌତୁକ ପ୍ରଥାର ସମୂଳେ ବିନାଶ ନିମନ୍ତେ ବିଜୁବାବୁଙ୍କର ଆନ୍ତରିକ ଉଦ୍ୟମ ପାଇଁ ନାରୀ ସମାଜ ସର୍ବଦା ଶ୍ରଦ୍ଧାର ସହିତ ତାଙ୍କୁ ସ୍ମରଣ କରୁଥିବ । ବିବାହ ଖର୍ଚ୍ଚ ୨୫ ହଜାର ଟଙ୍କା ମଧ୍ୟରେ ସୀମିତ ରଖିବାକୁ ବିଜୁବାବୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ ।

## ଗାଁକୁ କାମ ମାଆକୁ ସମ୍ମାନ

ଓଡ଼ିଶାର ପ୍ରତ୍ୟେକ ଗ୍ରାମର ସର୍ବାଙ୍ଗୀନ ଉନ୍ନତି ଥିଲା ବିଜୁବାବୁଙ୍କର ସ୍ୱପ୍ନ । ଗ୍ରାମାଞ୍ଚଳର ଜନସାଧାରଣଙ୍କ ଅର୍ଥନୈତିକ ବିକାଶ ଉପରେ ବିଜୁବାବୁବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଗ୍ରାମର ଦରିଦ୍ର ଜନସାଧାରଣଙ୍କୁ କାମ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଅନେକ ସରକାରୀ ଯୋଜନାମାନ ପ୍ରଣୟନ କରାଯାଇଥିଲା । ଗ୍ରାମାଞ୍ଚଳରେ କୃଷି, ମତ୍ସ୍ୟଚାଷ, ପଶୁପାଳନ ଓ ଅନ୍ୟାନ୍ୟ କୁଟୀରଶିଳ୍ପ ମାଧ୍ୟମରେ ଜନସାଧାରଣଙ୍କ ଅର୍ଥନୈତିକ ଅଭିବୃଦ୍ଧି ନିମନ୍ତେ ବିଜୁବାବୁଙ୍କର ଉଦ୍ୟମ ପ୍ରଶଂସନୀୟ । ଗାଁର ଉନ୍ନତି ସହିତ ମାଆମାନଙ୍କୁ ସମ୍ମାନ ଦେବା ଥିଲା ବିଜୁବାବୁଙ୍କର ଇଚ୍ଛା । ମହିଳାମାନଙ୍କ ହାତରେ ୫୦ ଭାଗ କ୍ଷମତା ଅର୍ପଣ କରିବା ନିମନ୍ତେ ବିଜୁବାବୁ ଦୃଢ଼ଯୁକ୍ତି ଉପସ୍ଥାପିତ କରିଥିଲେ । ସେ ପ୍ରତ୍ୟେକ ମହିଳାଙ୍କୁ ମା'ର ସମ୍ମାନ ଦେଇ ଆସିଥିଲେ । ସେ ଅନୁଭବ କରିଥିଲେ ମହିଳାମାନଙ୍କର ଉନ୍ନତି ନ ହେବା ପର୍ଯ୍ୟନ୍ତ ଜାତି ତଥା ଦେଶ କେବେ ସମୃଦ୍ଧ ପଥରେ ଅଗ୍ରସର ହୋଇପାରିବନାହିଁ । ତେଣୁ ବିଜୁବାବୁ ମହିଳାମାନଙ୍କର, ସାମାଜିକ, ଆର୍ଥିକ ଓ ରାଜନୈତିକ ବିକାଶ ପ୍ରତି ବିଶେଷ ଦୃଷ୍ଟି ଦେବାକୁ ପରାମର୍ଶ ଦେଇଥିଲେ । ତେଣୁ ଏଥିପାଇଁ ତାଙ୍କର ଏକ ସ୍ଲୋଗାନ ଥିଲା –

'ଗାଁକୁ କାମ ମାଆକୁ ସମ୍ମାନ' । ବିଜୁବାବୁ ମାଆମାନଙ୍କ ମାଧ୍ୟମରେ ଏକ ସୁସ୍ଥ, ସୁନ୍ଦର, ସ୍ୱାଭିମାନୀ, ସାହସୀ ଓ ବୀରଜାତି ଗଢ଼ିବାରେ ସ୍ୱପ୍ନ ଦେଖିଥିଲେ । ସମ୍ପତ୍ତିରେ ମହିଳାମାନଙ୍କ ଅଧିକାର ରହୁ ନ ଥିବାରୁ ଏବଂ ଘରେ ସେମାନଙ୍କ ଅଧିକାରକୁ ସ୍ୱୀକୃତି ମିଳୁନଥିବାରୁ ବିଜୁବାବୁ ସରକାରୀ ଜମି ଲିଜ୍ ଦିଆଯିବା ସମୟରେ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କ ନାମରେ ପଟ୍ଟା ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମହିଳାମାନଙ୍କ ସଶକ୍ତିକରଣ ନିମନ୍ତେ ବିଜୁବାବୁ ଅନେକ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲେ । ବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ଛାତ୍ର-ଛାତ୍ରୀଙ୍କର ନାମ ଲେଖା ସମୟରେ ରେଜିଷ୍ଟାରରେ ବାପାଙ୍କ ନାମ ସହିତ ମା'ଙ୍କ ନାମ ଲେଖାଯିବାକୁ ବିଜୁବାବୁ ବାଧ୍ୟତାମୂଳକ କରିଥିଲେ ।

ହାଇସ୍କୁଲ ବୋର୍ଡ଼ ସାର୍ଟିଫିକେଟରେ ମଧ୍ୟ ପିତା ଓ ମାତାଙ୍କ ନାମ ଲେଖାଯିବାକୁ ବିଜୁବାବୁ ନିର୍ଦ୍ଦେଶ ଦେଇଥିଲେ । କେତେକ ଉଚ୍ଚପଦସ୍ଥ ପୋଲିସ କର୍ମଚାରୀଙ୍କ ବିରୋଧ ସତ୍ତ୍ୱେ ବିଜୁବାବୁ ମହିଳାମାନଙ୍କୁ ପୋଲିସ ବିଭାଗରେ ନିଯୁକ୍ତି ଦେବାକୁ ନିର୍ଦ୍ଦେଶ ଦେଇଥିଲେ । ମହିଳାମାନେ ହୋମଗାର୍ଡ଼, ଏସ୍.ଆଇ., ଏ.ଏସ୍.ଆଇ. ପ୍ରଭୃତି ପଦ ପଦବୀରେ ନିଯୁକ୍ତି ପାଇ ନିଜ ଦକ୍ଷତା ଓ ପ୍ରତିଭାର ପରିଚୟ ଦେଇ ବିଜୁବାବୁଙ୍କ ସ୍ୱପ୍ନକୁ ସାକାର କଲେ। ମହିଳାମାନଙ୍କ ବିରୋଧରେ ହେଉଥିବା ବିଭିନ୍ନ ଅପରାଧକୁ ଦମନ କରିବା ନିମନ୍ତେ ବିଜୁବାବୁ ମହିଳା ଥାନା ପ୍ରତିଷ୍ଠା କରିଥିଲେ । ବିଜୁବାବୁଙ୍କ ଉଦ୍ୟମରେ ମହିଳାମାନଙ୍କ ଉଦ୍ଦେଶ୍ୟରେ ମହିଳା ବ୍ୟାଙ୍କ ପ୍ରତିଷ୍ଠା କରାଯାଇଥିଲା । ମହିଳାମାନଙ୍କ ପ୍ରତି ବିଜୁବାବୁଙ୍କର ଯେଉଁ ସମ୍ମାନବୋଧ ଥିଲା ତାହା ହିଁ ତା'ର ଉପଯୁକ୍ତ ପ୍ରମାଣ । ମହିଳାମାନେ ନିଜର ସୁରକ୍ଷା ପାଇଁ ଜୁଡ଼ୋ ଓ କରାଟେ ଶିକ୍ଷାଲାଭ ନିମନ୍ତେ ସେ ପରାମର୍ଶ ଦେଇଥିଲେ ।

ଆମ ରାଜ୍ୟର ପ୍ରାଚୀନ ନାମ କଳିଙ୍ଗ, ଏହି ଶବ୍ଦ ବିଜୁବାବୁଙ୍କର ଅତି ପ୍ରିୟ । ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟ ପରମ୍ପରାର ସ୍ମୃତିଚାରଣ ଉଦ୍ଦେଶ୍ୟରେ ପାରାଦୀପ ବନ୍ଦରରୁ ବାଲି ଦ୍ୱୀପ ପର୍ଯ୍ୟନ୍ତ ଏକ ଐତିହାସିକ ଓ ରୋମାଞ୍ଚକର ନୌଯାତ୍ରାର ଆୟୋଜନ ବିଜୁବାବୁ କରିଥିଲେ । ଐତିହାସିକ ନୌଯାତ୍ରାରେ ଏକ ମାତ୍ର ଓଡ଼ିଆ ଝିଅ ନିବେଦିତା ଆଚାର୍ଯ୍ୟ ଅଂଶ ଗ୍ରହଣ କରିଥିଲେ । ବିଜୁବାବୁଙ୍କ ଉତ୍ସାହ ଓ ପ୍ରେରଣାରେ ଅନୁପ୍ରାଣିତ ହୋଇ ନିବେଦିତା ଆଚାର୍ଯ୍ୟ ଓଡ଼ିଆ ଜାତି ସ୍ୱାଭିମାନର ପ୍ରତୀକ ନୌଯାତ୍ରାରେ ଯୋଗଦାନ କରିଥିଲେ ।

## ଆଦିବାସୀ ମହିଳା ପରାମର୍ଶଦାତା

ବିଜୁବାବୁ ଭାରତର ପ୍ରଥମ ମୁଖ୍ୟମନ୍ତ୍ରୀ ଯିଏକି ପାଞ୍ଚଜଣ ଆଦିବାସୀ ମହିଳାଙ୍କୁ ନିଜର ଅଣ ସରକାରୀ ପରାମର୍ଶଦାତା ରୂପେ ନିଯୁକ୍ତି ଦେଇଥିଲେ । ଏମାନଙ୍କ ମଧ୍ୟରେ ସୁମନୀ ଝୋଡ଼ିଆଣୀ ଓ ଅନ୍ଧାରୀ ନାମକ ଦୁଇଜଣ ଆଦିବାସୀ ମହିଳା ଥିଲେ ଅନ୍ୟତମ । ଏକ ସତର ଜଣିଆ ଆଦିବାସୀ ମହିଳା ପ୍ରତିନିଧି ସୁମନୀ ଝୋଡ଼ିଆଣୀଙ୍କ ନେତୃତ୍ୱରେ ଆସି ବିଜୁବାବୁଙ୍କୁ ସଚିବାଳୟସ୍ଥ ତାଙ୍କ କାର୍ଯ୍ୟାଳୟରେ ସାକ୍ଷାତ କରିଥିଲେ । ଆଦିବାସୀ ମହିଳାମାନଙ୍କର ବିଭିନ୍ନ ସମସ୍ୟା ଉପରେ ବିସ୍ତୃତ ଆଲୋଚନା କରାଯାଇଥିଲା । ପରିବାର ଓ ସମାଜର ବିକାଶ ପଥରେ ମୁଖ୍ୟ ପ୍ରତିବନ୍ଧକ ମଦ । ବିଜୁବାବୁ ସେମାନଙ୍କୁ ମଦ ଭାଟି ଭାଙ୍ଗି ଦେବାକୁ ପରାମର୍ଶ ଦେଇଥିଲେ ଓ ପୁରୁଷମାନଙ୍କୁ ମଦ ନ ପିଇବାକୁ ଉପଦେଶ ଦେଇଥିଲେ । ମଦ ଓ ମଦ୍ୟପମାନଙ୍କ ବିରୋଧରେ ଅଭିଯାନ ଆରମ୍ଭ କରିବା ନିମନ୍ତେ ସେହି ଆଦିବାସୀ ମହିଳାମାନେ ବିଜୁବାବୁଙ୍କ ଆହ୍ୱାନକୁ ସମ୍ମାନ ଜଣାଇଥିଲେ । ସେମାନଙ୍କର ସୁରକ୍ଷା ଓ କାର୍ଯ୍ୟ କରିବାର କ୍ଷମତା ପାଇଁ ବିଜୁବାବୁ ସେମାନଙ୍କୁ ପୋଲିସ କ୍ଷମତା ପ୍ରଦାନ କରିଥିଲେ। ପ୍ରତ୍ୟେକଙ୍କୁ ସରକାରଙ୍କ ପକ୍ଷରୁ ପରିଚୟ ପତ୍ର ପ୍ରଦାନ କରାଯାଇଥିଲା । ୨୦୦୧ ମସିହା ଭାରତର ମହିଳା ସଶକ୍ତିକରଣ ବର୍ଷରେ ଏହି ଆଦିବାସୀ ମହିଳାମାନଙ୍କ ମଧ୍ୟରୁ ସୁମନୀ ଝୋଡ଼ିଆଣୀଙ୍କୁ ଜାତୀୟ 'ଶ୍ରୀଶକ୍ତି' ସମ୍ମାନ ପ୍ରଦାନ ନିମନ୍ତେ ଓଡ଼ିଶା ସରକାରଙ୍କ ପକ୍ଷରୁ ତାଙ୍କ ନାମ ସୁପାରିଶ କରାଯାଇଥିଲା।

## ମହିଳା ସମୃଦ୍ଧି ଯୋଜନା

ମହିଳାମାନଙ୍କର ଉଦ୍ଦେଶ୍ୟରେ ୧୯୯୩ ମସିହାରେ ମହିଳା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ ହେଲା । ଗ୍ରାମାଞ୍ଚଳ ମହିଳାମାନଙ୍କୁ ଆତ୍ମନିର୍ଭରଶୀଳ ଓ ସେମାନଙ୍କର ଅର୍ଥନୈତିକ ଅଭିବୃଦ୍ଧି ପାଇଁ ମହିଳା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ କରାଯାଇଥିଲା । ଏହି ଯୋଜନାରେ ଯଦି କୌଣସି ମହିଳା ବାର୍ଷିକ ୩୦୦ ଟଙ୍କା ଜମା ରଖିବେ, ତେବେ ସରକାର ଏଥିରେ ଶତକଡ଼ା ୨୧ ଭାଗ ପ୍ରଦାନ କରିବାର ବ୍ୟବସ୍ଥା ରହିଲା ।

## ରାଜନୈତିକ ସଶକ୍ତିକରଣ

ମହିଳାମାନଙ୍କୁ ରାଜନୈତିକ ସଶକ୍ତିକରଣ ଦିଗରେ ବିଜୁବାବୁଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏ ଦିଗରେ ତାଙ୍କର ବିହିତ

ପଦକ୍ଷେପ ସମଗ୍ର ଭାରତ ବର୍ଷରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିଜୁବାବୁ ଭାରତ ବର୍ଷର ମହିଳାମାନଙ୍କୁ ପ୍ରତ୍ୟକ୍ଷ ରାଜନୀତିରେ ଆସିବାକୁ ଉତ୍ସାହିତ ଓ ପ୍ରେରଣା ପ୍ରଦାନ କରିଥିଲେ । ତାଙ୍କର ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରିତ୍ୱ ସମୟରେ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ସେ ୩୩ ଭାଗ ସ୍ଥାନ ସଂରକ୍ଷଣ କରିଥିଲେ । ବିଜୁବାବୁଙ୍କର ଏହି ଐତିହାସିକ ପଦକ୍ଷେପ ମହିଳାମାନଙ୍କ ମଧ୍ୟରେ ରାଜନୈତିକ ଜାଗରଣ ଓ ସଚେତନତା ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା ।

ମହିଳାମାନଙ୍କ ପ୍ରତି ବିଜୁବାବୁଙ୍କର ଦୃଢ଼ ଆସ୍ଥା ଓ ବିଶ୍ୱାସ ଥିଲା । ବିଜୁବାବୁ ହୃଦୟଙ୍ଗମ କରିଥିଲେ ମା' ଓ ଭଉଣୀମାନେ ନିଜ ପରିବାରକୁ ଉପଯୁକ୍ତ ମାର୍ଗରେ ପରିଚାଳନା କରିପାରୁଥିବାରୁ ଜିଲ୍ଲା ପରିଷଦ, ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତକୁ ନେତୃତ୍ୱ ଦେବାକୁ ସେମାନଙ୍କର କୌଣସି ଅସୁବିଧା ହେବନାହିଁ । ପଞ୍ଚାୟତ ବ୍ୟବସ୍ଥାରେ ମହିଳାମାନଙ୍କୁ ଶତକଡ଼ା ୩୩ ଭାଗ ଆସନ ସଂରକ୍ଷଣ କରି ଏକ କୀର୍ତ୍ତି ସ୍ତମ୍ଭ ସ୍ଥାପନ କଲେ, ଏହା ସ୍ୱାଧୀନ ଭାରତର ପ୍ରଥମ ଐତିହାସିକ ଘଟଣା । ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ସଂରକ୍ଷିତ ଶତକଡ଼ା ୩୩ ଭାଗ ଆସନରେ ଆଦିବାସୀ ଓ ହରିଜନ ମହିଳା ପ୍ରାର୍ଥୀମାନେ ମଧ୍ୟ ଅନ୍ତର୍ଭୁକ୍ତ ଅଟନ୍ତି । ପଞ୍ଚାୟତର ଏକ ତୃତୀୟାଂଶ ପଦବୀ ମହିଳାମାନଙ୍କ ପାଇଁ ସଂରକ୍ଷିତ ରହିଲା । ବିଜୁବାବୁଙ୍କର ନିଷ୍ଠାପର ଉଦ୍ୟମ ପାଇଁ କିଛି ବର୍ଷ ପରେ ଭାରତ ସରକାର ପଞ୍ଚାୟତିରାଜ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ଆସନ ସଂରକ୍ଷଣର ବ୍ୟବସ୍ଥା କରିଥିଲେ । ଏହା ଥିଲା ବିଜୁବାବୁଙ୍କର ବିଜୟ । ବିଜୁବାବୁଙ୍କ ଉଦ୍ୟମ ଦ୍ୱାରା ଗ୍ରାମାଞ୍ଚଳ ତଥା ସହରାଞ୍ଚଳ ସ୍ୱାୟତ୍ତ ଶାସନରେ ମହିଳା ଲୋକ ପ୍ରତିନିଧି ଆଜି ଗ୍ରାମାଞ୍ଚଳର ବିକାଶ ଦିଗରେ ନିଜକୁ ସମର୍ପିତ କରିଛନ୍ତି । ଏହି ମହିଳା ଲୋକ ପ୍ରତିନିଧିମାନଙ୍କ ଦକ୍ଷତା, କାର୍ଯ୍ୟଶୈଳୀ ବୃଦ୍ଧି ନିମନ୍ତେ ରାଜ୍ୟ ଗ୍ରାମାଞ୍ଚଳ ବିକାଶ ସଂସ୍ଥା, ମହିଳା ବିକାଶ ନିଗମ ଓ ଅନ୍ୟାନ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ପ୍ରଶିକ୍ଷଣ ଦେବାର ବ୍ୟବସ୍ଥା ବିଜୁବାବୁ କରିଥିଲେ । ନିର୍ବାଚିତ ମହିଳା ଲୋକ ପ୍ରତିନିଧିମାନଙ୍କର ରାଜନୈତିକ ଓ ପ୍ରଶାସନିକ ଜ୍ଞାନ ବୃଦ୍ଧି ଲକ୍ଷ୍ୟରେ ଏଭଳି ବ୍ୟବସ୍ଥା କରିବା ଲାଗି ବିଜୁବାବୁ ନିର୍ଦ୍ଦେଶ ଦେଇଥିଲେ ।

ବିଜୁବାବୁଙ୍କର ନିଷ୍ଠାପର ଉଦ୍ୟମ ପାଇଁ କିଛି ବର୍ଷ ପରେ ଭାରତ ସରକାର ପଞ୍ଚାୟତିରାଜ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ଆସନ ସଂରକ୍ଷଣର ବ୍ୟବସ୍ଥା କରିଥିଲେ ।

## ରାଜ୍ୟ ମହିଳା ଆୟୋଗ

ନାରୀମାନଙ୍କର ସ୍ୱାର୍ଥ, ସ୍ୱାଭିମାନ ଓ ଅଧିକାରର ସୁରକ୍ଷା ନିମନ୍ତେ ବିଜୁବାବୁ ଓଡ଼ିଶାରେ ମହିଳା ଆୟୋଗ ପ୍ରତିଷ୍ଠା କଲେ । ନାରୀମାନଙ୍କ ପ୍ରତି ହେଉଥିବା ଯୌତୁକଜନିତ ନିର୍ଯ୍ୟାତନା ଓ ହତ୍ୟା ଏବଂ ପାରିବାରିକ ହିଂସା ପ୍ରଭୃତି ଘଟଣାର ଅଭିଯୋଗ ରଖିବା ମହିଳା ଆୟୋଗର ମୁଖ୍ୟ ଉଦ୍ଦେଶ୍ୟ । ମାନବିକ ଅଧିକାର ସୁରକ୍ଷା ମଞ୍ଚ ସହିତ ଏହି ଆୟୋଗ ସଂପର୍କ ରଖି ମହିଳାମାନଙ୍କ ବିରୋଧରେ ହେଉଥିବା ନିର୍ଯ୍ୟାତନାର ପ୍ରତିରୋଧ କରିବାରେ କାର୍ଯ୍ୟ କରିଥାଏ । ଏହି ଆୟୋଗର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ଯୌତୁକ ସମସ୍ୟା ବିରୋଧରେ ସଂଗ୍ରାମ କରିବା ଏବଂ ଅସହାୟ ବିଧବା ଓ ନିର୍ଯ୍ୟାତିତ ମହିଳାମାନଙ୍କୁ ସହାୟତା ଯୋଗାଇ ଦେବା । ଏହି ଆୟୋଗ ସରକାରଙ୍କ ସହିତ ଆଲୋଚନା କରି ନାରୀ ଜାତିର ସମସ୍ୟା ସମାଧାନରେ କାର୍ଯ୍ୟ କରିଥାଏ । ବିବାହ ପଞ୍ଜିକରଣକୁ ବାଧ୍ୟତାମୂଳକ ଭାବରେ ଲାଗୁ କରିବାକୁ ମହିଳା ଆୟୋଗ ଗୁରୁତ୍ୱ ଦିଏ । ନାରୀମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ଏବଂ ପ୍ରସବକାଳୀନ ସମସ୍ତ ସୁବିଧା ଯୋଗାଇ ଦେବାରେ ଏହି ଆୟୋଗ କାର୍ଯ୍ୟ କରିଥାଏ । ମହିଳାମାନଙ୍କ ଉନ୍ନତି ପାଇଁ ବିଜୁବାବୁ ଗ୍ରହଣ କରିଥିବା ବିଭିନ୍ନ ଯୋଜନାର ସୁଫଳ ବର୍ତ୍ତମାନ ସମାଜରେ ଉପଲବ୍ଧି ହୋଇପାରିଛି । ବର୍ତ୍ତମାନ ଗ୍ରାମାଞ୍ଚଳରେ ମହିଳାମାନେ ସଂଗଠିତ ଓ ସଂଘବଦ୍ଧ ହୋଇ ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ପରିବାର ଓ ସମାଜର ଅର୍ଥନୈତିକ ପ୍ରଗତିରେ ସହାୟକ ହୋଇପାରିଛନ୍ତି । ମାଆମାନେ ଏକ ସ୍ୱାଭିମାନୀ ଓଡ଼ିଆ ଜାତି ଗଢ଼ିବେ ଏହା ଥିଲା ବିଜୁବାବୁଙ୍କର ସ୍ୱପ୍ନ । ନାରୀ ସମାଜପ୍ରତି ବିଜୁବାବୁଙ୍କର ଅତୁଳନୀୟ ଅବଦାନ ପାଇଁ ସେ ସେମାନଙ୍କ ନିକଟରେ ଚିରସ୍ମରଣୀୟ ଓ ବନ୍ଦନୀୟ ।



ଅଧ୍ୟାପକ, ଇତିହାସ ବିଭାଗ,
ସନାତନ ହରିଚନ୍ଦନ ମହାବିଦ୍ୟାଳୟ,
ମଦନପୁର, ଖୋର୍ଦ୍ଧା- ୭୫୨୦୫୪

# ପଞ୍ଚାୟତିରାଜ : କଳ୍ପନା ଓ ବାସ୍ତବତା

ସ୍ୱପ୍ନେଶ୍ୱର ବାୟା

ସ୍ୱାଧୀନତା ସଂଗ୍ରାମ ସମୟରେ ମହାତ୍ମାଗାନ୍ଧୀ 'ଗ୍ରାମ ସ୍ୱରାଜ ଉପରେ ଗୁରୁତ୍ୱ ଦେଇଥିଲେ । ମହାତ୍ମାଗାନ୍ଧୀଙ୍କର ପରିକଳ୍ପିତ 'ଗ୍ରାମ ସ୍ୱରାଜ' ହେଉଛି ଏକ 'ଜନରାଜ୍ୟ' । ପ୍ରତ୍ୟେକ ଗ୍ରାମର ଅଧିବାସୀ ଆତ୍ମନିର୍ଭରଶୀଳ ହେବେ । ନିଜର ସମସ୍ୟା ଓ ଜୀବନ-ଜୀବିକା ସମ୍ବନ୍ଧରେ କ'ଣ କରାଯିବ, ସେ ସମ୍ବନ୍ଧରେ ଆଲୋଚନା କରିବେ, ନିଷ୍ପତ୍ତି ନେବେ ଓ ନିଷ୍ପତ୍ତି କାର୍ଯ୍ୟକାରୀ କରିବେ । ଆଲୋଚନା ଓ ନିଷ୍ପତ୍ତି କାର୍ଯ୍ୟକାରୀ କରିବାରେ ବାହ୍ୟ ହସ୍ତକ୍ଷେପ ରହିବ ନାହିଁ । ଗାନ୍ଧିଜୀ ୧୯୨୧ ମସିହାରୁ ୧୯୪୬ ମସିହା ମଧ୍ୟରେ ଅନେକଥର ଓଡ଼ିଶା ଆସି ଅସ୍ପୃଶ୍ୟତା ନିବାରଣ, ନିଶାନିବାରଣ, ଖଦୀ ଓ ଗ୍ରାମୋଦ୍ୟୋଗ ବିକାଶ ବାର୍ତ୍ତା ନେଇ ଗାଁକୁ ଗାଁ ପଦଯାତ୍ରା କରିଥିଲେ । ସେହି ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଉତ୍କଳମଣି ଗୋପବନ୍ଧୁ ଲେଖିଛନ୍ତି-

'ସତ୍ୟଶାନ୍ତି ପଥେ ଚାଲ ଅବିରତ
ଗ୍ରାମେ ଗ୍ରାମେ ସର୍ବେ କର ପଞ୍ଚାୟତ ।
ଚଳାଅ ଅରଟ ଛାଡ଼ି ମନୁ ଭୀତି
ତେଜ ଉଚ୍ଚନୀଚ ଘୃଣା ଭେଦନୀତି ।
ଧନଧାନ୍ୟେ ସୁଖୀ ହେବେ ପ୍ରଜାଗଣ

ନ ଦେଖ କି ଭାଇ ଏ ଶୁଭ ସୂଚନ । ('ଓଡ଼ିଶା ଓ ଗାନ୍ଧୀ'ପୁସ୍ତକରୁ ସଂଗୃହିତ)

ସ୍ୱାଧୀନତା ସଂଗ୍ରାମର ତୀବ୍ରତା ସଂଗେସଂଗେ ଦ୍ୱିତୀୟ ପୃଥିବୀ ମହାସମରର ଭୟାବହତା ଓ ପ୍ରଭାବ ଇଂରେଜ ସରକାରଙ୍କୁ ଭାରତ ଛାଡ଼ିବା ପାଇଁ ବାଧ୍ୟ କଲା । ଇଂରେଜ ସରକାର ଛାଡ଼ିଚାଲିଯିବା ପୂର୍ବରୁ ଦେଶରେ ସାମ୍ପ୍ରଦାୟିକତା ଭୀଷଣ ରୂପ ଧାରଣ କଲା । ୧୯୪୭ ମସିହାରେ ଦେଶ ସ୍ୱାଧୀନ ହେଲା, ୧୯୪୮ ମସିହାରେ ଗାନ୍ଧିଜୀ ଜଣେ ଉଗ୍ର ସାମ୍ପ୍ରଦାୟିକବାଦୀ ବ୍ୟକ୍ତିର ଗୁଳିରେ ପ୍ରାଣତ୍ୟାଗ କଲେ । ଗାନ୍ଧିଜୀଙ୍କର ମୃତ୍ୟୁ ପରେ ସ୍ୱାଧୀନ ଭାରତର ସମ୍ବିଧାନ 'ସମ୍ବିଧାନ ପ୍ରଣୟନ ସଭା' ଦ୍ୱାରା ଚୂଡ଼ାନ୍ତ କରାଗଲା ଓ ୧୯୫୦ ଜାନୁଆରୀ ୨୬ତାରିଖ ଦିନଠାରୁ ଭାରତ ସମ୍ବିଧାନ କାର୍ଯ୍ୟକାରୀ ହେଲା । ବହୁ ବିତର୍କ ପରେ ଗ୍ରାମପଞ୍ଚାୟତ ବ୍ୟବସ୍ଥା ସମ୍ବିଧାନରେ ସ୍ଥାନ ପାଇଲା, ମାତ୍ର ଗାନ୍ଧିଜୀଙ୍କର ପରିକଳ୍ପିତ 'ଗ୍ରାମ ସ୍ୱରାଜ' ଏଥିରେ ସ୍ଥାନ ପାଇଲାନାହିଁ । ସମ୍ବିଧାନର ଧାରା-୪୦ରେ ଉଲ୍ଲେଖ ରହିଲା-" The state shall take steps to organise village Panchayats and endow them with such power and authority as may be necessary to enable them to function as units of self-government."

ସମ୍ବିଧାନର ବ୍ୟବସ୍ଥା ଅନୁଯାୟୀ ପ୍ରତ୍ୟେକ ରାଜ୍ୟ ଗ୍ରାମପଞ୍ଚାୟତ ଗଠନ ନିମନ୍ତେ ପଦକ୍ଷେପ ନେବେ । ଗ୍ରାମପଞ୍ଚାୟତଗୁଡ଼ିକ ସ୍ୱାୟତ୍ତ ଶାସିତ ଅନୁଷ୍ଠାନ ରୂପେ କାର୍ଯ୍ୟ କରିବା ପାଇଁ ଆବଶ୍ୟକୀୟ କ୍ଷମତା ଓ କର୍ତ୍ତୃତ୍ୱ ରାଜ୍ୟ ସରକାର ପ୍ରଦାନ କରିବେ ।

ଏହିପରି ଭାବରେ ଗାନ୍ଧିଜୀଙ୍କର ପରିକଳ୍ପିତ 'ଗ୍ରାମ ସ୍ୱରାଜ','ଗ୍ରାମପଞ୍ଚାୟତ'ରୂପ ନେଲା । ଗ୍ରାମପଞ୍ଚାୟତରେ କ୍ଷମତା, ଦାୟିତ୍ୱ ଓ ଆର୍ଥିକ ସ୍ଥିତି ସମ୍ବନ୍ଧରେ କିଛି ସ୍ପଷ୍ଟ ଉଲ୍ଲେଖ ରହିଲା ନାହିଁ । ଗ୍ରାମପଞ୍ଚାୟତ କେଉଁଭଳି ସ୍ୱାୟତ୍ତ ଶାସିତ ଅନୁଷ୍ଠାନ ଭାବରେ କାର୍ଯ୍ୟ କରିବ, ତାହା ରାଜ୍ୟ ବିଧାନସଭା ନିର୍ଣ୍ଣୟ କରିବେ ।

ପ୍ରତ୍ୟେକ ରାଜ୍ୟ ପ୍ରଶାସନିକ ସୁବିଧା ଦୃଷ୍ଟିରୁ ଯାହା ବିଚାର କଲେ ସେହି ଅନୁସାରେ ଗ୍ରାମପଞ୍ଚାୟତ ଗଠନ କଲେ । ମୂଳରୁ ଗ୍ରାମପଞ୍ଚାୟତ ପ୍ରଶାସନିକ ନିୟନ୍ତ୍ରଣରେ ରହି କାର୍ଯ୍ୟ କରିବାର ବ୍ୟବସ୍ଥା ରଖାଗଲା । ଅମଲାତନ୍ତ୍ର ଓ ବିଧାୟକ ପଞ୍ଚାୟତକୁ କ୍ଷମତା ପ୍ରଦାନରେ କୁଣ୍ଠାବୋଧ କଲେ ।

ଏଣେ ଓଡ଼ିଶାରେ ଓଡ଼ିଶା ଗ୍ରାମପଞ୍ଚାୟତ ବିଧେୟକ ୧୯୪୮ରୁ ପ୍ରଣିତ ହୋଇଥାଏ । ଉକ୍ତ ବିଧେୟକ ଅନୁସାରେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ସମୟରେ କେତେକ ଗ୍ରାମକୁ

ନେଇ ଗ୍ରାମପଞ୍ଚାୟତ ଗଠନ ବ୍ୟବସ୍ଥା ରଖାଯାଇଥିଲା । ତଦନୁସାରେ ୧୯୫୦–୫୧ରୁ ୧୯୫୧–୫୨ ମଧ୍ୟରେ ୨୩୪୧ଟି ଗ୍ରାମପଞ୍ଚାୟତ ଗଠନ କରାଯାଇଥିଲା । ୧୯୪୮ ମସିହାରେ ପ୍ରଣିତ ଓଡ଼ିଶା ଗ୍ରାମପଞ୍ଚାୟତ ବିଧେୟକରେ ଗ୍ରାମସଭା, ପଲ୍ଲୀସଭା, ଗ୍ରାମପଞ୍ଚାୟତର କ୍ଷମତା ଓ ଦାୟିତ୍ୱ ଓ ଅଦାଲତ ପଞ୍ଚାୟତ ଇତ୍ୟାଦିର ବ୍ୟବସ୍ଥା ଥିଲା । ବିଶେଷତଃ ପ୍ରତି ରାଜସ୍ୱ ଗ୍ରାମନିମନ୍ତେ ପଲ୍ଲୀସଭା ବ୍ୟବସ୍ଥା ସମଗ୍ର ଦେଶରେ ଏକ ଉତ୍ତମ ବ୍ୟବସ୍ଥାର ନଜିର ଅଟେ ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଭାରତ ବର୍ଷର ପଞ୍ଚବାର୍ଷିକ ଯୋଜନାରେ ଗାନ୍ଧିଜୀଙ୍କର 'ଗ୍ରାମସ୍ୱରାଜ' ଚିନ୍ତାଧାରାକୁ ଗୁରୁତ୍ୱ ଦିଆ ହୋଇନଥିଲା । ପ୍ରଥମେ ଗୋଷ୍ଠୀ ଉନ୍ନୟନ ପ୍ରକଳ୍ପ ମାତ୍ର ୧୯୫୨ରେ ଆରମ୍ଭ କରାଗଲା । ଗୋଷ୍ଠୀ ଉନ୍ନୟନ ପ୍ରକଳ୍ପଗୁଡ଼ିକରେ ଜନସାଧାରଣଙ୍କର ସହଯୋଗ କିପରି ମିଳିପାରିବ, ତାହା ନିର୍ଣ୍ଣୟ କରିବା ପାଇଁ ୧୯୫୭ ମସିହାରେ ବଳବନ୍ତ ରାୟ ମେହେଟ୍ଟାଙ୍କର ଅଧ୍ୟକ୍ଷତାରେ ଏକ କମିଟି କେନ୍ଦ୍ର ସ୍ତରରେ ଗଠନ କରାଗଲା । ଉକ୍ତ କମିଟି ଗୋଷ୍ଠୀ ଉନ୍ନୟନ ପ୍ରକଳ୍ପ ସଫଳ ଭାବରେ କାର୍ଯ୍ୟ କରିବା ନିମନ୍ତେ ଲୋକଙ୍କର ସହଯୋଗିତା ଉପରେ ଗୁରୁତ୍ୱ ଦେଇଥିଲେ । ବିଧିବଦ୍ଧ ଲୋକ ପ୍ରତିନିଧିମୂଳକ ଅନୁଷ୍ଠାନ ଗଠନ କରି ସେଗୁଡ଼ିକ ମାଧ୍ୟମରେ ଲୋକଙ୍କର ସହଯୋଗିତା ହାସଲ ପାଇଁ କମିଟି ସୁପାରିଶ କଲେ ।

ତତ୍‌କାଳୀନ କେନ୍ଦ୍ରୀୟ ଗୋଷ୍ଠୀ ଉନ୍ନୟନ ମନ୍ତ୍ରୀ ଶ୍ରୀ ଏସ୍.କେ. ଦେଓ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ କେନ୍ଦ୍ରରେ ପାର୍ଲାମେଣ୍ଟ, ରାଜ୍ୟରେ ବିଧାନସଭା ଓ ଗ୍ରାମସ୍ତରରେ ଅନ୍ୟ ଏକ ଗଣତାନ୍ତ୍ରିକ ଅନୁଷ୍ଠାନ ପଞ୍ଚାୟତିରାଜ ପ୍ରତିଷ୍ଠା ନିମନ୍ତେ ଗୁରୁତ୍ୱ ଦେଲେ । ପଣ୍ଡିତ ଜବାହରଲାଲ ନେହେରୁ ତା.୨.୧୦.୧୯୫୯ରିଖରେ ରାଜସ୍ଥାନର ନାଗୌରଠାରେ ପଞ୍ଚାୟତିରାଜ ବ୍ୟବସ୍ଥା ଉଦ୍‌ଘାଟନ କଲେ । ତା'ପରଠାରୁ ବିଭିନ୍ନ ରାଜ୍ୟ ପଞ୍ଚାୟତିରାଜ ଅନୁଷ୍ଠାନ ପ୍ରତିଷ୍ଠା ନିମନ୍ତେ ପଦକ୍ଷେପ ନେଲେ । ଇତିହାସର ଏହି ଘଟଣାବହୁଳ ସନ୍ଧି ସ୍ଥଳରେ ଓଡ଼ିଶା ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କର ଅବଦାନ ଅବିସ୍ମରଣୀୟ । ଗଣତନ୍ତ୍ର ଓ କ୍ଷମତା ବିକେନ୍ଦ୍ରୀକରଣ ଉପରେ ତାଙ୍କର ଗଭୀର ଆସ୍ଥା ଥିଲା । ଓଡ଼ିଶାର ଗ୍ରାମାଞ୍ଚଳ ଲୋକଙ୍କର ସାମାଜିକ ଓ ଅର୍ଥନୈତିକ ଉନ୍ନତି ନିମନ୍ତେ ପଞ୍ଚାୟତିରାଜ ଅନୁଷ୍ଠାନହିଁ ଲୋକଙ୍କର ସହଯୋଗିତା ଆଣିପାରିବ ଓ ଉନ୍ନୟନ କାର୍ଯ୍ୟ ସଫଳ ଭାବରେ କାର୍ଯ୍ୟକାରୀ କରିପାରିବ । ଏହି ଦୃଢ଼ବିଶ୍ୱାସ ତାଙ୍କର ଥିଲା । ୧୯୬୧ ମସିହାରେ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ପ୍ରତିଷ୍ଠା କରିବା ଅବସରରେ ସେ ଉଦ୍‌ବୋଧନ ଦେଇ କହିଥିଲେ–" The objective of this new experiment is noble and so is the work involved Panchayati Raj will remove illiteracy. Poverty and disease.'

ରାଜ୍ୟରୁ ଦାରିଦ୍ର୍ୟ, ଅଶିକ୍ଷା ଓ ପୀଡ଼ନ ଦୂର କରିବା ପାଇଁ ତାଙ୍କର ମର୍ମବେଦନା ଓ ପଞ୍ଚାୟତିରାଜ ଅନୁଷ୍ଠାନଦ୍ୱାରା ଏଗୁଡ଼ିକ ଦୂର କରିବା ପାଇଁ ତାଙ୍କର ଦୂରଦୃଷ୍ଟି ଉପରୋକ୍ତ ଉଦ୍‌ବୋଧନୀ ଭାଷଣରୁ କଳ୍ପନା କରି ହେବ ।

୧୯୬୧ ମସିହାରେ ତ୍ରିସ୍ତରୀୟ ପଞ୍ଚାୟତ ଅନୁଷ୍ଠାନରୂପେ ଜିଲ୍ଲାସ୍ତରରେ ଜିଲ୍ଲା ପରିଷଦ, ମଧ୍ୟମ ସ୍ତରରେ ପଞ୍ଚାୟତ ସମିତି (ବ୍ଲକ୍) ଓ ଗ୍ରାମ୍ୟସ୍ତରରେ ଗ୍ରାମ ପଞ୍ଚାୟତ ଗଢ଼ାଗଲା । ଜିଲ୍ଲା ପରିଷଦମୁଖ୍ୟଙ୍କ କାର୍ଯ୍ୟ ପର୍ଯ୍ୟାଲୋଚନା କରି ଉପଦେଷ୍ଟା ଭାବରେ କାର୍ଯ୍ୟ କରୁଥିଲେ । ଗ୍ରାମପଞ୍ଚାୟତ ଗାଁ ସ୍ତରରେ ଲୋକଙ୍କର ସହଯୋଗିତା ଆଣିବା ପାଇଁ କାର୍ଯ୍ୟ କରୁଥିଲେ । ଉନ୍ନୟନ କାର୍ଯ୍ୟ ମୁଖ୍ୟତଃ ପଞ୍ଚାୟତ ସମିତି ଉପରେ ନ୍ୟସ୍ତ ଥିଲା । ପଞ୍ଚାୟତ ସମିତି ଚେୟାରମ୍ୟାନଙ୍କ ନିୟନ୍ତ୍ରଣରେ ବିଡ଼ିଓ, ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରର ମେଡ଼ିକାଲ ଅଫିସର, ଭେଟେରିନାରୀ ଆସିଷ୍ଟାଣ୍ଟ ସର୍ଜନ, ସହକାରୀ ଯନ୍ତ୍ରୀ ଓ ଅନ୍ୟ ପଦାଧିକାରୀ କାର୍ଯ୍ୟନିର୍ବାହ କରୁଥିଲେ ।

ପଞ୍ଚାୟତିରାଜ ଅନୁଷ୍ଠାନଦ୍ୱାରା କୃଷି, କୁଟୀର ଶିଳ୍ପ, ଜଳସେଚନ, ରାସ୍ତାଘାଟ ଉନ୍ନୟନ , ପ୍ରାଥମିକ ଶିକ୍ଷା, ସମାଜ କଲ୍ୟାଣ, ଆଦିବାସୀ ଓ ହରିଜନ କଲ୍ୟାଣ ଇତ୍ୟାଦି କାର୍ଯ୍ୟକ୍ରମ ନିମନ୍ତେ ଷ୍ଟେଜ୍–୧ ଓ ଷ୍ଟେଜ୍–୨ ପର୍ଯ୍ୟାୟରେ ଆବଶ୍ୟକୀୟ ଅର୍ଥ ଯୋଗାଇ ଦିଆଯାଇଥିଲା । ବ୍ଲକ୍‌ସ୍ତରୀୟ ଅଫିସରଓ ଜିଲ୍ଲାସ୍ତରୀୟ ଅଫିସରମାନେ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟ ପାଇଁ ଗାଁକୁ ଗଲେ । ଲୋକେ ଉତ୍ସାହିତ ହେଉଥିଲେ ଓ ସହଯୋଗ କରୁଥିଲେ । ଏହି ସମୟରେ ପ୍ରତି ବ୍ଲକ୍‌ରେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ପଞ୍ଚାୟତ ସମିତି ଶିଳ୍ପ କେନ୍ଦ୍ର, ଗ୍ରାମ୍ୟସ୍ତରରେ ପ୍ରାଥମିକ ସେବା ସମବାୟ ସମିତି, ଗ୍ରେନ୍‌ଗୋଲା, ପଶୁଚିକିତ୍ସା କେନ୍ଦ୍ରନିର୍ମାଣ କରାଯାଇଥିଲା । ଜିଲ୍ଲାସଦର ମହକୁମାରେ ଜିଲ୍ଲା ପରିଷଦ ଭବନ ଓ ରାଜ୍ୟର କେତେକ ସ୍ଥାନରେ ଗ୍ରାମସେବକ ତାଲିମ କେନ୍ଦ୍ରନିର୍ମାଣ କରାଯାଇଥିଲା । କୃଷିକୁ ପ୍ରାଧାନ୍ୟ ଦେଇ ଗାଁର କୃଷି ଖସଡ଼ା ଗ୍ରାମ ସେବକଙ୍କଦ୍ୱାରା ପ୍ରସ୍ତୁତ କରାଯାଉଥିଲା ଓ ଗ୍ରାମସେବକମାନେ

କୃଷକମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ କରୁଥିଲେ । ସମୟ ଅତିବାହିତ ହେବା ସଂଗେସଂଗେ କାର୍ଯ୍ୟକ୍ରମରେ ଶିଥିଳତା ଦେଖାଦେଲା । ୧୯୬୭ରେ ସରକାର ପରିବର୍ତ୍ତନ ହେଲା । ଗୋଷ୍ଠୀ ଉନ୍ନୟନ କାର୍ଯ୍ୟ ସଂକୁଚିତ କରି ଦିଆଗଲା । ଜିଲ୍ଲା ପରିଷଦ ଗୁଡ଼ିକୁ ୧୯୬୮ରେ ଉଚ୍ଛେଦ କରି ଦିଆଗଲା । ଗ୍ରାମ୍ୟନିର୍ମାଣ ସଂସ୍ଥା (ଆର୍.ଇ.ଓ.), ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ପଶୁ ଚିକିତ୍ସା କେନ୍ଦ୍ର ଚେୟାରମ୍ୟାନଙ୍କର ନିୟନ୍ତ୍ରଣରୁ ଅଲଗା କରି ଦିଆଗଲା ।

୧୯୭୧–୭୨ ମସିହା ପରେ କେନ୍ଦ୍ରୀୟ ଅନୁଦାନ କମିଗଲା । ୧୯୭୫ ବେଳକୁ ଇନ୍ଦିରା ଗାନ୍ଧୀଙ୍କର ନେତୃତ୍ୱାଧୀନ କେନ୍ଦ୍ର ସରକାର 'ଗରିବୀ ହଟାଓ' ଆଭିମୁଖ୍ୟ ଗ୍ରହଣ କଲେ । ୧୯୭୬ରେ'ଗରିବୀ ହଟାଓ' ଅଂଶ ସ୍ୱରୂପ ବିଂଶସୂତ୍ରୀ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଗଲା । ତା'ପରଠାରୁ କେନ୍ଦ୍ରରେ ଯେତେ କଂଗ୍ରେସ ଓ ଅଣକଂଗ୍ରେସ ତଥା ମେଣ୍ଟ ସରକାରଆସିଛନ୍ତି, ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମକୁ ଗୁରୁତ୍ୱ ଦେଇ ଆସିଛନ୍ତି ।

ଦାରିଦ୍ର୍ୟ ଦୂରୀକରଣ ନିମନ୍ତେ ମଜୁରିଆମାନଙ୍କୁ କାମ ଯୋଗାଇଦେବା ସରକାରଙ୍କରଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଆଭିମୁଖ୍ୟ । ଏଥି ନିମନ୍ତେ ୧୯୭୭ରେ ଖାଦ୍ୟ ବଦଳରେ କାମ(Food for Work ),୧୯୮୦ରେ ଜାତୀୟ ଗ୍ରାମାଞ୍ଚଳ ରୋଜଗାର ଯୋଜନା (ଏନ୍.ଆର୍.ଇ.ପି.), ୧୯୮୩ରେ ରୁରାଲ ଲ୍ୟାଣ୍ଡଲେସ ଏମ୍ପ୍ଲୋୟମେଣ୍ଟ ଗ୍ୟାରେଣ୍ଟି ପ୍ରୋଗ୍ରାମ (ଆର୍.ଏଲ୍.ଇ.ଜି.ପି.) । ୧୯୮୯ରେ ଜୱାହର ରୋଜଗାର ଯୋଜନା (ଜେ.ଆର୍.ୱାଇ.), ୧୯୯୩ରେ ଏମ୍ପ୍ଲୋୟମେଣ୍ଟ ଆସ୍ୟୁରାନ୍ସ ସ୍କିମ୍, ୧୯୯୯ରେ ଜୱାହର ଗ୍ରାମ ସମୃଦ୍ଧି ଯୋଜନା, ୨୦୦୧ରୁ ସମ୍ପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନା ଓ ୨୦୦୫ରୁ ଜାତୀୟ ଓ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା (ଏନ୍.ଆର୍.ଇ.ଜି.ଏ.) କାର୍ଯ୍ୟକାରୀ କରାଯାଇଅଛି । ଅବଶ୍ୟ ଗୋଟିଏ ପ୍ରୋଗ୍ରାମର କାର୍ଯ୍ୟକାରିତା ଅନୁଧ୍ୟାନ କରି ତା'ର ପରିବର୍ତ୍ତନ କରାଯାଇ ନୂଆ ପ୍ରୋଗ୍ରାମ ଆରମ୍ଭ କରାଯାଇଅଛି ।

କେନ୍ଦ୍ରୀୟ ଅର୍ଥ କମିଶନଙ୍କ ସୁପାରିଶ ଅନୁସାରେ ପଞ୍ଚାୟତିରାଜ ଅନୁଷ୍ଠାନମାନେ ଦଶମ, ଏକାଦଶ ଓ ଦ୍ୱାଦଶ ଅର୍ଥ କମିଶନଗ୍ରାଣ୍ଟ ପାଇଛନ୍ତି । ଯୋଜନା କମିଶନଙ୍କଠାରୁ କେ.ବି.କେ. ଯୋଜନା ଓ ପଛୁଆ ଅଞ୍ଚଳ ଉନ୍ନୟନ ଯୋଜନା ନିମନ୍ତେ ଅର୍ଥ ମିଳିଥାଏ । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କୁ ଚିହ୍ନଟରେ ସେମାନଙ୍କର ଆତ୍ମନିଯୁକ୍ତି ନିମନ୍ତେ ସବ୍‌ସିଡିଯୁକ୍ତ ଋଣ ମାଧ୍ୟମରେ ଆୟପନ୍ଥା ସୃଷ୍ଟି କରିବା ପାଇଁ ୧୯୮୦ରୁ ଆଇ.ଆର୍.ଡି.ପି. ଯୋଜନା ଆରମ୍ଭ କରାଯାଇଥିଲା । ଆଇ.ଆର୍.ଡି.ପି.କୁ ପରିବର୍ତ୍ତନ କରି ୧୯୯୯ରୁ ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ ସ୍ୱରୋଜଗାର ଯୋଜନା କାର୍ଯ୍ୟକାରୀ କରାଯାଉଅଛି । ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବାସହୀନ ଲୋକଙ୍କୁ ଘର ଯୋଗାଇବା ପାଇଁ ୧୯୮୫ରୁ ଇନ୍ଦିରା ଆବାସ ଯୋଜନା ମାଧ୍ୟମରେ ଆର୍ଥିକସହାୟତା ଦିଆଯାଉଅଛି । ରାଜ୍ୟ ସରକାର ନିଜସ୍ୱ ବଜେଟ୍‌ରୁ'ଗୋପବନ୍ଧୁଗ୍ରାମୀଣ' ଯୋଜନା, 'ମୋ କୁଡ଼ିଆ' ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ଏହାବ୍ୟତୀତ କେନ୍ଦ୍ର ସରକାର ଓ ରାଜ୍ୟ ସରକାର ଅନ୍ୟ ବହୁ ଯୋଜନା ନିମନ୍ତେ ଅର୍ଥ ପ୍ରଦାନ କରୁଛନ୍ତି । ବର୍ତ୍ତମାନ ତଫସିଲଭୁକ୍ତ ଅଞ୍ଚଳରେ ପ୍ରତି ପଞ୍ଚାୟତ ବାର୍ଷିକ ପ୍ରାୟ ୧୫ ଲକ୍ଷରୁ ଊର୍ଦ୍ଧ୍ୱ ଅର୍ଥରାଶି ଉନ୍ନୟନ କାର୍ଯ୍ୟ ନିମନ୍ତେ ପାଇଥାଆନ୍ତି ।

ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ କ୍ଷମତାପ୍ରଦାନ ବିଷୟ ପୁନର୍ବାର ଆଲୋଚନା କରିବା ଆବଶ୍ୟକ । ୧୯୬୧ରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ଖୁବ୍ ଉତ୍ସାହର ସହ ଆରମ୍ଭ କରାଯିବା ପରେ ୧୯୭୦ ବେଳକୁ ଶିଥିଳତା ଆରମ୍ଭ ହେଲା । କେନ୍ଦ୍ରୀୟ କମିଟି ପଞ୍ଚାୟତିରାଜ ବ୍ୟବସ୍ଥାର ଉନ୍ନତି ପାଇଁ ସୁପାରିଶ କରିଥିଲେ ମଧ୍ୟ ସରକାରଙ୍କ ନିୟନ୍ତ୍ରଣରେ ପଞ୍ଚାୟତିରାଜ ଅନୁଷ୍ଠାନମାନେ ସ୍ୱୟଂଶାସିତ ଅନୁଷ୍ଠାନ ଭାବରେ ଉଠିପାରିଲେ ନାହିଁ । ଅନେକ ଚିନ୍ତାଶୀଳ ବ୍ୟକ୍ତି ପୁନର୍ବାର ଉକ୍ତ ଅନୁଷ୍ଠାନମାନଙ୍କୁ ଦୃଢ଼ କରିବା ନିମନ୍ତେ ଚିନ୍ତା କରାଗଲା । ୧୯୮୯ରେ ସମ୍ବିଧାନର ୬୪ତମ ସଂଶୋଧନ ବିଲ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଆଣିଥିଲେ । ମାତ୍ର ବିଲ୍‌ଟି ପାର୍ଲାମେଣ୍ଟରେ ଅନୁମୋଦନ ହୋଇପାରି ନ ଥିଲା । ୧୯୯୦ରେ ନ୍ୟାସନାଲ ଫ୍ରଣ୍ଟ ସରକାର ସମ୍ବିଧାନର ୭୪ତମ ସଂଶୋଧନ ବିଲ୍ (ଉଭୟ ପଞ୍ଚାୟତିରାଜ ଅନୁଷ୍ଠାନ ଓ ନଗରପାଳିକା ନିମନ୍ତେ) ଆଣିଥିଲେ । ମାତ୍ର ବିଲ୍ ବିଚାର ପାଇଁ ନେବାପୂର୍ବରୁ ଉକ୍ତ ସରକାର ଭାଙ୍ଗିଗଲା ।

୧୯୯୦ ମସିହାରେ ଶ୍ରୀ ବିଜୁ ପଟ୍ଟନାୟକ ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ପାର୍ଲାମେଣ୍ଟରେ ସମ୍ବିଧାନସଂଶୋଧନବିଲ୍ ପାସ୍ ହୋଇ ନ ଥାଏ । ମାତ୍ର ଶ୍ରୀ ବିଜୁ ପଟ୍ଟନାୟକ ସମ୍ବିଧାନ ସଂଶୋଧନରେ ଅଭିପ୍ରେତ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ କଲେ । ୧୯୬୮ରୁ ଭାଙ୍ଗି ଦିଆଯାଇଥିବା ଜିଲ୍ଲା ପରିଷଦର ପୁନର୍ଗଠନ ପାଇଁ ଓଡ଼ିଶା

ଜିଲ୍ଲାପରିଷଦ ଅଧିନିୟମ ୧୯୯୧ ପ୍ରଣୟନ କରାଗଲା । ମହିଳାମାନଙ୍କର ସଶକ୍ତିକରଣ ଉପରେ ସେ ଗୁରୁତ୍ୱ ଦେଇ ସମ୍ବିଧାନ ସଂଶୋଧନ ପୂର୍ବରୁ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ନିର୍ବାଚିତପ୍ରତିନିଧିମାନଙ୍କମଧ୍ୟରୁଏକତୃତୀୟାଂଶ ସ୍ଥାନମହିଳାମାନଙ୍କ ପାଇଁ ସଂରକ୍ଷଣ କରାଇଲେ । ଆଦିବାସୀ ଓ ହରିଜନମାନଙ୍କ ପାଇଁ ସେମାନଙ୍କର ଲୋକସଂଖ୍ୟା ଅନୁପାତରେ ସ୍ଥାନ ସଂରକ୍ଷଣ କଲେ । ଗ୍ରାମପଞ୍ଚାୟତ ଗୁଡ଼ିକରପୁନର୍ଗଠନ ୧୯୯୧–୧୯୯୨ରେ କରାଇଲେ । ରାଜ୍ୟର ସମସ୍ତ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ନିର୍ବାଚିତ ପ୍ରତିନିଧିଙ୍କର ସମ୍ମିଳନୀ ଭୁବନେଶ୍ୱରରେ ଡାକି ସେମାନଙ୍କର ଦାୟିତ୍ୱ ଓ କ୍ଷମତା ସମ୍ବନ୍ଧରେ ବୁଝାଇଲେ । ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କ ପାଇଁ ରାଜ୍ୟ ବଜେଟ୍‌ରୁ ଅଧିକ ଅର୍ଥର ବ୍ୟବସ୍ଥା କରାଗଲା ଓ ସେମାନଙ୍କୁ ଅଧିକ ସକ୍ରିୟ କରିବା ପାଇଁ ପଦକ୍ଷେପ ନିଆଗଲା । ସମ୍ବିଧାନର ୭୩ତମ ସଂଶୋଧନ ଅନୁଯାୟୀ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁକ୍ଷମତା ପ୍ରଦାନ ନିମନ୍ତେ ସେ ଆଗ୍ରହୀ ଥିଲେ । ମାତ୍ର ୧୯୯୫ ସାଧାରଣ ନିର୍ବାଚନରେ ତାଙ୍କ ଦଳ କ୍ଷମତାକୁ ଆସି ପାରିଲେ ନାହିଁ ।

୧୯୯୧ ମସିହାରେ ଶ୍ରୀ ପି.ଭି.ନରସିଂହରାଓ ସରକାର ସମ୍ବିଧାନର ୭୨ତମ ସଂଶୋଧନ ବିଲ (ପଞ୍ଚାୟତ) ଓ ୭୩ତମ ସଂଶୋଧନ ବିଲ (ନଗରପାଳିକା) ଆଗତ କଲେ । ଲୋକସଭା ଓ ରାଜ୍ୟସଭାରେ ଏହି ବିଲ ଦ୍ୱୟ ଯଥାକ୍ରମେ ଡ଼ିସେମ୍ବର ୨୨ ଓ ଡିସେମ୍ବର ୨୩ରେ ଗୃହୀତ ହେଲା । ସେତେବେଳକୁ ସଂଶୋଧନ କ୍ରମିକ ସଂଖ୍ୟା ଯଥାକ୍ରମେ– ୭୩ତମ (ପଞ୍ଚାୟତ) ଓ ୭୪ତମ (ନଗରପାଳିକା) ହୋଇ ଯାଇଥିଲା ।

**୭୩ତମ ସଂଶୋଧନ ପଞ୍ଚାୟତିରାଜ ପାଇଁ ଐତିହାସିକ ଘଟଣା । ସବୁ ରାଜ୍ୟରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ ସହ ସେମାନଙ୍କୁ ସ୍ୱୟଂଶାସିତ ଅନୁଷ୍ଠାନରୂପେ ସାମ୍ବିଧାନିକ ସ୍ୱୀକୃତି ମିଳିଲା ।** ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ସାମ୍ବିଧାନିକ ଲକ୍ଷ୍ୟ ରଖାଗଲା ଯେ ସେମାନେ ଲୋକଙ୍କର ଅର୍ଥନୈତିକ ଉନ୍ନତି ଓ ସାମାଜିକ ନ୍ୟାୟ ନିମନ୍ତେ ଯୋଜନା ପ୍ରସ୍ତୁତ କରିବେ ଓ କାର୍ଯ୍ୟକାରୀ କରାଇବେ । ଏଥି ନିମନ୍ତେ ସମ୍ବିଧାନର ୧୧ଶ ପରିଶିଷ୍ଟରେ ଉଲ୍ଲିଖିତ ୨୯ଟି ବିଷୟ, ଯଥା–କୃଷି, ସମବାୟ, ଶିକ୍ଷା, ସ୍ୱାସ୍ଥ୍ୟ, ଜଳସେଚନ, ରାସ୍ତା ଓ ପୋଲ, ଆଦିବାସୀ ଓ ହରିଜନକଲ୍ୟାଣ, ମହିଳା ଓ ଶିଶୁ ବିକାଶ, ଖାଉଟି ଦ୍ରବ୍ୟ ସୁଷମ ବଣ୍ଟନ, ବନୀକରଣ, ଦାରିଦ୍ର୍ୟ ଦୂରୀକରଣ ଇତ୍ୟାଦି ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ହସ୍ତାନ୍ତର କରିବା ବିଷୟ ଉଲ୍ଲେଖ ରହିଲା, କିନ୍ତୁ କ୍ଷମତା ହସ୍ତାନ୍ତର ଉପରେ ବିଧାନସଭାର ଅଙ୍କୁଶ ରଖି ଦିଆଗଲା । ଧାରା– ୨୪୩(ଜି)ରେ ଉଲ୍ଲେଖ କରାଗଲା – "State may by law endow the Panchayats with such powers and authority as may be necessary to enable them to function as institutions of self-Government... subject to such conditions as may be specified therein.'

ତେଣୁ ପଞ୍ଚାୟତିରାଜ ଅନୁଷ୍ଠାନମାନେ ରାଜ୍ୟ ସରକାର ଯେତିକି କ୍ଷମତା ଦେବା ପାଇଁ ନିଷ୍ପତ୍ତି ନେବେ ସେତିକି କ୍ଷମତାର ଅଧିକାରୀ ହେବେ । ଇତି ମଧ୍ୟରେ ତଫସିଲଭୁକ୍ତ ଅଞ୍ଚଳ ପାଇଁ ଏକ ସ୍ୱତନ୍ତ୍ର ଆଇନ ପ୍ରଣୟନ ପାଇଁ ଦାବି ହୋଇ ଆସୁଥିଲା । କେନ୍ଦ୍ର ସରକାର ତା.୨୪.୧୨.୧୯୯୬ରିଖରୁ ପଞ୍ଚାୟତିରାଜ ସଂପ୍ରସାରଣ ଅଧିନିୟମ Provisions of Panchayat (Extension to Scheduled Areas) Act (PESA, ପେସା) ପ୍ରଣୟନ କଲେ । ତଦନୁସାରେ ରାଜ୍ୟ ସରକାର ଓଡ଼ିଶା ପଞ୍ଚାୟତ ଆଇନଗୁଡ଼ିକ ସଂଶୋଧନ କଲେ । ତଫସିଲଭୁକ୍ତ ଅଞ୍ଚଳରେ ସରପଞ୍ଚ, ପଞ୍ଚାୟତ ସମିତି ଚେୟାରମ୍ୟାନ ଓ ଜିଲ୍ଲା ପରିଷଦସଭାପତି ପଦବୀ ଆଦିବାସୀ ପ୍ରାର୍ଥୀଙ୍କ ନିମନ୍ତେ ସଂରକ୍ଷଣ କରାଗଲା । ଗ୍ରାମସଭାକୁ ଲଘୁବନଜାତ ଦ୍ରବ୍ୟର ମାଲିକାନା, ମାଦକ ଦ୍ରବ୍ୟ ପ୍ରସ୍ତୁତି ଓ ବିକ୍ରୟ ଉପରେ ନିୟନ୍ତ୍ରଣ, ଆଦିବାସୀ ଜମି ହସ୍ତାନ୍ତରଇତ୍ୟାଦି ବିଷୟରେ ନିୟନ୍ତ୍ରଣ ଅଧିକାରଦିଆଗଲା । ଗ୍ରାମସଭା, ପଞ୍ଚାୟତଦ୍ୱାରା କରାଯାଉଥିବା କାମର ବିନିଯୋଗ ସାର୍ଟିଫିକେଟ ଦେବା କ୍ଷମତା ପାଇଲେ ।

ମାର୍ଚ୍ଚ ମାସ ୨୦୦୦ରେ ଶ୍ରୀନବୀନ ପଟ୍ଟନାୟକଙ୍କର ନେତୃତ୍ୱାଧୀନ ସରକାର କ୍ଷମତାକୁ ଆସିଲେ । ୨୦୦୨ରେ ଗ୍ରାମପଞ୍ଚାୟତପୁନର୍ଗଠନକରାଯାଇ ଏଗୁଡ଼ିକରସଂଖ୍ୟା ୬୨୩୪କୁ ବୃଦ୍ଧି କରାଗଲା ଓ ତ୍ରିସ୍ତରୀୟ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ନିର୍ବାଚନ କରାଗଲା । ନକ୍ସଲ ଉପଦ୍ରୁତ ଅଞ୍ଚଳରେ ନକ୍ସଲମାନେ ଭୋଟ ବର୍ଜନ ଧମକ ଦେଇଥିଲେ । କିନ୍ତୁ ନିର୍ବାଚନ ସଫଳ ଓ ସନ୍ତୋଷଜନକ ଭାବରେ କରାଗଲା । ସମଗ୍ର ଦେଶରେ 'ପେସା' ଅନୁସାରେ ନିର୍ବାଚନ କରାଇବାରେ ଓଡ଼ିଶା ହେଉଛି ପ୍ରଥମ ରାଜ୍ୟ । ଆଦିବାସୀମାନଙ୍କୁ ସାମାଜିକ ନ୍ୟାୟ ଦେବାରେ ଏହା ଏକ ବଳିଷ୍ଠ ପଦକ୍ଷେପ ।

୨୦୦୪ ମସିହାରେ କେନ୍ଦ୍ର ସରକାର ପଞ୍ଚାୟତିରାଜ ନିମନ୍ତେ ସ୍ୱତନ୍ତ୍ର ଭାବରେ ପଞ୍ଚାୟତିରାଜ ମନ୍ତ୍ରଣାଳୟ ଖୋଲିଲେ । ଉକ୍ତ ମନ୍ତ୍ରଣାଳୟରେ ପ୍ରଥମ ମନ୍ତ୍ରୀ ଭାବରେ ଶ୍ରୀ ମଣିଶଙ୍କର ଆୟାର ୨୦୦୪ରେ ୭ଟି ଗୋଲଟେବୁଲ ବୈଠକ ଦେଶର ବିଭିନ୍ନ ସ୍ଥାନରେ ଡାକିଥିଲେ । ଓଡ଼ିଶାର ପ୍ରତିନିଧିତ୍ୱ କରି ଡା. ଦାମୋଦର ରାଉତ ପଞ୍ଚାୟତିରାଜ ସମ୍ବନ୍ଧରେ ବଳିଷ୍ଠ ପରାମର୍ଶମାନ ଦେଇଥିଲେ ଓ ଜାତୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ଏହି ସମୟରେ କେନ୍ଦ୍ରୀୟ ଅନୁଦାନ ବିନିଯୋଗରେ ଓଡ଼ିଶା ବିଶେଷ ସଫଳତା ଲାଭ କରିଥିଲା । ବଜାର–ସଡ଼କ–ପାଣି କାର୍ଯ୍ୟକ୍ରମରେ ପ୍ରତି ପଞ୍ଚାୟତରେ କଂକ୍ରିଟ ରାସ୍ତା, ଦୋକାନଗୃହ ଓ ପାନୀୟଜଳ ବ୍ୟବସ୍ଥା ପ୍ରସାରିତ କରାଗଲା । ବ୍ଲକଗୁଡ଼ିକରେ କମ୍ପ୍ୟୁଟରୀକରଣ କରାଯାଇ ଦୈନନ୍ଦିନ କାର୍ଯ୍ୟ ବିଶେଷ କରି ହିସାବ ପରିଚାଳନା ଉନ୍ନତ ଓ ତ୍ୱରାନ୍ୱିତ କରାଗଲା ।

ଏହି ସବୁ ପ୍ରଗତିମୂଳକ ପଦକ୍ଷେପ ସତ୍ତ୍ୱେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର କାର୍ଯ୍ୟ ସମ୍ବନ୍ଧରେ ଅନେକ ଅଭିଯୋଗ ଆସିଥାଏ । ହିତାଧିକାରୀ ଚୟନରେ ପକ୍ଷପାତିତା, ପ୍ରକଳ୍ପ ନିର୍ମାଣରେ ଅନିୟମିତତା, ସମୟ ସୀମା ମଧ୍ୟରେ ପ୍ରକଳ୍ପ ସମ୍ପୂର୍ଣ୍ଣ ନ ହୋଇ ପଡ଼ି ରହିବା, ବିଭିନ୍ନ କ୍ଷେତ୍ରରେ ଦୁର୍ନୀତି, ଟଙ୍କା ତୋଷରପାତ, ମଜୁରୀ ପ୍ରଦାନରେ ଅବହେଳା ଇତ୍ୟାଦି ବହୁ ଅଭିଯୋଗ ମିଳିଥାଏ । ଅନେକ ଅଭିଯୋଗର ସତ୍ୟତା ମଧ୍ୟ ଥାଏ । ଅଭିଯୋଗଗୁଡ଼ିକର ତଦନ୍ତ ଓ ତଦନ୍ତ ଭିତ୍ତିରେ କାର୍ଯ୍ୟାନୁଷ୍ଠାନ ସନ୍ତୋଷଜନକ ହେବା ଆବଶ୍ୟକ । ନିର୍ବାଚିତ ପ୍ରତିନିଧିମାନଙ୍କର ଅନେକ ସମସ୍ୟା ଓ ଅସୁବିଧା ରହିଛି । ଜଣେ ସରପଞ୍ଚ ଗ୍ରାମରେ ରହିଥିବାରୁ ସାଧାରଣ ଲୋକ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ସେମାନଙ୍କର ଅଭିଯୋଗ ଧରି ସରପଞ୍ଚଙ୍କ ପାଖକୁ ଆସିଥାଆନ୍ତି । ବ୍ଲକ୍ ଚେୟାରମ୍ୟାନ ଓ ଜିଲ୍ଲା ପରିଷଦ ସଭାପତି ତଥା ଅନ୍ୟାନ୍ୟ ନିର୍ବାଚିତ ପ୍ରତିନିଧିମାନଙ୍କ ପାଖକୁ ଜନସାଧାରଣ ଅନେକ ଅଭାବ/ ଅସୁବିଧା ଧରି ଆସିଥାଆନ୍ତି । ଲୋକଙ୍କ ପାଇଁ କାମ କରିବାକୁ ସେମାନେ ପ୍ରତିଶ୍ରୁତିବଦ୍ଧ ଲୋକଙ୍କ କଥା ଏଡ଼ାଇ ଦେଇ ହେବନାହିଁ । ସରକାରଙ୍କର ପତ୍ର/ନିର୍ଦ୍ଦେଶାବଳୀ ସମ୍ବନ୍ଧରେ ନିର୍ବାଚିତ ପ୍ରତିନିଧି ଏକରକମର ଅନ୍ଧକାରରେ ଥାଆନ୍ତି । ତେଣୁ ଲୋକଙ୍କର ଅଭାବ ଅଭିଯୋଗ ଉପରେ କାର୍ଯ୍ୟାନୁଷ୍ଠାନ କରିବା ସେମାନଙ୍କ ପକ୍ଷରେ ସହଜ ହୋଇ ନ ଥାଏ । ୨୦୦୩ରେ ମୁଖ୍ୟ ଶାସନ ସଚିବଙ୍କର ସ୍ୱାକ୍ଷରରେ ୧୧ଟି ବିଭାଗକୁ ପତ୍ର ଦିଆଗଲା– ସଂପୃକ୍ତ ବିଭାଗର ଜିଲ୍ଲାସ୍ତରୀୟ ଅଧିକାରୀ ବ୍ଲକ୍‌ସ୍ତରୀୟ ଅଧିକାରୀ ଓ ଗ୍ରାମ୍ୟସ୍ତରୀୟ ଅଧିକାରୀ ଯଥାକ୍ରମେ–ଜିଲ୍ଲାପରିଷଦ, ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତ ପାଖରେ ଉତ୍ତର ଦାୟୀ ରହିବେ । ଜିଲ୍ଲାପରିଷଦ ସଭାପତି, ପଞ୍ଚାୟତସମିତି ଚେୟାରମ୍ୟାନ, ସେମାନଙ୍କର ସାମୟିକ ଛୁଟି ମଞ୍ଜୁର କରିବେ । ଉକ୍ତ ପତ୍ରରେ ଦିଆଯାଇଥିବା ନିର୍ଦ୍ଦେଶାବଳୀ ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ଅନ୍ୟପକ୍ଷରେ ସରକାରୀ ଅଧିକାରୀ/କର୍ମଚାରୀଙ୍କର ମଧ୍ୟ ଅନେକ ସମସ୍ୟା । ବ୍ଲକ୍ ବି.ଡି.ଓ. ଭାବରେ ଜଣଙ୍କୁ ଗୋଟିଏ ପି.ଡବ୍ଲ୍ୟୁ.ଡି. ଜଳସେଚନ ବିଭାଗର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କଠାରୁ ଅଧିକ ଅର୍ଥ ବିନିଯୋଗ କରିବାକୁ ପଡ଼ିଥାଏ । ତାହାଛଡ଼ା ପ୍ରାଥମିକ ଶିକ୍ଷା, ମଧ୍ୟାହ୍ନ ଭୋଜନ, ଷ୍ଟାଇପେଣ୍ଡ ବଣ୍ଟନ, ବାର୍ଦ୍ଧକ୍ୟ ଭତ୍ତା ବଣ୍ଟନ, କଣ୍ଟ୍ରୋଲ ସାମଗ୍ରୀ ବଣ୍ଟନ, ନିର୍ବାଚନ, ଜନଗଣନା, ପ୍ରାକୃତିକ ବିପର୍ଯ୍ୟୟ, ସ୍ୱୟଂସହାୟକ ଗୋଷ୍ଠୀ ଗଠନ ଓ ପରିଚାଳନା ଇତ୍ୟାଦି ବିବିଧ ପ୍ରକାର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ତାଙ୍କ ଉପରେ ନ୍ୟସ୍ତ । ଗ୍ରାମପଞ୍ଚାୟତରେ ଜଣେ ନିର୍ବାହୀ ଅଧିକାରୀଙ୍କ ଉପରେ ଅଫିସର ଦୈନନ୍ଦିନ କାର୍ଯ୍ୟ ଓ କ୍ଷେତ୍ରରେ ବିଭିନ୍ନ ସ୍କିମ୍ କାର୍ଯ୍ୟକାରୀ କରିବା ଦାୟିତ୍ୱନ୍ୟସ୍ତ । ଏବେ ବହୁ ପଦବୀ ଖାଲି ପଡ଼ିଥିବାରୁ କାର୍ଯ୍ୟ ସମ୍ପାଦନରେ ଗୁରୁତର ବାଧା ସୃଷ୍ଟି ହେଉଅଛି । ଉପରୋକ୍ତ ସମସ୍ୟା/ଅସୁବିଧା ସନ୍ତୋଷଜନକ ଭାବରେ ଦୂର କରି ହେବ । ଅର୍ଥ ବାଟମାରଣା ରୋକିବା ପାଇଁ ମଜୁରିଆ ଓ ହିତାଧିକାରୀଙ୍କର ପ୍ରାପ୍ୟ ସମ୍ପୂର୍ଣ୍ଣ ଭାବରେ ପାସ୍‌ବୁକ୍‌ରେ ଜମା ଦିଆଯିବା ଉଚିତ । ସାମାଜିକ ଅଡ଼ିଟ୍ କଡ଼ାକଡ଼ି ପାଳନ କରାଗଲେ ଅର୍ଥ ବିନିଯୋଗରେ ଦୁର୍ନୀତି ରୋକି ହେବ । କମ୍ପ୍ୟୁଟର ବ୍ୟବସ୍ଥା ଗ୍ରାମପଞ୍ଚାୟତ ସ୍ତର ପର୍ଯ୍ୟନ୍ତ ସଂପ୍ରସାରଣ କରି ଆକାଉଣ୍ଟ ପରିଚାଳନା, ଏଷ୍ଟିମେଣ୍ଟ ତିଆରି, ବିଲ୍ ପ୍ରସ୍ତୁତି, ରିପୋର୍ଟ ପ୍ରସ୍ତୁତି ଇତ୍ୟାଦି ସଫ୍ଟୱେର ମାଧ୍ୟମରେ କରାଗଲେ କାର୍ଯ୍ୟ ସହଜ ଓ ତ୍ୱରାନ୍ୱିତ ହେବ । ବିଶେଷତଃ ଇନ୍ଦିରା ଆବାସ ଓ ଅନ୍ୟ ହିତାଧିକାରୀମାନଙ୍କର ପ୍ରୋଫାଇଲ ଓ ସେମାନଙ୍କୁ ଦିଆଯାଇଥିବା ସହାୟତା ୱେବ୍‌ସାଇଟ୍‌ରେ ଉପଲବ୍ଧ ହେଲେ କାର୍ଯ୍ୟରେ ସ୍ୱଚ୍ଛତା ପ୍ରକାଶ ପାଇବ । ପଲ୍ଲୀସଭା, ଗ୍ରାମସଭା, ଗ୍ରାମପଞ୍ଚାୟତ / ପଞ୍ଚାୟତ ସମିତି /ଜିଲ୍ଲାପରିଷଦ ବୈଠକ ନିୟମିତ ଡାକି ଉନ୍ନୟନ ଓ ଅନ୍ୟାନ୍ୟ ବିଷୟ ଆଲୋଚନା କଲେ ନିର୍ବାଚିତ ପ୍ରତିନିଧି ତଥା ଜନସାଧାରଣଙ୍କର ମନରୁ ସନ୍ଦେହ ଦୂରୀଭୂତ ହେବ । ରାଜ୍ୟ ଗ୍ରାମ୍ୟ ଉନ୍ନୟନ ପ୍ରତିଷ୍ଠାନ ପଞ୍ଚାୟତିରାଜ ସମ୍ବନ୍ଧୀୟ ଆଇନ୍, ବିଭିନ୍ନ

ସ୍କିମ୍, ଅର୍ଥ ପରିଚାଳନା ଓ ସ୍ୱଚ୍ଛତା ସମ୍ବନ୍ଧରେ ୫ ଗୋଟି ଉପାଦେୟ ପୁସ୍ତିକା ସଂକଳନ କରି ଅଛନ୍ତି । ନିର୍ବାଚିତ ପ୍ରତିନିଧିମାନଙ୍କର ତାଲିମ ବର୍ତ୍ତମାନ ସୂଚାରୁ ରୂପେ କରି ସେମାନଙ୍କର ଜ୍ଞାନ ଓ ସାମର୍ଥ୍ୟ ବୃଦ୍ଧି କରିବାକୁ ହେବ ।

ଗ୍ରାମାଞ୍ଚଳ ଲୋକ ବିଶେଷ କରି ତଫସିଲଭୁକ୍ତ ଅଞ୍ଚଳର ଲୋକଙ୍କର ଜୀବନଧାରଣମାନ ଉନ୍ନତ କରିବା ପାଇଁ ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟ ଜଳ, ରାସ୍ତାଘାଟ, ଜଳସେଚନ ଇତ୍ୟାଦି ବ୍ୟବସ୍ଥା କରିବା ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ଦାୟିତ୍ୱ । କୃଷକ, ଗ୍ରାମ୍ୟ କାରିଗର ଓ ଶ୍ରମଜୀବୀମାନଙ୍କର ଜୀବନ-ଜୀବିକାରେ ସହାୟତା କରିବା ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ଅନ୍ୟତମ ଦାୟିତ୍ୱ । ପାହାଡ଼ିଆ ଅଞ୍ଚଳରେ ବାସ କରୁଥିବା ଲୋକ ଲଘୁବନଜାତ ଦ୍ରବ୍ୟ ବିକ୍ରୀକରି ଉଚିତ ଦର ପାଉଛନ୍ତି କି ନାହିଁ ଗ୍ରାମପଞ୍ଚାୟତ ବୁଝିବେ । ନିଃସହାୟ ବୃଦ୍ଧ/ବୃଦ୍ଧାକୁ ବାର୍ଦ୍ଧକ୍ୟ ଭତ୍ତା ପ୍ରଦାନ, ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କୁ ସବ୍‌ସିଡ଼ିଯୁକ୍ତ ଚାଉଳ/ଗହମ ଯୋଗାଣ, ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ମହିଳାମାନଙ୍କୁ ଆତ୍ମନିଯୁକ୍ତି ଓ ସେମାନଙ୍କର ରୋଜଗାର ବୃଦ୍ଧି ଇତ୍ୟାଦି କାର୍ଯ୍ୟ ଗରିବ ଓ ଅବହେଳିତ ଲୋକଙ୍କ ପାଇଁ ଉଦିଷ୍ଟ ଓ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କ ଉପରେ ନ୍ୟସ୍ତ । ଏଣୁ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଦୃଢ଼ ଓ ପ୍ରଗତିଶୀଳ କରିବାକୁ ହେବ ।

ବିଜୁ ପଟ୍ଟନାୟକଙ୍କର ପରିକଳ୍ପିତ ପ୍ରଗତିଶୀଳ ଓ ଲୋକାଭିମୁଖୀ ପଞ୍ଚାୟତିରାଜ ବ୍ୟବସ୍ଥା କାର୍ଯ୍ୟକାରୀ କରିବା ପାଇଁ ସମ୍ବିଧାନ ନିର୍ଦ୍ଦେଶିତ ୨୯ଟି ବିଷୟ ସମ୍ପୂର୍ଣ୍ଣ ରୂପେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ହସ୍ତାନ୍ତର କରିବା ସହ, ଆବଶ୍ୟକୀୟ ଅର୍ଥ ଓ ଅଧିକାରୀ/କର୍ମଚାରୀ ଯୋଗାଇ ଦେବା ନିମନ୍ତେ ସରକାର ତତ୍ପରତା ପ୍ରକାଶ କରିବା ଆଶା କରାଯାଏ ।



ଅବସରପ୍ରାପ୍ତ ଆଇ.ଏ.ଏସ୍.
ମୈତ୍ରୀବିହାର, ଭୁବନେଶ୍ୱର




ଓଡ଼ିଶାର ମାନ୍ୟବର ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ଗତ ସ୍ୱାଧୀନତା ଦିବସ ଅବସରରେ କଟକ ବାରବାଟୀ ଷ୍ଟାଡ଼ିୟମ୍‌ଠାରେ କଟକ କଲେଜ ଛକସ୍ଥିତ ସରସ୍ୱତୀ ଶିଶୁ ମନ୍ଦିରର ଛାତ୍ରୀ କୁମାରୀ ଶୁଭଶ୍ରୀ ମହାନ୍ତିଙ୍କୁ କଟକ ଜିଲ୍ଲାର କୃତୀ ଓଡ଼ିଶୀ ନୃତ୍ୟ ଶିଳ୍ପୀ ଭାବେ ପୁରସ୍କୃତ କରୁଛନ୍ତି ।

# ଭାରତୀୟ ଇତିହାସରେ ବିଜୁବାବୁଙ୍କ ସ୍ଥାନ

ବିକ୍ରମ ମହାରଣା

ଇତିହାସରେ ଏମିତି କେତେକ ନେତା ଅଛନ୍ତି, ଯେଉଁମାନଙ୍କ ଜନ୍ମ ବିଧି ନିର୍ଦ୍ଦେଶମତେ ସେମାନଙ୍କ ସମସାମୟିକଙ୍କ ପ୍ରସିଦ୍ଧିଠାରୁ ଅଧିକ ଯଶ ରଖିଯିବାରେ । ଏପରି ଜଣେ ବିରଳ ବ୍ୟକ୍ତିତ୍ୱ ହେଲେ ବିଜୁ ପଟ୍ଟନାୟକ । ଓଡିଶାର ପ୍ରତ୍ୟେକ ତାଙ୍କୁ ସ୍ନେହ ଓ ପ୍ରଶଂସାରେ ମନେ ପକାନ୍ତି । ସ୍ୱଳ୍ପ ନୈବେଦ୍ୟ ମଧ୍ୟ ବୁଝାଇ ଦେଇପାରେ ଯେ, 'ଏହି ମହାମାନବଙ୍କ ସାର୍ଥକ ଉପସ୍ଥିତି ଏବଂ ରାଜନୈତିକ ପ୍ରଭାବ ଓଡିଆ ଜନମାନସକୁ ଗତ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ଧରି ଆଚ୍ଛନ୍ନ କରି ରଖି ଆସିଛି ।' ତାଙ୍କର ସାହସ ଏବଂ ନିର୍ଭୀକତା, ନିଜ ରାଜ୍ୟବାସୀଙ୍କ ପ୍ରତି ଉଚ୍ଛୁଳି ଉଠୁଥିବା ଭଲପାଇବା ଏବଂ ନିଜ ପ୍ରିୟ ଓଡିଶା ରାଜ୍ୟପ୍ରତି ପ୍ରତିଶ୍ରୁତିବଦ୍ଧତାର ଯେକୌଣସି ବି ଆକଳନ ପ୍ରକୃତ ନ୍ୟାୟ ପାଇବ ନାହିଁ । ସେ ଜଣେ ଦୁଃସାହସିକ ପ୍ରକୃତିର ବୋଲି ଦେଶ ଓ ଦେଶ ବାହାରେ ଜଣାଶୁଣା ଯାହାଙ୍କୁ ଏକ ବିପଦଜନକ ପରିସ୍ଥିତିରେ ଇଣ୍ଡୋନେସିଆର ଦିବଂଗତ ସୁକର୍ଣ୍ଣୋଙ୍କ ଉଦ୍ଧାର ପରି ଏକ ଆହ୍ୱାନମୂଳକ ଜୀବନମରଣ ଦାୟିତ୍ୱ ଅର୍ପଣ କରାଯାଇଥିଲା । ଇତିହାସରେ ଏହା ଏକ ବିରଳ ଘଟଣା ବୋଲି ସର୍ବଦା ବୋଧ ହୁଏ । ଏହାସହ ଦେଶପ୍ରତି ତାଙ୍କ ଜୀବନର ଏକ ସର୍ବୋଚ୍ଚ କର୍ତ୍ତବ୍ୟ ସଂପାଦିତ ହେଲା, ଯେତେବେଳେ ସେ ନିଜ ଜୀବନକୁ ବାଜି ଲଗାଇ ଅଦମ୍ୟ ସାହସ ଓ ଯୋଦ୍ଧା ମନୋବୃତ୍ତିର ନିଦର୍ଶନ ଦେଇ ଇଣ୍ଡୋନେସିଆର ରାଷ୍ଟ୍ରପତି ସୁକର୍ଣ୍ଣୋଙ୍କୁ ରକ୍ଷା କରି ଆନ୍ତର୍ଜାତୀୟ ପ୍ରସିଦ୍ଧି ଲାଭ କରିଥିଲେ ।

ସେ କାହାପ୍ରତି ଦ୍ୱେଷ ରଖୁନଥିଲେ । ସର୍ବଦା ସଭିଙ୍କୁ ଏପରିକି ତାଙ୍କର ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ ଓ ବିଦ୍ୱେଷୀଙ୍କ ପ୍ରତି ତାଙ୍କର ଅଗାଧ ସ୍ନେହ ଓ ଶୁଭେଚ୍ଛା ଥିଲା । ମାତା ଆଶାଲତା ଦେବୀ ଓ ପିତା ଲକ୍ଷ୍ମୀନାରାୟଣଙ୍କ ଔରସରୁ ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖରେ କଟକର ଏକ ଧନାଢ୍ୟ ତଥା ସଂଭ୍ରାନ୍ତ ପରିବାରରେ ଜନ୍ମ ନିଅନ୍ତି ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ଅଧିକାରୀ ବିଜୟାନନ୍ଦ ପଟ୍ଟନାୟକ । ତୁଳସୀ ଦୁଇପତ୍ରରୁ ବାସେ - ନ୍ୟାୟରେ ପିଲାଦିନର ସ୍କୁଲ ଯିବା ବୟସରୁ ସେ ନିଜର ସାହସିକତାର ଦୃଷ୍ଟାନ୍ତ ରଖିଥିଲେ । ଜଣେ ଶିଳ୍ପପତିର ବିଳାସମୟ ଜୀବନ ଅପେକ୍ଷା ଦେଶ ଓ ରାଜ୍ୟବାସୀଙ୍କ ନିମନ୍ତେ ନିଜର ବୃହତ ଭୂମିକା ନିରେଖି ସେବା ମନୋଭାବ ଜୀବନ ଆପଣେଇ ନେଇଥିଲେ । ଓଡିଶାର ଅର୍ଥନୈତିକ ଅଭିବୃଦ୍ଧି, ଏହାର ଜନସାଧାରଣଙ୍କୁ ଗରିବୀ ଓ ବଂଚନରୁ ମୁକ୍ତି ଦେଇ ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଜୀଇଁବାକୁ ଶିକ୍ଷା ଦେବା, ଏକ ଶାନ୍ତିପୂର୍ଣ୍ଣ ରାଜ୍ୟଭାବେ ପରିଚିତ ଓଡିଶାର ସ୍ୱରକୁ ଜାତୀୟ ରାଜନୀତିରେ ପହଞ୍ଚାଇବା ଓ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବାର୍ଥେ ରାଜନୀତିରେ ପ୍ରବେଶ ତାଙ୍କର ମୂଳଲକ୍ଷ୍ୟ ଥିଲା । ଜଣେ ପୁରୁଖା ନେତା ଭାବେ ରାଜ୍ୟପ୍ରତି କୌଣସି ଅନ୍ୟାୟ ବିରୋଧରେ ସେ ସର୍ବଦା ଲଢେଇ କରୁଥିଲେ । ନିଜର ସକାରାତ୍ମକ ଦୃଷ୍ଟିକୋଣ ଓ ରାଜ୍ୟ ଉନ୍ନତିରେ ଅନବରତ ଉଦ୍ୟମ ରାଜ୍ୟବାସୀଙ୍କ ମନରେ ପରିସ୍ଥିତିର ଦାସ ନ ହୋଇ ନିଜ ଅଧିକାର ସଂପର୍କରେ ଆଶା ଓ ବିଶ୍ୱାସ ଭରି ଦେଉଥିଲା । ଭାରତୀୟ ରାଜନୀତିରେ ସେ ଏମିତି ଏକ ବ୍ୟକ୍ତିତ୍ୱ ଥିଲେ, ଯିଏ ନିଜର ସତେଜ ଅନୁଭବ ସଂପର୍କରେ କ୍ଷମତାରେ ଥିବା କୌଣସି କର୍ତ୍ତୃପକ୍ଷ ବା ରାଜନୈତିକ ବ୍ୟକ୍ତିବିଶେଷଙ୍କୁ ପ୍ରଭାବିତ କରିପାରୁଥିଲେ । ନିଜର ଦୃଢ ଆତ୍ମବିଶ୍ୱାସକୁ ସାକାର କରିବା ସକାଶେ ତଥା ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରି ସେ ଯେକୌଣସି କଷ୍ଟ ସ୍ୱୀକାର କରିବାରେ ପଶ୍ଚାତ୍‌ପଦ ହେଉନଥିଲେ । ସତୁରି ଦଶକର ଶେଷ ଭାଗରେ ସେ କେନ୍ଦ୍ରରେ ଜାତୀୟ ସରକାର ଗଠନରେ ତଥା ରାଜନୈତିକ ସଂକଟମୋଚକ ରୂପେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବା ସହ କ୍ୟାବିନେଟ୍‌ରେ ଏକ ଦାୟିତ୍ୱପୂର୍ଣ୍ଣ ପଦବୀ ଲାଭ କରିଥିଲେ । ତାଙ୍କର ମହତ୍ ଚିନ୍ତା ଏବଂ ଗଠନମୂଳକ ସମ୍ବନ୍ଧ ସ୍ଥାପନରେ ଅନ୍ୟ ରାଜନୈତିକ ଦଳଗୁଡିକୁ ସାହାଯ୍ୟ ମନୋଭାବ ଯୋଗୁଁ ସେ ତାଙ୍କ ସମୟର ଅନ୍ୟ ଅପେକ୍ଷା ଦୁଇପାଦ ଆଗୁଆ ଥିଲେ । ଏକ ସମୃଦ୍ଧ ଓ ସକ୍ଷମ ଓଡିଶା ଗଠନ ପାଇଁ ସେ ଅସନ୍ତୁଷ୍ଟଙ୍କୁ କ୍ଷମା କରିଦେବା ଏବଂ ଅନ୍ୟମାନଙ୍କ ସହ ନୂତନ ଭାଗିଦାରୀ ସ୍ଥାପନ କରିବା କ୍ଷେତ୍ରରେ ସର୍ବଦା ପ୍ରସ୍ତୁତ ଥିଲେ ଏବଂ ଏହା ତାଙ୍କ ସମୟର ଅନ୍ୟ ରାଜନେତାଙ୍କଠାରୁ ତାଙ୍କୁ ସ୍ୱତନ୍ତ୍ର

ରୂପେ ଭିନ୍ନ ପରିଚିତି ଆଣି ଦେଇଥିଲା । ରାଜ୍ୟ ଓ ଜାତୀୟସ୍ତରର ଅନେକ ରାଜନୈତିକ ବ୍ୟକ୍ତିବିଶେଷଙ୍କ ଉପରେ ତାଙ୍କର ଅଖଣ୍ଡ ପ୍ରଭାବକୁ ଏହା ସୂଚାଇ ଥାଏ । ରାଜନୈତିକ ଜୀବନର ଉତ୍ଥାନ ଓ ପତନ ମଧ୍ୟରେ ସେ ନିଜ ଲୋକଙ୍କ ନିକଟରେ ଜଣେ ଚିର ସବୁଜ, ବିଶ୍ୱାସୀ ତଥା ଉତ୍ସର୍ଗୀକୃତ ନେତା ଭାବେ ପରିଗଣିତ ହେଉଥିଲେ ।

ପଣ୍ଡିତ ଜବାହରଲାଲ ନେହରୁଙ୍କ ପ୍ରେରଣାଦାୟୀ ନେତୃତ୍ୱ ଅଧୀନରେ ଜଣେ କଂଗ୍ରେସ ଲୋକ ଭାବେ ସେ ନିଜର ରାଜନୈତିକ ଜୀବନ ଆରମ୍ଭ କରିଥିଲେ । ସେ ନେହରୁଙ୍କ ସ୍ନେହ ଓ ବିଶ୍ୱାସ ଲାଭ କରିପାରିଥିଲେ । ଚାଇନାର ଭାରତ ଆକ୍ରମଣ କାଳ ଓ ପରେ ସେ ଭାରତର ଗୁପ୍ତ ପ୍ରତିରକ୍ଷା ମନ୍ତ୍ରୀ ରୂପେ ଆଦୃତ ହୋଇଥିଲେ । ନିଜ ରାଜ୍ୟରେ ଲୋକପ୍ରିୟତା, ପଣ୍ଡିତ ନେହରୁଙ୍କ ସହିତ ଅନ୍ତରଙ୍ଗତା ଏବଂ ଜଣେ ରାଷ୍ଟ୍ରନେତା ଭାବେ ତାଙ୍କର ସୁଗୁଣାବଳୀ ଯୋଗୁଁ ସେ ଏକଦା ପଣ୍ଡିତ ନେହରୁଙ୍କର ସମ୍ଭାବ୍ୟ ରାଜନୈତିକ ଉତ୍ତରାଧିକାରୀ ରୂପେ ବିବେଚିତ ହୋଇଥିଲେ।

୧୯୬୧ ରୁ ୧୯୬୩ ମସିହା ପର୍ଯ୍ୟନ୍ତ ଓଡିଶାର ମୁଖ୍ୟମନ୍ତ୍ରୀ ପଦରେ ସେ ଆସୀନ ହୋଇଥିଲେ । ଏହି ସମୟ ମଧ୍ୟରେ ସେ କ୍ଷୁଦ୍ର ଓ କୁଟୀର ଶିଳ୍ପ ପ୍ରତିଷ୍ଠା ଉପରେ ପ୍ରାଧାନ୍ୟ ଦେଇ ଓଡିଶାର ଗ୍ରାମାଞ୍ଚଳ ଅର୍ଥନୀତିକୁ ନୂତନ ରୂପ ଦେବା ପାଇଁ ଚେଷ୍ଟା କରିଥିଲେ । ଶିଳ୍ପ ଆନ୍ଦୋଳନପୂର୍ବକ ଓଡିଶାକୁ ଏକ ଶିଳ୍ପୋନ୍ନତ ରାଜ୍ୟରେ ପରିଣତ କରିବା ନିମନ୍ତେ ତାଙ୍କର ଦୂରଦୃଷ୍ଟି ସଫଳ ହୋଇଥିଲା । ରାଉରକେଲା ଇଂଜିନିୟରିଂ କଲେଜ ବର୍ତ୍ତମାନର ଜାତୀୟ ପ୍ରଯୁକ୍ତିବିଦ୍ୟା ଅନୁଷ୍ଠାନ ପ୍ରତିଷ୍ଠା ହେଲା । ପାରାଦ୍ୱୀପ ବନ୍ଦର ହେଲା । ରାଜ୍ୟର ଖଣିଜ ପଦାର୍ଥପୂର୍ଣ୍ଣ ଅଞ୍ଚଳ ସହ ବନ୍ଦରକୁ ଯୋଗାଯୋଗ ପାଇଁ ରାଜ୍ୟ ରାଜପଥ ନିର୍ମାଣ ହେଲା । ରାଜ୍ୟର ଭବିଷ୍ୟତ ସାଫଲ୍ୟ ନିମନ୍ତେ ଦୃଢ ଭିତ୍ତିଭୂମି ନିର୍ମାଣ କରିବା କ୍ଷେତ୍ରରେ ତାଙ୍କ ଉଦ୍ୟମ ପ୍ରଶଂସନୀୟ । କଂଗ୍ରେସ ଦଳର ଆଭ୍ୟନ୍ତରୀଣ ରାଜନୀତିରେ ବିମର୍ଷ ହୋଇ ସେ ଦଳ ଛାଡିଥିଲେ । ସେ ଅନେକ ନିର୍ବାଚନରେ ଅଂଶ ଗ୍ରହଣ କରି ଜୟ ପରାଜୟ ବରଣ କରିଥିଲେ ସୁଦ୍ଧା କେବେ ହେଁ ଭାଙ୍ଗି ନପଡି ଆଶାବାଦୀ ଚାହାଣୀରେ ଭବିଷ୍ୟତକୁ ଦେଖୁଥିଲେ। ଏହା ଓଡିଶା ପାଇଁ ଏକ ସୌଭାଗ୍ୟ ଥିଲା ଯେ, ସେ ପୁନର୍ବାର ୧୯୯୦ ମସିହାରେ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ । ଏହା ଓଡିଶାବାସୀଙ୍କ ପାଇଁ ଏକ ସର୍ବବୃହତ୍ ଓ ନିର୍ଣ୍ଣାୟକ ରାଜନୈତିକ ବିଜୟ ଥିଲା ।

ସେ ଏପରି ଜଣେ ମହାନ ପୁରୁଷ ଥିଲେ, ଯିଏ ଭାରତୀୟ ସମାଜରେ ନାରୀମାନେ ଭୋଗୁଥିବା କ୍ଲେଶ, ଅସହାୟତା ଓ ନିଷ୍ଠୁରତାକୁ ହୃଦୟଙ୍ଗମ କରିପାରିଥିଲେ । କେବଳ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କରେ ନୁହେଁ, ଏଥିସହ ସମସ୍ତ ସରକାରୀ ପଦବୀ ପୂରଣରେ ୩୩% ଆସନ ମହିଳାଙ୍କ ପାଇଁ ସଂରକ୍ଷଣ ରଖି ସେ ନିଜ ଦୂରଦୃଷ୍ଟିର ପରିଚୟ ଦେଇପାରିଥିଲେ । ବିଜୁ ପଟ୍ଟନାୟକଙ୍କର ଏତାଦୃଶ ଭାବନାତ୍ମକ କାର୍ଯ୍ୟପରି ଅନ୍ୟ କୌଣସି ରାଜନୈତିକ କାର୍ଯ୍ୟକଳାପ ଭାରତୀୟ ରାଜନୀତି କିମ୍ବା ସମାଜରେ ଏତେଟା ପ୍ରଭାବ ବିସ୍ତାର କରିପାରିନଥିଲା । ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସୁବିଧା ସୁଯୋଗ କ୍ଷେତ୍ରରେ ମହିଳାମାନଙ୍କୁ କ୍ଷମତା ପ୍ରଦାନ କରିବାରେ ଏହା ଏକ ଅଭୁତପୂର୍ବ ସଫଳତା ସଦୃଶ ଥିଲା । ଗରିବ ଓ ଅଭାବୀ ଲୋକମାନଙ୍କୁ ନ୍ୟାୟ ପ୍ରଦାନ ନିମନ୍ତେ ସେ ସରକାରୀ ଉଦାସୀନତା ଓ ପକ୍ଷପାତ ବିରୋଧରେ ଲଢେଇ ମଧ୍ୟ କରିଥିଲେ। ଏଥିସହ ସମାଜରେ ପଛୁଆ ଶ୍ରେଣୀର ପୁରୁଷ ଓ ମହିଳାଙ୍କ ବିକାଶ କ୍ଷେତ୍ରରେ ଦୈନିକ ମଜୁରୀ ବୃଦ୍ଧି, ଆଦିବାସୀଙ୍କୁ ସେମାନଙ୍କର ଅଧିକାର ପ୍ରଦାନ ପରି ଅନେକ ସାହସିକ ପଦକ୍ଷେପ ଗ୍ରହଣ କରିଥିଲେ । ଗାଁକୁ କାମ ଓ ମା' କୁ ସମ୍ମାନ ସହ ମହତ ବିଚାର ରୂପେ ଭାରତରେ ଆର୍ଥିକ ଅଗ୍ରସର ଓ ଅନଗ୍ରସର ଦୁଇ ଜାତି କେବଳ ଅଛନ୍ତି, ଏଣୁ 'ଗରିବର ଜାତି ନାହିଁ' ବୋଲି ତାଙ୍କର ଟିପ୍ପଣୀକୁ ଆଜି ଆମେ ସ୍ଥଳବିଶେଷରେ ଉଦାହରଣ ରୂପେ ମନେ ପକାଉ ।

ଏହି ଚିତ୍ତାକର୍ଷକ ବ୍ୟକ୍ତିତ୍ୱଙ୍କର ଇତିହାସର ସଂକ୍ଷିପ୍ତ ପ୍ରତିବେଦନ ଆଗାମୀ ପିଢିଙ୍କୁ ତାଙ୍କ ଜୀବନାଦର୍ଶରେ ଅନୁପ୍ରାଣିତ କରିବ - ଏହା ନିଃସନ୍ଦେହ । ଉଚ୍ଚମନା ଏହି ରାଷ୍ଟ୍ରନୀତିଜ୍ଞଙ୍କ ଭାବନା ଏବଂ ଅବଦାନର ଆକଳନ ରାଜ୍ୟ ଓ ଜାତିର ବର୍ତ୍ତମାନ ଓ ଆଗାମୀ ପିଢିର ମନୋଭାବକୁ ଯେ ନିଶ୍ଚିତ ପ୍ରଭାବିତ କରିବ, ଏହା କହିବା ବାହୁଲ୍ୟମାତ୍ର ।



*(ପ୍ରଫେସର ଶ୍ରୀ ସୁଧାକର ପଣ୍ଡାଙ୍କ ଇଂରାଜୀ ଲେଖା ଅନୁଦିତ)*

ସୂଚନା ଓ ଲୋକସଂପର୍କ ବିଭାଗ
ଭୁବନେଶ୍ୱର

# ବିଜୁ ପଟ୍ଟନାୟକ : ଏକ ଅମ୍ଳାନ ବ୍ୟକ୍ତିତ୍ୱ

ରବୀନ୍ଦ୍ର କୁମାର ବେହୁରିଆ

ବର୍ଣ୍ଣାଡ ଶ' କହନ୍ତି- ''ମୁଁ ମୋର ଜୀବନ ପ୍ରଦୀପକୁ ସ୍ୱଳ୍ପ ସମୟପାଇଁ ପାଇଛି । ଏହାକୁ ଅନ୍ୟକୁ ହସ୍ତାନ୍ତର କରିବା ପୂର୍ବରୁ ମୁଁ ଏହାର ପ୍ରଜ୍ୱଳନ ଚାହେଁ । ଏହି ପ୍ରଜ୍ୱଳନର ପ୍ରଧାନ ଆୟୁଧ ହେଉଛି 'ପୌରୁଷ' । ପୌରୁଷ ଦ୍ୱାରା ବ୍ୟକ୍ତିତ୍ୱ ଶାଣିତ ହୁଏ । ସେହିପରି ଏକ ଦୃଢ଼ମନା ବ୍ୟକ୍ତି ହେଉଛନ୍ତି ଓଡ଼ିଶାର ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ । ତାଙ୍କ ବର୍ଣ୍ଣାଢ୍ୟ ବ୍ୟକ୍ତିତ୍ୱର ଅନେକ ସ୍ୱର୍ଣ୍ଣାଭ ଦିଗ୍‌ବଳୟ ରହିଛି । ବିଜୁ ପଟ୍ଟନାୟକଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଏବଂ ରାଷ୍ଟ୍ରୀୟ ନେତୃତ୍ୱ ପାଇଁ ଭାରତ ଗର୍ବିତ । ତାଙ୍କର ଘଟଣାବହୁଳ ଜୀବନୀ କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତ ତଥା ପୃଥିବୀ ପାଇଁ ଏକ ଆଦର୍ଶ । ଓଡ଼ିଶାର ସଂସ୍କୃତି ଓ ସଭ୍ୟତା ସହ ତାଙ୍କର ନିବିଡ଼ତା ତାଙ୍କ ଅମର କୃତିରୁ ସହଜରେ ଅନୁମେୟ ।

ବିଜୁବାବୁ କଟକ ସହରରେ ୧୯୧୬ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତାଙ୍କ ନାମ ଶ୍ରୀମତୀ ଆଶାଲତା ଦେବୀ । ବିଜୁ ପଟ୍ଟନାୟକ ତାଙ୍କ ପିତାଙ୍କର ତୃତୀୟ ସନ୍ତାନ ଥିଲେ । ପିତା ଲକ୍ଷ୍ମୀନାରାୟଣ ସରକାରୀ ଚାକିରି କରୁଥିଲେ । ସେ ୧୮୮୬ ମସିହାରେ ମାଡ୍ରାସର ଖ୍ରୀଷ୍ଟିଆନ ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ୍ କରିଥିଲେ । ତା'ପରେ ସେ ମାସିକ କୋଡ଼ିଏ ଟଙ୍କା ଦରମାରେ ସମ୍ବଲପୁରରେ ନିଜର ଚାକିରି ଜୀବନ ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳରେ ସେ ମୁନ୍‌ସଫ୍ ଭାବରେ କଟକକୁ ସ୍ଥାନାନ୍ତରିତ ହୋଇଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ସେ କୁଳବୃଦ୍ଧ ମଧୁସୂଦନଙ୍କୁ ସମସ୍ତ ସାହାଯ୍ୟ ଓ ସହଯୋଗ କରିଥିଲେ । ଲକ୍ଷ୍ମୀନାରାୟଣବାବୁ ଭଞ୍ଜନଗରରେ ଜନ୍ମଲାଭ କରିଥିଲେ ଓ ତାଙ୍କର ବାଲ୍ୟାବସ୍ଥା ସେହିଠାରେ ହିଁ କଟିଥିଲା । ବିଜୁବାବୁଙ୍କ ମାତା ଆଶାଲତା ଦେବୀ ମଧ୍ୟ ପଶ୍ଚିମବଙ୍ଗର ଏକ ସଂଗ୍ରାମୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ଧର୍ମପରାୟଣା ମହିଳା ଥିଲେ ଏବଂ ସେ ହିଁ ବିଜୁବାବୁଙ୍କ ମନରେ ଦେଶପ୍ରେମର ଅଙ୍କୁରୋଦ୍‌ଗମ କରିଥିଲେ । ପିତା ଲକ୍ଷ୍ମୀନାରାୟଣ କଟକରେ ହିଁ ଜୀବନର ଶେଷ ପର୍ଯ୍ୟନ୍ତ ବାସ କରିଥିଲେ । ତେଣୁ ସେ ଓଡ଼ିଶାର ସଂସ୍କୃତି ସହ ସଂପୂର୍ଣ୍ଣ ପରିଚିତ ହୋଇଥିଲେ । ସେ ଜଣେ ଦେଶପ୍ରେମୀ ଭାବେ ପ୍ରସିଦ୍ଧ ଥିଲେ । ତାଙ୍କର ସ୍ପଷ୍ଟବାଦିତା, ନିର୍ଭୀକତା, ଦେଶପ୍ରେମ ଭାବ ମଧ୍ୟ ବିଜୁବାବୁଙ୍କର ବ୍ୟକ୍ତିତ୍ୱ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା ।

ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଓ. ଜେ.ମିଲ୍‌ମ୍ୟାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କଟକର ମିଶନ ସ୍କୁଲରେ ସେ ଶିକ୍ଷାଲାଭ କରିଥିଲେ । ୧୯୩୨ ମସିହାରେ ପାଟନା ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ କଟକର ରେଭେନ୍‌ସା କଲେଜରେ ନାମ ଲେଖାଇଲେ । ରେଭେନ୍‌ସା କଲେଜରୁ ଆଇ.ଏସ୍‌ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ବିଜୁ ପଟ୍ଟନାୟକ ଏରୋପ୍ଲେନ ଫ୍ଲାଇଙ୍ଗ୍ କ୍ଲବରେ ଯୋଗ ଦେଇଥିଲେ । ସେତେବେଳେ ତାଙ୍କ ବାପା ଚାକିରିରୁ ଅବସର ନେଇସାରିଥିଲେ । ତା'ପରେ Flying Clubରେ ବିଜୁବାବୁଙ୍କ ନାମ ଲେଖାଯାଇଥିଲା । ଈଶ୍ୱରଙ୍କ ଆଶୀର୍ବାଦରୁ ସେ ଜଣେ ଦକ୍ଷ ବିମାନ ଚାଳକ ହୋଇପାରିଥିଲେ । ବିଜୁବାବୁଙ୍କ ପାଇଲଟ୍ ପ୍ରଶିକ୍ଷଣ ଶିକ୍ଷା ମାତ୍ର ୩୬ ମାସ ପାଇଁ ଥିଲା ଏବଂ ସୌଭାଗ୍ୟବଶତଃ ଲକ୍ଷ୍ମୀନାରାୟଣଙ୍କର ୧୨୦୦ ଟଙ୍କା ମାସିକ ବେତନର ମହାରାଜା କୃଷ୍ଣଚନ୍ଦ୍ରଙ୍କ 'ଦିୱାନ୍' ଚାକିରିଟି ମଧ୍ୟ ସେଇ ୩୬ ମାସ ପାଇଁ ହିଁ ଥିଲା । ବିଜୁବାବୁ ନିଜକୁ ଜଣେ ଦକ୍ଷ ପାଇଲଟ ଭାବେ ପ୍ରତିଷ୍ଠା କରିପାରିଲେ । ଲୋକେ ତାଙ୍କୁ 'ଦ୍ୱିତୀୟ ଖାରବେଳ' ବା 'ଆଧୁନିକ କଳିଙ୍ଗ ବୀର' ବୋଲି କହୁଥିଲେ ।

ଛାତ୍ରାବସ୍ଥାରେ ବିଜୁବାବୁ ୧୯୩୨ ମସିହାରେ ତାଙ୍କର ଦୁଇଜଣ ସାଙ୍ଗ ଅମର ଓ ଭ୍ରମରବରଙ୍କ ସହିତ ସାଇକେଲରେ

ପେଶୱାର ଯାତ୍ରା କରିଥିଲେ । ତା'ପରେ ବିଜୁବାବୁ Indian National Airways ରେ Pilot ଭାବେ ଯୋଗ ଦେଲେ । ୧୯୪୨ ମସିହାରେ ସେ 'ଭାରତ ଛାଡ଼' ଆନ୍ଦୋଳନରେ ଯୋଗ ଦେଲେ । ମହାତ୍ମାଗାନ୍ଧୀଙ୍କ ଅହିଂସା ଆନ୍ଦୋଳନ ତାଙ୍କ ଜୀବନରେ ଏକ ଗଭୀର ରେଖାପାତ କରିଥିଲା । ପ୍ରକାଶ ଥାଉ କି, ୧୯୪୦-୪୨ ମସିହାରେ ବିଜୁବାବୁ "Air Transport Command" ର ମୁଖ୍ୟ ଭାବେ କାର୍ଯ୍ୟ ସମ୍ପାଦନ କରିଥିଲେ । ଜୟପ୍ରକାଶ ନାରାୟଣ, ଅରୁଣା ଆସଫ ଅଲ୍ଲୀ, ଅଶୋକ ମେହେଟ୍ଟା, ରାମ ମନୋହର ଲୋହିଆ ଏବଂ ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କ ସହ ମିଶି ବିଜୁବାବୁ ବିଭିନ୍ନ ସ୍ୱାଧୀନତା ସଂଗ୍ରାମ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଏଥିପାଇଁ ୧୯୪୨-୪୫ ମସିହା ପର୍ଯ୍ୟନ୍ତ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା । ୧୯୩୯ ମସିହାରେ ସେ ଏକ ସଂଭ୍ରାନ୍ତ ପରିବାରର ଶ୍ରୀମତୀ ଜ୍ଞାନଦେବୀଙ୍କୁ ବିବାହ କରିଥିଲେ । ବିବାହର ୩ ବର୍ଷ ପରେ ବିଜୁବାବୁ ବ୍ରିଟିଶ ସରକାରଙ୍କ ଦ୍ୱାରା ଗିରଫ ହେଲେ ଏବଂ ଦିଲ୍ଲୀର ରେଡ଼ଫୋର୍ଟ ଜେଲରେ ତାଙ୍କୁ ରଖାଗଲା । ପରେ ଫିରୋଜପୁର ଜେଲ୍ ଏବଂ ସେଠାରୁ କଟକ ଜେଲକୁ ସ୍ଥାନାନ୍ତର କରାଗଲା । ତେଣୁ ତାଙ୍କର ତ୍ୟାଗର ପଟ୍ଟାନ୍ତର ନାହିଁ ।

୧୯୪୭ ମସିହାରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତରେ ପ୍ରଥମଥର ପାଇଁ ଏସିଆନ କଂଗ୍ରେସ ଅନୁଷ୍ଠିତ ହେଲା । ଏହି କଂଗ୍ରେସରେ ପଣ୍ଡିତ ଜବାହରଲାଲ ନେହେରୁ ଅନୁଭବ କରିଥିଲେ ଯେ, ଡଚ ସରକାରଙ୍କ ଦ୍ୱାରା ଡଃ ସୁକର୍ଣ୍ଣୋ ନେତୃତ୍ୱାଧୀନ ଇଣ୍ଡୋନେସିଆ ସରକାର ବହୁ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । କାରଣ ଇଣ୍ଡୋନେସିଆର ବହୁ ବନ୍ଦର ଓ ବିମାନ ବନ୍ଦର ଡଚ ସରକାରଙ୍କ ନିୟନ୍ତ୍ରଣାଧୀନ ହୋଇଯାଇଛି । ନେହେରୁ ବିଜୁ ପଟ୍ଟନାୟକଙ୍କୁ ଇଣ୍ଡୋନେସିଆ ସରକାରଙ୍କୁ ସାହାଯ୍ୟ କରିବା ପାଇଁ ଦାୟିତ୍ୱ ନ୍ୟସ୍ତ କଲେ । ପ୍ରଥମେ ବିଜୁବାବୁ ଇଣ୍ଡୋନେସିଆର ପ୍ରତିନିଧିମାନଙ୍କ ସହ ଆଲୋଚନା କରିଥିଲେ । ଏତଦ୍‌ବ୍ୟତୀତ ଜାଭା, ସୁମାତ୍ରା ଆଦି ସ୍ଥାନରେ ଥିବା ଇଣ୍ଡୋନେସିଆର ପ୍ରତିନିଧିମାନଙ୍କ ସହ ଯୋଗାଯୋଗ ସ୍ଥାପନ କରିବାରେ ସଫଳ ହୋଇଥିଲେ । ନିଜର ଜୀବନକୁ ବିପନ୍ନ କରି ସେ ଇଣ୍ଡୋନେସିଆର ଉପରାଷ୍ଟ୍ରପତି ଡଃ ମହମ୍ମଦ ଓ ପ୍ରଧାନମନ୍ତ୍ରୀ ସାଇରିଆରଙ୍କୁ ସୁମାତ୍ରାରୁ ଦିଲ୍ଲୀ ଆଣିଥିଲେ । ରାଷ୍ଟ୍ରପତି ସୁକର୍ଣ୍ଣୋ ଶ୍ରୀଯୁକ୍ତ ପଟ୍ଟନାୟକଙ୍କୁ ପାଞ୍ଚଶତ କୋଟି ଟଙ୍କାର ଉପହାର ଦେଇଥିଲେ । କିନ୍ତୁ ବିଜୁବାବୁ ଏହି ଟଙ୍କାକୁ ଭାରତବାସୀଙ୍କ ତରଫରୁ ଇଣ୍ଡୋନେସିଆ ଲୋକଙ୍କର ଉନ୍ନତିକଳ୍ପେ ଉତ୍ସର୍ଗ କରିଦେଇଥିଲେ । ଇଣ୍ଡୋନେସିଆ ସରକାରଙ୍କ ତରଫରୁ ବିଜୁ ପଟ୍ଟନାୟକଙ୍କୁ ଇଣ୍ଡୋନେସିଆର ସର୍ବଶ୍ରେଷ୍ଠ 'ଭୂମିପୁତ୍ର' ସମ୍ମାନ ଦିଆଯାଇଥିଲା ।

ବିଜୁବାବୁ ୧୯୪୬ ମସିହାରେ ତାଙ୍କ ରାଜନୈତିକ କ୍ୟାରିଅର ଆରମ୍ଭ କଲେ । ୧୯୪୭ ମସିହାରେ ସେ ପ୍ରଥମ ଥର ପାଇଁ କଟକରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ତାଙ୍କ ରାଜନୈତିକ କ୍ୟାରିଅର ନିମ୍ନରେ ପ୍ରଦାନ କରାଗଲା-

୧୯୫୨-ବିଧାୟକ, ଭଞ୍ଜନଗର

୧୯୫୭-ବିଧାୟକ, ଜଗନ୍ନାଥ ପ୍ରସାଦ

୧୯୬୧-ମୁଖ୍ୟମନ୍ତ୍ରୀ, ଓଡ଼ିଶା

୧୯୬୮-ସାଂସଦ, ରାଜ୍ୟସଭା

୧୯୭୪-ବିରୋଧୀଦଳ ନେତା

୧୯୭୭-ମନ୍ତ୍ରୀ, ଇସ୍ପାତ ଓ ଖଣି, ଭାରତ ସରକାର

୧୯୮୦-ସାଂସଦ

୧୯୮୫-ବିରୋଧୀଦଳ ନେତା, State Assembly

୧୯୯୦-୯୫-ମୁଖ୍ୟମନ୍ତ୍ରୀ, ଓଡ଼ିଶା

୧୯୬୧ ମସିହାରେ ତାଙ୍କ ନେତୃତ୍ୱରେ ବହୁ ସଂଖ୍ୟାଗରିଷ୍ଠତା ନେଇ ଜାତୀୟ କଂଗ୍ରେସ ସରକାର ଗଠନ କଲା ଏବଂ ଶ୍ରୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ନେଲେ । ଯେଉଁ ୧୪ ମାସ ଧରି ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ କାର୍ଯ୍ୟରତ ଥିଲେ ସେ ସମୟ ଓଡ଼ିଶା ଇତିହାସର ଏକ ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଅବିସ୍ମରଣୀୟ ଅବଦାନଗୁଡ଼ିକ ହେଲା :

୧. ଚୌଦ୍ୱାରରେ ଓ.ଟି.ଏମ୍.

୨. କଳିଙ୍ଗ ଟିଉବ୍‌ସ

୩. କଳିଙ୍ଗ ରେଫ୍ରିଜେରେସନ

୪. କଳିଙ୍ଗ ଆଇରନ୍ ୱାର୍କସ

୫. Kalinga Airways

୬. Kalinga Refractories
୭. The Kalinga, a daily Oriya Newspaper
୮. In 1951, he established the international Kalinga prize for popularisation of science and Technology among the people and entrusted the responsibility to the UNESCO.
୯. The Choudwar and Barbil Industrial Belts.
୧୦. The Cuttack-Jagatpur Mahanadi Highway Bridge.
୧୧. The Bhubaneswar Air Port
୧୨. Regional College of Education at Bhubaneswar
୧୩. The Orissa Aviation Centre
୧୪. Paradeep Port
୧୫. The MIG Factory at Sunabeda
୧୬. Thermal Power Plant at Talcher
୧୭. Hydro-Electric Project at Balimela
୧୮. The Orissa University of Agriculture and Technology
୧୯. Engineering and Medical College at Burla
୨୦. The Orissa State Planning Board
୨୧. Reorganisation of districts
୨୨. Ferro Silicon Complex at Theruvali
୨୩. Engineering College at Rourkela
୨୪. Express Highway linking Daitari with Paradeep
୨୫. Sainik School at Bhubaneswar
୨୬. Regional Research Laboratory of the Council of Scientific and Industrial Research, Orissa ଇତ୍ୟାଦି ।

ସ୍ୱାଧୀନତା ପରେ ପଞ୍ଚାୟତିରାଜ ଗଠନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଗଲା । ଭାରତୀୟ ସମ୍ବିଧାନର ୪୦ ଧାରାରେ ରାଜ୍ୟକୁ ଗ୍ରାମପଞ୍ଚାୟତ ଗଠନ ନିମିତ୍ତ ନିର୍ଦ୍ଦେଶ ଦିଆଯାଇଛି । ଏହି ସଂସ୍ଥା ସ୍ୱାୟତ୍ତ ଶାସନର ଏକ ଅଂଶ ରୂପେ କାର୍ଯ୍ୟ କରିବେ ବୋଲି ସ୍ପଷ୍ଟଭାବେ କୁହାଯାଇଛି– *"The state shall take steps to organise village panchayats and endow them with such powers and authority us may be necessary to enable them to function as units of self government."* ସମ୍ବିଧାନ ନିର୍ଦ୍ଦେଶ ଅନୁଯାୟୀ ପଞ୍ଚାୟତିରାଜ ଗଠନ କାର୍ଯ୍ୟ ରାଜ୍ୟ ସରକାର କରିବେ ଓ ତାହାକୁ କେତେକ କ୍ଷମତା ଅର୍ପଣ କରିବେ । ଗାନ୍ଧିଜୀଙ୍କ ଆଦର୍ଶକୁ କାର୍ଯ୍ୟକାରୀ କରିବା ପାଇଁ ସମ୍ବିଧାନରେ ଲିଖିତରୂପେ ଏହାର ବ୍ୟବସ୍ଥା କରାଯାଇଛି । ପ୍ରଥମେ ରାଜସ୍ଥାନରେ ୧୯୫୯ ମସିହା ଅକ୍ଟୋବର ୨ ତାରିଖରେ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ ହୋଇଥିଲା । ଓଡ଼ିଶାରେ ବିଜୁବାବୁଙ୍କ ନେତୃତ୍ୱରେ ୧୯୬୧ ମସିହା ଜାନୁୟାରୀ ୨୬ରେ ଏହା କାର୍ଯ୍ୟକାରୀ ହୋଇଥିଲା ।

ଦ୍ୱିତୀୟଥର ପାଇଁ ବିଜୁବାବୁ ୫.୩.୧୯୯୦ରୁ ୧୫.୩.୧୯୯୫ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀଭାବେ ଦାୟିତ୍ୱ ତୁଲାଇଥିଲେ । ପଞ୍ଚାୟତିରାଜର କାର୍ଯ୍ୟକୁ ଅଧିକ ସରଳ ଓ ଲୋକପ୍ରିୟ କରିବା ପାଇଁ ସେ କ୍ଷମତାର ବିକେନ୍ଦ୍ରୀକରଣକୁ ଗୁରୁତ୍ୱ ପ୍ରଦାନ କରିଥିଲେ । ୭୩ତମ ଏବଂ ୭୪ତମ ସମ୍ବିଧାନ ସଂଶୋଧନ (୧୯୯୨) ଅନୁଯାୟୀ ନିର୍ବାଚନ କମିଶନଙ୍କ ତତ୍ତ୍ୱାବଧାନରେ ପଞ୍ଚାୟତ ନିର୍ବାଚନ କରାଯିବାର ବ୍ୟବସ୍ଥା କରାଗଲା । ଶ୍ରେଣୀ ଅନୁଯାୟୀ ସଂରକ୍ଷଣ ବ୍ୟବସ୍ଥା ହେବା ସଂଗେ ସଂଗେ ମହିଳାମାନଙ୍କୁ ଏଥିରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିବା ନିମିତ୍ତ କେତେକ ପଦବୀ ମଧ୍ୟ ସଂରକ୍ଷଣ କରାଯାଇଛି । ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ୩୩% ସ୍ଥାନ ସଂରକ୍ଷଣ କରାଗଲା । ସେଥିପାଇଁ Amendment Act of 1992 ଓଡ଼ିଶା ବିଧାନସଭାରେ ପ୍ରଣୟନ କରାଗଲା । ଏଥିରେ SC and ST ମହିଳାମାନେ ମଧ୍ୟ ଅନ୍ତର୍ଭୁକ୍ତ । ପଞ୍ଚାୟତିରାଜ ପ୍ରତିଷ୍ଠାନ ପାଇଁ ତାଙ୍କର ଅନାବିଳ ସ୍ନେହ ଓ ଆନ୍ତରିକତା ପାଇଁ ଓଡ଼ିଶାବାସୀ ମାର୍ଚ୍ଚ ୫ ତାରିଖ ତାଙ୍କ ଜନ୍ମ ତାରିଖକୁ ପଞ୍ଚାୟତିରାଜ ଦିବସ ରୂପେ ପାଳନ କରିଆସୁଅଛନ୍ତି ।

ବିଜୁ ଜନତା ଦଳ (୧୯୯୦–୯୫) ଓଡ଼ିଶା ବିଧାନସଭାରେ ସମୁଦାୟ ୧୪୭ ଆସନ ମଧ୍ୟରୁ ୧୨୩ ଆସନରେ ଜୟଯୁକ୍ତ ହୋଇଥିଲା । ବିରୋଧୀଦଳ ମାତ୍ର ୧୦ଟି ଆସନ ଲାଭ କରିଥିଲେ । ବିଜୁବାବୁ ତାଙ୍କ ଶାସନ କାଳରେ ନାରୀ ପ୍ରଗତି, ଆଦିବାସୀ ଉନ୍ନୟନ, ସାଂପ୍ରଦାୟିକ ସଦ୍‌ଭାବ, NRIମାନଙ୍କ ସହଯୋଗରେ ରାଜ୍ୟର ଆର୍ଥିକ ସ୍ଥିତିରେ ଉନ୍ନତି, ବିଭିନ୍ନ ଦୃଢ଼ ପଦକ୍ଷେପମାନ ନେଇଥିଲେ । ତାଙ୍କର ଅନେକ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ବିଜୁବାବୁ ୧୯୯୭ ମସିହା ଅପ୍ରେଲ ୧୭ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ । ଭାରତ, ଇଣ୍ଡୋନେସିଆ ଏବଂ ଓଡ଼ିଶାରେ ଖାତି ଲାଭ କରିଥିବା ଶ୍ରୀ ବିଜୁ ପଟ୍ଟନାୟକ ନିଜର ଦୃଢ଼, ନିଃସ୍ୱାର୍ଥପର କାର୍ଯ୍ୟକଳାପ ପାଇଁ ଆଜି ସାରା ବିଶ୍ୱରେ ମହାନ୍ ହୋଇପାରିଛନ୍ତି । ତାଙ୍କ ମୃତ୍ୟୁରେ ମ୍ରିୟମାଣ ହୋଇ ଭାରତର ଅନ୍ୟତମ ପ୍ରସିଦ୍ଧ ଲେଖକ ମନୋଜ ଦାସ ଲେଖିଛନ୍ତି– *"Perhaps Biju Pattnaik was having a developed innerself which was known to a very few of his fellow beings. He seems to have achieved many things in one life which might be impossible to achieve in a number of lives."*

Selected Bibliography


- Patel, C.B. Orissa Review, Feb-March-2010, p. 60-62
- Facts on File 1947-48
- Seventh Lok Sabha who's who 1980
- Chaturvedi, M. S. History of the Indian Air Force
- Polmka, P. Indonesia since Sukerno
- Orissa Review, April 1994




ଅବସରପ୍ରାପ୍ତ ଅଧ୍ୟାପକ
ଚାନ୍ଦବାଲି, ଭଦ୍ରକ–୭୫୬୧୩୩

# "ଝଡ଼ର ଇଗଲ"- କଳିଙ୍ଗ ପୁତ୍ର ବିଜୁ ପଟ୍ଟନାୟକ

**ବିମଳା ସିଂହ**

ପୁଣ୍ୟଭୂମି, ବୀର ଭୂମି, ଉତ୍କର୍ଷ କଳାର ଭୂମି ଓଡ଼ିଶାର ଅତୀତ ଇତିହାସ ଏକ ଗୌରବମୟ ପୃଷ୍ଠା ମଣ୍ଡନ କରେ ଏ ଜାତିର ଇତିହାସରେ । ଏ ମାଟିର ପାଣି, ପବନରେ ଗଢ଼ା ତା'ର ସବୁଜ ବନାନୀ, ନଦନଦୀର ନିଃସ୍ୱାର୍ଥପରତା, ଝରଣାର କୁଳୁକୁଳୁ ନାଦ, ସାଗର ବକ୍ଷର ନୀଳ ଉର୍ମିମାଳା ପ୍ରତି ଓଡ଼ିଆ ପ୍ରାଣରେ ଏକ ଭିନ୍ନ ସ୍ୱାଦର ଆବେଗ ସୃଷ୍ଟି କରିଥାଏ । ସେହି ମୋହରେ ଛନ୍ଦି ହୋଇ ଅନେକ ଏ ଜାତିର ଗର୍ବ ଭାବରେ ଆମ ପାଖରେ ନିଜର କୀର୍ତ୍ତି ସ୍ଥାପନ କରି ଯାଇଛନ୍ତି । ସେମାନେ କଳା, ସାହିତ୍ୟ, ବିଜ୍ଞାନ, ରାଜନୀତି ସମାଜ ସେବା ଆଦି କ୍ଷେତ୍ରରେ ପାଲଟିଛନ୍ତି ଜଣେ ଜଣେ କିମ୍ବଦନ୍ତୀ ପୁରୁଷ । ସେମାନେ ଥିଲେ ଦିବ୍ୟଦୃଷ୍ଟି ସମ୍ପନ୍ନ ଓ ଦେବ ପ୍ରେରିତ, ତ୍ୟାଗୀ, ସାଧକ ଏବଂ ସଂଗ୍ରାମୀ । ସେମାନଙ୍କର ନିରବଚ୍ଛିନ୍ନ ସାଧନା ଏଇ ଓଡ଼ିଆ ଜାତିକୁ ବିଶ୍ୱ ଦରବାରରେ ଏକ ସ୍ୱତନ୍ତ୍ର ସ୍ଥାନ ହାସଲ କରାଇବାରେ ଗୋଟିଏ ଗୋଟିଏ ଜ୍ୱଳନ୍ତ ଉଦାହରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେମାନେ ଇତିହାସ ପୃଷ୍ଠାରେ ପାଲଟିଛନ୍ତି ଜଣେ ଜଣେ ନାୟକ ଏବଂ କର୍ମରେ 'ଝଡ଼ର ଇଗଲ' ।

ସେହି ନାୟକମାନଙ୍କ ମଧ୍ୟରୁ ଓ ଝଡ଼ର ଇଗଲ ଆଖ୍ୟାଲାଭ କରିଥିବା ଅମ୍ଳାନ ପ୍ରତିଭା ଆଉ କେହି ନୁହେଁ, ସେ ହେଉଛନ୍ତି ପ୍ରାଚୀନ ସହର କଟକର ତୁଳସୀପୁରସ୍ଥ 'ଆନନ୍ଦ ଭବନ'ରେ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ ଆଦର୍ଶ ଦମ୍ପତି ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଏବଂ ଶ୍ରୀମତୀ ଆଶାଲତା ଦେବୀଙ୍କ ଔରସରୁ ଏ ମାଟିକୁ ଓହ୍ଲାଇ ଆସିଥିବା ଜଣେ କିମ୍ବଦନ୍ତୀ ପୁରୁଷ ବିଜୟାନନ୍ଦ ପଟ୍ଟନାୟକ ତଥା ଏ ମାଟିର ପ୍ରତି ଅଣୁରେ ପରିଚିତ 'ବିଜୁ ବାବୁ' । କାମରେ ଏବଂ କଥାରେ ଯାହାଙ୍କର ଝରୁଥିଲା ବିପ୍ଳବର ଆହ୍ୱାନୀ ଏବଂ ଅଙ୍ଗୀକାରବଦ୍ଧତା । ଦଂଶନକୁ ଦର୍ଶନରେ ପରିଣତ କରିବାର ସମସ୍ତ କଳା ତାଙ୍କରି ପାଖରେ ଥିଲା । ବିଶ୍ୱସ୍ତତା ହିଁ ତାଙ୍କ ଜୀବନର ସାର୍ଥକତା । ଜନଜୀବନକୁ ଭଲ ପାଉଥିବା ଏହି ବ୍ୟକ୍ତିତ୍ୱଙ୍କର ସିଂହାସନ ଥିଲା ଅରଣ୍ୟ । ସମାଜପ୍ରତି ତାଙ୍କ ହୃଦୟର ନିଭୃତ କୋଣରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଝରୁଥିଲା ପ୍ରେମ ।

ଅନନ୍ୟ ବ୍ୟକ୍ତିତ୍ୱ ଥିଲା ତାଙ୍କର ପିଲାଟି ଦିନରୁ । ସ୍କୁଲରୁ ଶିକ୍ଷା ସମାପ୍ତ ପରେ ରେଭେନ୍‌ସା କଲେଜରେ ଶିକ୍ଷାଲାଭ କରିଥିଲେ ସେ ବିଜ୍ଞାନରେ । ବି.ଏସ୍.ସି. କୃତିତ୍ୱର ସହ ପାସ୍ କଲାପରେ ଆଇ.ଏ.ଏଫ୍‌ରେ ଜଣେ ପାଇଲଟ୍ ଭାବରେ ସେ ଯୋଗ ଦେଇଥିଲେ । ତାଙ୍କର ସାହସିକତା ପାଇଁ ସେ ଯେତେ ଚର୍ଚ୍ଚିତ ଥିଲେ ଜଣେ ଦକ୍ଷ ଖେଳାଳି ଏବଂ ସାଇକେଲ୍ ଚଢ଼ାଳି ଭାବରେ ମଧ୍ୟ ତାଙ୍କର ପରିଚିତ ଥିଲା । ଭ୍ରମଣକୁ ସେ ଭଲ ପାଉଥିଲେ । ତେଣୁ କଟକରୁ ପେଶୱାର ପର୍ଯ୍ୟନ୍ତ ଦୀର୍ଘ ୪୦୦୦ କି.ମି. ପଥ ସେ ସାଇକେଲରେ ଯାତ୍ରା କରି ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିଲେ, ଏଇ ଉତ୍କଳ ମାତାର ଯୋଗ୍ୟତମ ସନ୍ତାନ । ନିଜ ମାଟି, ମାତୃଭୂମି ଏବଂ ମାତୃଭାଷାକୁ ଭଲ ପାଇବା ଥିଲା ତାଙ୍କର ଅନ୍ୟ ଏକ ଦିଗ । ସେଥିପାଇଁ ଇଂରେଜ କବଳରୁ ନିଜ ମାତୃଭୂମିକୁ ରକ୍ଷା କରିବା ପାଇଁ ସେ ହସି ହସି କାରାବରଣ କରିଥିଲେ ଜଣେ ସଂଗ୍ରାମୀ ଭାବରେ ।

ଗାନ୍ଧୀ ଏବଂ ନେହେରୁଙ୍କର ସେ ଥିଲେ ପଟ୍ଟଶିଷ୍ୟ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସହ ତାଙ୍କର ଅତି ନିବିଡ଼ ସମ୍ପର୍କ ଥିଲା । ତେଣୁ ଲୋକମାନଙ୍କର ଦୁଃଖର ସୁଖର ସାଥୀରେ ଥିଲେ ସିଏ । ନେତାର ସେବାରେ ଆନନ୍ଦ ପାଉଥିଲେ । ଏ ମାଟିର ମମତାରେ ସେ ଛନ୍ଦି ହୋଇ ଯାଇଥିଲେ । ସେଥିପାଇଁ ଏ ମାଟିର ମୁକ୍ତି ପାଇଁ ସଂଗ୍ରାମ କରି ୧୯୪୩ ମସିହାରେ ଜେଲ୍ ଯାଇ ୧୯୪୫ରେ ପାରୋଲରେ ଆସିଥିଲେ ମଧ୍ୟ ତାଙ୍କ ମନକୁ ଦୁଃଖ ସ୍ପର୍ଶ କରି ନ ଥିଲା ।

ଜଣେ ଦୁଃସାହସିକ ପାଇଲଟ୍ ଭାବରେ ସେ କେବଳ ଭାରତବର୍ଷରେ ସୀମିତ ନ ଥିଲେ ବରଂ ଆନ୍ତର୍ଜାତିକ କ୍ଷେତ୍ରରେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ନେହେରୁଙ୍କ ଦ୍ୱାରା ନିଯୁକ୍ତିପ୍ରାପ୍ତ ଏଇ ଦକ୍ଷ, ସାହସୀ ପାଇଲଟ୍ ସଂକଟ ସମୟରେ ଇଣ୍ଡୋନେସିଆର ତତ୍କାଳୀନ ରାଷ୍ଟ୍ରପତି ସୁକର୍ଣ୍ଣୋଙ୍କୁ ବିପ୍ଳବୀମାନଙ୍କ

କବଳରୁ ଉଦ୍ଧାର କରିବା ଦାୟିତ୍ୱ ନେଇ ନିରାପଦରେ ତାଙ୍କୁ ଆକାଶପଥରେ ନେଇ ଆସିଥିଲେ । ସେଇଥିପାଇଁ ବିଜୁ ପଟ୍ଟନାୟକ ହେଉଛନ୍ତି ପ୍ରଥମ ଓଡ଼ିଆ ସୁଦୂର ଇଣ୍ଡୋନେସିଆର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ଉପାଧି ମଣ୍ଡନ କରିବାରେ । ଉତ୍କଳୀୟ ପରମ୍ପରାର ପ୍ରତୀକ ସ୍ୱରୂପ ସାଧବ ପୁଅମାନେ ଦରିଆପାରି ହୋଇ କାର୍ତ୍ତିକ ପୂର୍ଣ୍ଣମୀରୁ ଯେଉଁ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ଇଣ୍ଡୋନେସିଆ ଆଦି ଅଞ୍ଚଳ ସହିତ ବାଣିଜ୍ୟ ବ୍ୟବସାୟ ଚଳାଇ ଆସୁଥିଲେ, ସେଇ ପରମ୍ପରାକୁ ଅକ୍ଷୁଣ୍ଣ ରଖିବାକୁ ଏହା ଥିଲା ତାଙ୍କର ମନର କଥା । ଆଜି ପର୍ଯ୍ୟନ୍ତ ସେଇ ସୁକର୍ଣ୍ଣୋ ପରିବାର ସହିତ ପାରିବାରିକ ସଂପର୍କ ରହି ଆସିଛି ବିଜୁଙ୍କ ପରିବାରର ।

ଏହି ଜନଗଣର ନେତା ନିଜର ନିର୍ଭୀକତା, ସଚ୍ଚୋଟତା ଆଉ ସାହସିକତା ପାଇଁ ଉତ୍କଳର ପୁରପଲ୍ଲୀଠାରୁ ଦିଲ୍ଲୀ ଦରବାରଯାଏ ଅତି ସୁପରିଚିତ ଥିଲେ । ତାଙ୍କର ନିଷ୍ଠାପରତା ପାଇଁ ସ୍ୱାଧୀନ ଭାରତବର୍ଷର ଅନେକଥର କେନ୍ଦ୍ରମନ୍ତ୍ରୀ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ ସତ, ମାତ୍ର ଓଡ଼ିଶାକୁ ବିଶ୍ୱଦରବାରରେ ଏକ ସ୍ୱତନ୍ତ୍ର ସ୍ଥାନ ହାସଲ କରାଇବା ପଛରେ ସେ ଅନେକ ଦୃଷ୍ଟାନ୍ତମୂଳକ ପଦକ୍ଷେପ ନେଇଥିଲେ । ସେଥିମଧ୍ୟରୁ ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା କଳିଙ୍ଗ ଟିଉବସ୍, କଳିଙ୍ଗ ଏୟାର ଲାଇନ୍ସ ଏବଂ କଳିଙ୍ଗ ପୁରସ୍କାର ପ୍ରତିଷ୍ଠା କରିଥିଲେ । ଏଥି ସହିତ ଚୌଦ୍ୱାର ଓ.ଟି.ଏମ୍.ମିଲ୍ ତାଙ୍କର ମାନସ ସନ୍ତାନ ଥିଲା । କଳିଙ୍ଗ ରିଫ୍ରାକଟରିଜ୍ ପ୍ରତିଷ୍ଠା ଥିଲା ତାଙ୍କର ଅନ୍ୟ ଏକ ପ୍ରଚେଷ୍ଟା ।

ରାଜନୀତି କ୍ଷେତ୍ରରେ ମଧ୍ୟ ସେ ଥିଲେ ଧୂରୀଣ । କେନ୍ଦ୍ରାପଡ଼ା ନିର୍ବାଚନରୁ ସେ କ୍ରମଶଃ ୩ ଥର ଜିତି ହ୍ୟାଟ୍ରିକ୍ ଅର୍ଜନ କରିଥିଲେ । ମୁଖ୍ୟମନ୍ତ୍ରୀ ଭାବରେ ସେ ଥିଲେ ଅନନ୍ୟ । ଏଭଳି ଓଡ଼ିଶାବାସୀଙ୍କ ଦୁଃଖରେ ନିଜକୁ ସମଭାଗୀ କରି ମୁଖ୍ୟମନ୍ତ୍ରୀ ପଦରେ ଥାଇ ମଧ୍ୟ ସାଇକେଲ୍‌ରେ ସଚିବାଳୟ ଯିବା ଆସିବା କରିବା ଏହା ରାଜନୈତିକ ଇତିହାସରେ ବିରଳ । ଏତଦ୍‌ବ୍ୟତୀତ ମୋରାରଜୀ ଦେଶାଇ ଏବଂ ଚରଣସିଂହଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ ସେ ଖଣି, ଇସ୍ପାତ ଓ କୋଇଲା ବିଭାଗ ମନ୍ତ୍ରୀ ରୂପେ ଦାୟିତ୍ୱ ସୁଚାରୁରୂପେ ତୁଲାଇଥିଲେ । ସ୍ୱାଧୀନଚେତା ଏବଂ ସ୍ୱାଭିମାନୀ 'ବିଜୁ'ବାବୁ କିଛି ରାଜନୈତିକ ବ୍ୟକ୍ତିଙ୍କୁ ଶିକ୍ଷାଦେବା ପାଇଁ ଗଢ଼ିଥିଲେ 'ଉତ୍କଳ କଂଗ୍ରେସ' । ଏଇ ବିଚକ୍ଷଣ କୂଟନୀତିଜ୍ଞ ଏଥିରେ ସଫଳ ହୋଇଥିଲେ ମଧ୍ୟ । ଜଣେ ସ୍ରଷ୍ଟା, ଦ୍ରଷ୍ଟା, ତ୍ୟାଗୀ, ନିର୍ଭୀକ ପାଇଲଟ ଓ ଶାସକ ଉପଦେଶବିତ୍ ନିଜର ଆଚାର ବିଚାର ପାଇଁ କିଣି ପାରିଥିଲେ ସବୁ ଉତ୍କଳୀୟ ମନ ଓ ପ୍ରାଣକୁ । ବିଭିନ୍ନ ଶିଳ୍ପ ପ୍ରତିଷ୍ଠା ତାଙ୍କର ନିଶା ଥିଲା । ପାଲି ଓ ସଂସ୍କୃତ ଭାଷା, ବୌଦ୍ଧ ଏବଂ ଜୈନ ଧର୍ମର ପ୍ରଚାର ପ୍ରସାର ରକ୍ଷା ନିମନ୍ତେ ଏବଂ ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ବଜାୟ ରଖିବା ପାଇଁ ଅନେକ ଆଖିଦୃଶିଆ ପଦକ୍ଷେପ ସେ ନେଇଥିଲେ । କୌଣସି ବିପଦ ବା ସଂକଟରେ ସେ ଭାଙ୍ଗିପଡ଼ି ନ ଥିଲେ । ଜଣେ ସଚ୍ଚୋଟ ରାଜନୀତିଜ୍ଞ, ଉତ୍କଳ ମାତାର ଯୋଗ୍ୟ ସାରଥି, ଦିଗଦ୍ରଷ୍ଟା ଓ ବୀରପୁଙ୍ଗବ 'ବିଜୁବାବୁ' ଥିଲେ ପ୍ରକୃତରେ 'ଜନନେତା' । ସମସ୍ତ ପ୍ରକାର ଝଡ଼ର ମୁକାବିଲା କରିବାରେ ଥିଲେ ଦକ୍ଷ ଓ ପାରଙ୍ଗମ । ଜଣେ ନିରହଙ୍କାରୀ ବ୍ୟକ୍ତି ଭାବରେ ସେ ଛାଡ଼ି ଯାଇଛନ୍ତି ଅନେକ ସ୍ୱାକ୍ଷର । କାରଣ କେନ୍ଦ୍ର ମନ୍ତ୍ରୀଠାରୁ ଆରମ୍ଭ କରି ମୁଖ୍ୟମନ୍ତ୍ରୀ ପଦ ପର୍ଯ୍ୟନ୍ତ ସେ ଆସନ ଅଳଙ୍କୃତ କରିଥିଲେ ମଧ୍ୟ ପ୍ରତ୍ୟେକ ବ୍ୟକ୍ତି ସତ୍ତା ପାଖରେ ଅତି ପରିଚିତ ଥିଲେ । ଚିହ୍ନୁଥିଲେ ପ୍ରତି ପ୍ରତିଭାକୁ, ଦୁଷ୍ଟ ଜନତାକୁ । ଏହି ବିରଳ ବ୍ୟକ୍ତିତ୍ୱ ଆଗରେ ମୁଣ୍ଡ ନଇଁ ଆସୁଥିଲା । ପ୍ରକୃତରେ ସେ ଥିଲେ ଏ ଜାତିର ଗର୍ବ, ମାଟିର ମଣିଷ ଆଉ କଳିଙ୍ଗ ବୀର । ଏ ଜାତିକୁ ସ୍ଥିର ଶାସନ ଦେବାରେ, ମନୁଆ ରାଜାଭଳି ଅନେକ ଅସମ୍ଭବ କାର୍ଯ୍ୟକୁ ସମ୍ଭବ କରିପାରୁଥିବା ଏବଂ ସମସ୍ତଙ୍କୁ ହତଚକିତ କରି ପାରୁଥିବା ଏହି ବ୍ୟକ୍ତିତ୍ୱ ଏ ମାଟିରେ ବିରଳ । ସ୍ୱାଧୀନଭାରତ ଇତିହାସରେ ଅନେକ ନେତା ଆସିଛନ୍ତି ଯାଇଛନ୍ତି । କିନ୍ତୁ ଏଇ ଆଦର୍ଶମୟ ନିରହଙ୍କାରୀ, କର୍ତ୍ତବ୍ୟନିଷ୍ଠ, ସାହସୀ, ତ୍ୟାଗୀ, ବୀରପୁଙ୍ଗବ ସଂକଳ୍ପବଦ୍ଧ ବ୍ୟକ୍ତିତ୍ୱଥିବା ରାଜନୈତିଜ୍ଞ ନିଶ୍ଚିତ ଭାବରେ ଆଗ ଧାଡ଼ିର ମଣିଷ, ଏହା ନିଃସନ୍ଦେହ । ଅନେକ ଝଡ଼କୁ ସାମ୍ନା କରି ଜୀବନର ସମସ୍ତ ସୁବାସକୁ ଛାଡ଼ି ଯାଇଥିବା ଏହି ମହାନ ନେତା, ବ୍ୟକ୍ତି ଇତିହାସର ଆଇନାରେ ଝଲସୁଛନ୍ତି ତାଙ୍କର ଆବର୍ତ୍ତମାନରେ ମଧ୍ୟ । ସେ ମରି ମଧ୍ୟ ଅମର । ସେ ଛାଡ଼ି ଯାଇଥିବା ସୁବାସକୁ ଆଜିର ପ୍ରତି ଓଡ଼ିଆ ଯଦି ନିଜ ଭିତରେ ସାଇତି ରଖିବ ତେବେ ତାହା ହେବ ତାଙ୍କ ପାଇଁ ଶ୍ରେଷ୍ଠ ସମ୍ମାନ । ଆସନ୍ତୁ ସେ ଛାଡ଼ି ଯାଇଥିବା ସ୍ୱପ୍ନରେ ମଜ୍ଜିଯିବା ପାଇଁ ସଂକଳ୍ପବଦ୍ଧ ହେବା । ଯାହା ହେବ ଏଇ 'ଝଡ଼ର ଇଗଲ'-କଳିଙ୍ଗପୁତ୍ର ବିଜୁ ପଟ୍ଟନାୟକଙ୍କୁ ସର୍ବଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।



ଶିକ୍ଷୟିତ୍ରୀ,
ସରକାରୀ ଉଚ୍ଚ ବିଦ୍ୟାଳୟ,
ଖଣ୍ଡଗିରି, ଭୁବନେଶ୍ୱର-୩୦

# ସମୃଦ୍ଧ ଓଡ଼ିଶାର ସ୍ୱପ୍ନଦ୍ରଷ୍ଟା ବିଜୁ ପଟ୍ଟନାୟକ

ପ୍ରତାପରୁଦ୍ର ବେଉରାୟ

ଓଡ଼ିଶା ରାଜ୍ୟକୁ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବାକୁ ବିଜୁବାବୁ ହିଁ ସ୍ୱପ୍ନ ଦେଖିଥିଲେ ଆଉ ଏହାକୁ ସାକାର କରିବାକୁ ଉଦ୍ୟମ କରି ସଫଳ ହୋଇଥିଲେ । ଉତ୍କଳ ମାତାର ଜଣେ ସୁଯୋଗ୍ୟ ସନ୍ତାନଭାବେ ଓଡ଼ିଶାର ଗର୍ବ ଓ ଗୌରବକୁ ଜାତୀୟ ସ୍ତରରେ ପହଞ୍ଚାଇବାରେ ସେ ଥିଲେ ଏକନିଷ୍ଠ ସଂଗ୍ରାମୀ । ଜୀବନର ପ୍ରତିଟି ମୁହୂର୍ତ୍ତକୁ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ବ୍ୟୟକରି ଆଜି କୋଟି ଓଡ଼ିଆଙ୍କ ହୃଦୟରେ ବିରାଜମାନ କରିଅଛନ୍ତି । ବିଜୁବାବୁଙ୍କ ଭଳି ଜଣେ ବୀରପୁରୁଷଙ୍କ ବଳିଷ୍ଠ ନେତୃତ୍ୱରେ ଓଡ଼ିଶା ଆଜି ଜାତୀୟ ସ୍ତରରେ ନିଜକୁ ଜାହିର କରିବାକୁ ସକ୍ଷମ ହୋଇଛି ବୋଲି ସ୍ୱୀକାର କରିବାକୁ ହେବ ।

ଆଧୁନିକ ଓଡ଼ିଶାର ନିର୍ମାତା, ପ୍ରବାଦ ପୁରୁଷ, ସ୍ୱପ୍ନର ସମ୍ରାଟ୍ ବିଜୟାନନ୍ଦ ପଟ୍ଟନାୟକଙ୍କ ଜନ୍ମ ହେଉଛି ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକ ସହରରେ । ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତା ଆଶାଦେବୀଙ୍କ ସୁଯୋଗ୍ୟ ତଥା ତୃତୀୟ ସନ୍ତାନ ଥିଲେ ବିଜୁ । ବାଲ୍ୟକାଳୁ ତାଙ୍କଠାରେ ଥିବା ବହୁମୁଖୀ ପ୍ରତିଭାର ସ୍ଫୁରଣ ହୋଇଥିଲା । ଜୀବନରେ ବଡ଼ ହେବାର ଲକ୍ଷ୍ୟ ଓ ଅଭିଳାଷ ଛାତ୍ରାବସ୍ଥାରୁ ପରିପ୍ରକାଶ ହୋଇଥିଲା । କଟକସ୍ଥିତ ମିଶନ ପ୍ରାଥମିକ ବିଦ୍ୟାଳୟରୁ ଶିକ୍ଷାରମ୍ଭ କରି ପରେ ରେଭେନ୍ସା କଲିଜିଏଟ୍ ସ୍କୁଲରେ ଅଧ୍ୟୟନ କଲେ । ୧୯୩୨ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ପ୍ରବେଶିକା ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ । ରେଭେନ୍ସା କଲେଜରେ ଆଇ.ଏସ୍‌ସି. ପଢୁଥିବାବେଳେ କଟକରୁ ପେଶାୱାର ପର୍ଯ୍ୟନ୍ତ ସାଇକେଲ୍ ଯୋଗେ ଦୁଃସାହସିକ ଯାତ୍ରା କରି ସମସ୍ତଙ୍କୁ ଚମତ୍କୃତ କରି ଦେଇଥିଲେ । ବି.ଏସ୍‌ସି. ପଢୁଥିବାବେଳେ ଜଣେ ବୈମାନିକ ହେବା ପାଇଁ ଇଚ୍ଛା କରିଥିଲେ ଏବଂ ପରେ ଟ୍ରେନିଂରେ ଯୋଗ ଦେଇ ୧୯୩୬ ମସିହାରେ ଇଣ୍ଡିଆନ ନ୍ୟାସନାଲ ଏୟାରୱେଜରେ ପାଇଲଟ ରୂପେ ଯୋଗ ଦେଇଥିଲେ । ଜଣେ ସଫଳ ପାଇଲଟ ହୋଇ ଓଡ଼ିଶାର ସୁନାମକୁ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠା କରାଇଥିଲେ ।

ଓଡ଼ିଶା ଓ ଭାରତବର୍ଷର ବହୁ ତୁଙ୍ଗନେତାଙ୍କ ସଂସ୍ପର୍ଶରେ ସେ ନିଜ ଛାତ୍ରାବସ୍ଥାରେ ଆସିବା କମ୍ ଗୌରବର କଥା ନୁହେଁ । ୧୯୨୬ ମସିହାରେ ମହାତ୍ମାଗାନ୍ଧୀ କଟକର ସ୍ୱରାଜ ଆଶ୍ରମକୁ ଆଗମନ କରିଥିଲେ । ସେତେବେଳେ ବିଜୁବାବୁଙ୍କ ବୟସ ମାତ୍ର ୧୦ ବର୍ଷ । ପ୍ରବଳ ଜନଗହଳିକୁ ଭ୍ରୂକ୍ଷେପ ନ କରି ଗାନ୍ଧୀଙ୍କ ସହିତ କରମର୍ଦ୍ଦନ କରିଥିଲେ । ଏଥିପାଇଁ ଗୋରା ପୋଲିସ୍ ଏସ୍.ପି. ହାରଗ୍ରୀଭ୍ ସାହେବଙ୍କଠାରୁ ଲାଠିମାଡ଼ ଖାଇବାକୁ ପଡ଼ିଥିଲା । ଏହି ଅବସରରେ ଗାନ୍ଧିଜୀ ବିଜୁଙ୍କୁ ଆଶୀର୍ବାଦ କରି ଭବିଷ୍ୟତ୍‌ରେ ଜଣେ ବଡ଼ ମଣିଷ ହେବ ବୋଲି କହିଥିଲେ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ବାଲ୍ୟକାଳୁ ତାଙ୍କଠାରେ ମହାନ୍ ଜନନାୟକ ହେବାର ସୂଚନା ମିଳିଥିଲା ।

ମୋ' ଓଡ଼ିଶା - ଏହି କଥା ହିଁ ବିଜୁବାବୁ କହିଥିଲେ । ଓଡ଼ିଶାକୁ ଭଲପାଉଥିବା ଜଣେ ମହାନ୍ ଦେଶ ଭକ୍ତ ଭାବେ ବିଜୁବାବୁ ସର୍ବଦା ସାହସିକତା ପ୍ରଦର୍ଶନ କରିଥିଲେ । ତାଙ୍କର ଦୃଢ଼ ଇଚ୍ଛା ଶକ୍ତି, ବଳିଷ୍ଠ ନେତୃତ୍ୱ, ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଯୋଗୁଁ ଓଡ଼ିଶା ଆଜି ଏକ ବିକଶିତ ରାଜ୍ୟ ରୂପେ ଦଣ୍ଡାୟମାନ ହେବାକୁ ଯାଉଛି । ସେ ଦୀର୍ଘକାଳ ଓଡ଼ିଶାର କ୍ଷମତା ରାଜନୀତିରେ ନ ରହିଥିଲେ ମଧ୍ୟ ଓଡ଼ିଶାକୁ ବିକାଶ ପଥରେ ଆଗେଇ ନେବାରେ ସର୍ବଦା ଚେଷ୍ଟିତ ଥିଲେ । ବିଜୁବାବୁ ହିଁ ସମୃଦ୍ଧ ଓଡ଼ିଶାର ନିର୍ମାତା ଥିଲେ । ୧୯୬୧ ମସିହା ଜୁନ ୨୩ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କଲେ ବିଜୁବାବୁ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଓଡ଼ିଶାରେ ନିର୍ମାଣ ଯୁଗର ଶୁଭାରମ୍ଭ ହେଲା । ତାଙ୍କର ଏକାନ୍ତ ଚେଷ୍ଟା ଓ ଆନ୍ତରିକତା ପାଇଁ ଓଡ଼ିଶାରେ ପାରାଦ୍ୱୀପ ବନ୍ଦର ନିର୍ମାଣ ହେବା ସମ୍ଭବ ହେଲା । ସମସ୍ତ ପ୍ରତିବନ୍ଧକକୁ ଆଡ଼େଇ ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଶୁଭ ଦେବା

ନିମିତ୍ତ ଓଡ଼ିଶା ଆସିଥିଲେ । ଭାରତର ଗଭୀରତମ ବୃହତ୍ ବନ୍ଦର ଭାବେ ପାରାଦ୍ୱୀପ ୧୯୬୬ ମସିହାରେ ଦେଶ ଓ ଜାତିର ପ୍ରଗତିରେ ଉତ୍ସର୍ଗୀକୃତ ହେଲା । ପାରାଦ୍ୱୀପ ବନ୍ଦର ବ୍ୟତୀତ ଜାତୀୟ ରାଜପଥ, ରାଉରକେଲା ଆଞ୍ଚଳିକ ଇଞ୍ଜିନିୟରିଂ କଲେଜ, ସୁନାବେଡ଼ା ମିଗ୍ କାରଖାନା, ଚାରବାଟିଆ ମିଲିଟାରୀ ବିମାନ ଅବତରଣ କେନ୍ଦ୍ର, ବୁର୍ଲା ଇଞ୍ଜିନିୟରିଂ କଲେଜ, ନାଲକୋ ଆଲୁମିନିୟମ୍ ପ୍ରକଳ୍ପ, କୃଷି ଏବଂ ବୈଷୟିକ ବିଶ୍ୱବିଦ୍ୟାଳୟ, ବାଲିମେଳା ଡ୍ୟାମ୍ ପ୍ରୋଜେକ୍ଟ, ବରଗଡ଼ ସିମେଣ୍ଟ କାରଖାନା, ବୁର୍ଲା ଓ ବ୍ରହ୍ମପୁର ଓ ଜ୍ୟୋତିବିହାର, ସମ୍ବଲପୁରଠାରେ ଦୁଇଗୋଟି ନୂଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସହ ଓଡ଼ିଶାର ୧୩ ଗୋଟି ଜିଲ୍ଲାକୁ ୩୦କୁ ବୃଦ୍ଧି କରିବା ଥିଲା ବିଜୁଙ୍କ ଯୁଗାନ୍ତକାରୀ ପଦକ୍ଷେପ ।

ଗ୍ରାମପଞ୍ଚାୟତକୁ ସୁଦୃଢ଼ କରିବା ପାଇଁ ବିଜୁବାବୁଙ୍କ ଉଦ୍ୟମ ଚିରସ୍ମରଣୀୟ । ଷଷ୍ଠ ଦଶକରେ ବିଜୁବାବୁ କହିଥିଲେ ଯେ– 'ସରପଞ୍ଚ ହେଉଛି ପଞ୍ଚାୟତର ମୁଖ୍ୟ । ପଞ୍ଚାୟତସ୍ତରରେ ମହିଳାମାନଙ୍କୁ ସୁବିଧା ସୁଯୋଗ ଦେବା ପାଇଁ ସେ ଅନେକ ଯୋଜନା ହାତକୁ ନେଇଥିଲେ । ନିର୍ବାଚନରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣ କରି ନାରୀ ଜାତିକୁ ସମ୍ମାନ ପ୍ରଦାନ କରିଥିଲେ । ମହିଳାମାନଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ନିଯକ୍ତିଦେବା ଭଳି ଅଭିନବ ପଦକ୍ଷେପ ଥିଲା ବିଜୁବାବୁଙ୍କର ।

ବିଜ୍ଞାନକୁ ଜନପ୍ରିୟ କରାଇବା ପାଇଁ ସେ ନେଇଥିବା ପଦକ୍ଷେପର ସୁଫଳ ଆଜି ରାଜ୍ୟବାସୀ ଲାଭ କରୁଛନ୍ତି । ବିଜ୍ଞାନର ପ୍ରସାର ପ୍ରଚାର ପାଇଁ ଉଦ୍ୟମଶୀଳ ବୈଜ୍ଞାନିକମାନଙ୍କୁ ଉତ୍ସାହିତ କରିବା ଲକ୍ଷ୍ୟ ନେଇ ବିଜୁବାବୁଙ୍କ ଚେଷ୍ଟାରେ ୧୯୫୦ ମସିହାରେ 'କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ' ଗଠିତ ହୋଇଥିଲା ଏବଂ ବୈଜ୍ଞାନିକମାନଙ୍କୁ କଳିଙ୍ଗ ପୁରସ୍କାର ପ୍ରଦାନ କରାଯାଉଛି ।

ଓଡ଼ିଶାକୁ ଅତ୍ୟଧିକ ଭଲ ପାଉଥିବା ବିଜୁବାବୁ ପ୍ରତ୍ୟେକ କ୍ଷେତ୍ରରେ – ଶିକ୍ଷା, ଶିଳ୍ପ, ସ୍ୱାସ୍ଥ୍ୟ, ବିଜ୍ଞାନ ଆଦି ବିଭିନ୍ନ କ୍ଷେତ୍ରରେ ଦେଶ ଓ ଜାତିକୁ ଆଗେଇ ନେବାରେ ନିଜକୁ ନିୟୋଜିତ କରିଥିଲେ । ଭାରତକୁ ଆନ୍ତର୍ଜାତିକ ସ୍ତରରେ ପହଞ୍ଚାଇବା ପାଇଁ ଦୃଢ଼ ପଦକ୍ଷେପ ଓ ନୀତିଯୁକ୍ତ ମତାମତ ଦେଇ ଜଣେ ପ୍ରବୀଣ କୂଟନୀତିଜ୍ଞର ପରିଚୟ ଦେଇଥିଲେ । ତାଙ୍କର ଦୂରଦୃଷ୍ଟି ଏତେ ପ୍ରଖର ଥିଲା ଯେ, ତତ୍କାଳୀନ ଜାତୀୟ ସ୍ତରରେ ନେତୃବୃନ୍ଦ ତାଙ୍କୁ ସମ୍ମାନ ଦେବା ସହ ମତାମତ ଲୋଡୁଥିଲେ । ଜାତୀୟ ଓ ଆନ୍ତର୍ଜାତିକ ସମସ୍ୟା ଉପରେ ବିଜୁ ତାଙ୍କ ସମୟୋପଯୋଗୀ ମନ୍ତବ୍ୟ ରଖି ଜଣେ ମହାନ୍ ଜନନାୟକ ବୋଲି ନିଜକୁ ପ୍ରତିପାଦିତ କରିପାରିଥିଲେ ।

ବିଜୁବାବୁଙ୍କ ସ୍ଥୂଳ ଶରୀର ଆଜି ନାହିଁ ସତ କିନ୍ତୁ ତାଙ୍କ କୀର୍ତ୍ତିରାଜି ଓଡ଼ିଶାର କୋଣଅନୁକୋଣେ ଜାଜ୍ୱଲ୍ୟମାନ । ଓଡ଼ିଆ ଜାତି ତା'ର ମାନସପଟରୁ ଏହି ବୀର ସଂଗ୍ରାମୀଙ୍କୁ କେବେବି ଭୁଲିବ ନାହିଁ । ବିଜୁବାବୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମଗ୍ର ରାଜ୍ୟରେ ତାଙ୍କ ନାମରେ ବିଭିନ୍ନ ଅନୁଷ୍ଠାନ ଗଢ଼ି ଉଠି ଯଥାର୍ଥ ଶ୍ରଦ୍ଧାଞ୍ଜଳି ଜ୍ଞାପନ ପ୍ରଦାନ କରୁଛି । ବିଜୁବାବୁ ଜଣେ ରାଜନେତାଭାବେ ଦୁଇଥର ମୁଖ୍ୟମନ୍ତ୍ରୀ ପଦ ଲାଭ କରିଛନ୍ତି । ଜଣେ ମାନବପ୍ରେମୀ ସ୍ନେହୀ ବ୍ୟକ୍ତି ଭାବରେ ତାଙ୍କର ତୁଳନା ନାହିଁ । ବିଭିନ୍ନ ସମୟରେ ନିର୍ବାଚନୀ ଗସ୍ତରେ ଯାଇ ଆଠଗଡ଼ର କୁଲାଇଲୋସ୍ଥ ଅନନ୍ତ ଦଳାଇ ସ୍ମୃତି ବିଦ୍ୟାପୀଠରେ ସାଧାରଣ ଜନତାଙ୍କୁ ଅନେକଥର ଉଦ୍‌ବୋଧନ ଦେଇଛନ୍ତି । ମୁଁ ଜଣେ ବିଜୁପ୍ରେମୀ ଭାବେ ତାଙ୍କୁ ଅତି ନିକଟରୁ ଜାଣିଛି । ମୋ ପାଇଁ ଅତ୍ୟନ୍ତ ଗୌରବର କଥା ଯେ, ଜଣେ ଅସ୍ଥି ଚିକିତ୍ସକ ଭାବେ ଏହି ବୀରପୁରୁଷଙ୍କ ସେବା କରିବାର ସୁଯୋଗ ପାଇଥିଲି । ବିଜୁବାବୁଙ୍କ ପବିତ୍ର ଜନ୍ମଜୟନ୍ତୀ ଅବସରରେ ତାଙ୍କ ଆବକ୍ଷ ପ୍ରତିମୂର୍ତ୍ତି କୁଲାଇଲୋସ୍ଥ ହାଇସ୍କୁଲ ମଧ୍ୟରେ ପ୍ରତିଷ୍ଠିତ ହୋଇଛି ।



ଅଧ୍ୟକ୍ଷ, ବିଜୁ ପଟ୍ଟନାୟକ ସ୍ମୃତି ସଂସଦ
କୁଲାଇଲୋ, ଆଠଗଡ଼

# କର୍ମବୀର ଗୌରୀଶଙ୍କର

ଜୟନ୍ତ କୁମାର ଦାସ

କର୍ମଯୋଗୀ ଗୌରୀଶଙ୍କର ରାୟଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଭକ୍ତକବି ମଧୁସୂଦନ ରାଓ ଲେଖିଥିଲେ-

''ମଣି କାଂଚନର ଯୋଗେ ରହିବ ଉତ୍କଳେ,
ଯଶର ମନ୍ଦିର ମଧ୍ୟେ ପୁଣ୍ୟ ଭାଗ୍ୟବଳେ
ନବ ଯୁଗ ଭାଷା ପ୍ରଭା ଦୀପିକା ପ୍ରକାଶି
ଧନ୍ୟ ତୁମ୍ଭେ ଏ ଉତ୍କଳେ ସୁକୃତ ବିଳାସୀ ।''

ଗୌରୀଶଙ୍କର ଥିଲେ ଓଡ଼ିଆ ସାହିତ୍ୟର କର୍ଣ୍ଣଧାର । ତାଙ୍କର ଜୀବନର ମୂଳମନ୍ତ୍ର ଥିଲା- କର୍ମ ହିଁ ଧର୍ମ, କର୍ମ ହିଁ ଭଗବାନ୍ । ଯିଏ କୀର୍ତ୍ତିମାନ ତା'ର ମୃତ୍ୟୁ ନ ଥାଏ । କାଳର କରାଳ ଗର୍ଭରେ ସେ ଲୀନ ହୋଇପାରେନା, ସେ ମରିକରି ବି ରହେ ଅମର । ଏହାର ଜ୍ୱଳନ୍ତ ଉଦାହରଣ କର୍ମବୀର ଗୌରୀଶଙ୍କର । କଟକ ଜିଲ୍ଲା ଅସୁରେଶ୍ୱରସ୍ଥିତ ଦୀକ୍ଷିତପଡ଼ା ଗାଁରେ ଏହି ମହାପୁରୁଷଙ୍କର ଜନ୍ମ ୧୮୩୮ ମସିହା ଜୁଲାଇ ୧୩ ତାରିଖ ଆଷାଢ଼ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ଏବଂ ମହାପ୍ରୟାଣ ୧୯୧୭ ମସିହା ମାର୍ଚ୍ଚ ସାତ ତାରିଖ କଟକ ସହର ଦରଘାବଜାର ପ୍ରିଣ୍ଟିଂ କମ୍ପାନୀ ପରିସରରେ ଫାଲ୍‌ଗୁନ ସେଇ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ । ଗାଁ ଚାଟଶାଳୀରୁ ତାଙ୍କ ବାଲ୍ୟ ଶିକ୍ଷା ଆରମ୍ଭ, ଛାତ୍ର ଅବସ୍ଥାରୁ ସେ ସାହିତ୍ୟ ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ ।

ଗୌରୀଶଙ୍କର ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ ବ୍ୟକ୍ତିତ୍ୱ, ସେ ହୃଦୟଙ୍ଗମ କରିଥିଲେ ଜାତିର ଉନ୍ନତିରେ ହିଁ ବ୍ୟକ୍ତିର ଉନ୍ନତି ସମ୍ଭବ । କଲିକତାରୁ ବର୍ଷେ ଇଂରାଜୀ ଶିକ୍ଷା ଅଧ୍ୟୟନ କରି ବାଲେଶ୍ୱର ଜିଲ୍ଲା ସ୍କୁଲରେ ମାସିକ କୋଡ଼ିଏ ଟଙ୍କା ବେତନରେ ଶିକ୍ଷକତା ଆରମ୍ଭ କଲେ । ପ୍ରାତଃସ୍ମରଣୀୟ ଉତ୍କଳଗୌରବ ମଧୁସୂଦନ ଥିଲେ ଗୌରୀଶଙ୍କରଙ୍କର ଛାତ୍ର । ଏହା ପରେ ୧୮୫୯ ମସିହାରେ କଟକ କଚେରିରେ ଜଣେ କିରାଣି ହିସାବରେ ଚାକିରିରେ ଯୋଗଦାନ କଲେ । ତାଙ୍କର ଜୀବନ ଥିଲା ସାଲିସବିହୀନ ଜୀବନ- ଗୋଟିଏ ଘଟଣାରୁ ଏହା ସ୍ପଷ୍ଟ ବାରି ହୋଇପଡ଼େ । ଗୌରୀଶଙ୍କର ମନିଅର୍ଡ଼ର ଏଜେଣ୍ଟ ଥିଲାବେଳେ ଥରେ ଅପରାହ୍ଣ ତିନିଟା ପରେ ଜଏଣ୍ଟ ମାଜିଷ୍ଟ୍ରେଟ ଆର୍ମଷ୍ଟ୍ରଙ୍ଗ ସାହେବ ନିଜ ପିଅନ ଜରିଆରେ ମନିଅର୍ଡ଼ର କରିବା ପାଇଁ ଟଙ୍କା ପଠାଇଲେ । ମାତ୍ର ତିନିଟା ପରେ ମନିଅର୍ଡ଼ର ଗ୍ରହଣ ଯୋଗ୍ୟ ନୁହେଁ ଓ ଏହା ଏକ ବେନିୟମ କାର୍ଯ୍ୟ କହି ଗୌରୀଶଙ୍କର ମନିଅର୍ଡ଼ର ଫର୍ମ ଗ୍ରହଣ କଲେ ନାହିଁ । ଆର୍ମଷ୍ଟ୍ରଙ୍ଗ ସାହେବ ନିଜକୁ ଲଜ୍ଜିତ ମନେକରି ନିଜ ଜିଦ୍‌ରେ ଅଟଳ ରହି ମନିଅର୍ଡ଼ର ପଠାଇଦେଲେ ଓ ଏହା ଏକ ବେନିୟମ କାର୍ଯ୍ୟ ଦର୍ଶାଇ ଗୌରୀଶଙ୍କର ସରକାରଙ୍କର ଦୃଷ୍ଟି ଆକର୍ଷଣ କଲେ । ଛୋଟ ସରକାରୀ ଚାକିରି କରି ସତ କହିବାକୁ କେବେବି ସେ ପଶ୍ଚାତ୍‌ପଦ ହେଉ ନ ଥିଲେ । ବ୍ରିଟିଶ୍ ଅଫିସରମାନଙ୍କର ଖାମଖିଆଲି ମନୋଭାବ ଓ ଔଦ୍ଧତ୍ୟପଣକୁ ସେ କଟୁ ସମାଲୋଚନା କରୁଥିଲେ । ଜନ୍ ବିମସ୍ ଗୌରୀଶଙ୍କରଙ୍କ ସାହସିକତା ଓ ବଳିଷ୍ଠ ଚରିତ୍ର ସମ୍ପର୍କରେ ମନ୍ତବ୍ୟ ଦେଇଥିଲେ- *"He is a man in this town"* ।

ବ୍ରିଟିଶ୍ ଶାସନ କାଳରେ ଓଡ଼ିଶାରେ ଭାଷା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଯେପରି ସମସ୍ୟା ଓ ସଂକଟ ଦେଖା ଦେଇଥିଲା ତାକୁ କିପରି ବଞ୍ଚାଇବାକୁ ହେବ ସେଥିପାଇଁ ଗୌରୀଶଙ୍କରଙ୍କୁ ଆପ୍ରାଣ ଚେଷ୍ଟା ଓ ପରିଶ୍ରମ କରିବାକୁ ପଡ଼ିଥିଲା । ସେ ଅନୁଭବ କରିଥିଲେ – ଓଡ଼ିଆ ଜାତି ନିଜର ଭାବ ବ୍ୟକ୍ତ କରିବାର କୌଣସି ମାଧ୍ୟମ ନ ଥିବାରୁ ଏ ଜାତି ଆଜି ଅବହେଳିତ ଓ ନିକ୍ଷେପିତ । ତେଣୁ ବିଚିତ୍ରାନନ୍ଦ ଦାସଙ୍କ ପ୍ରେରଣାରେ ୧୮୬୫ ଜୁଲାଇ ମାସରେ କଟକ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ କରି ଅଗଷ୍ଟ ମାସରେ ଓଡ଼ିଶାର ପ୍ରଥମ ସମ୍ବାଦପତ୍ର ''ଉତ୍କଳ ଦୀପିକା''କୁ ଜନ୍ମ ଦେଇଥିଲେ । ଓଡ଼ିଆ ଅକ୍ଷରର ଅଭାବ ସତ୍ତ୍ୱେ ଗୌରୀଶଙ୍କରଙ୍କ ଉଦ୍ୟମରେ ପ୍ରାୟ ଏକ ବର୍ଷ ଧରି ଉତ୍କଳ ଦୀପିକା ପଥର ଖୋଦିତ ଅକ୍ଷରରେ ପ୍ରକାଶ ପାଇଲା । ଓଡ଼ିଆମାନଙ୍କ ପ୍ରତି ନିନ୍ଦା ଓ ଅପମାନ ଗୌରୀଶଙ୍କର ଆଦୌ ବରଦାସ୍ତ କରୁ ନ ଥିଲେ । ଗୋରା ସରକାର ଅନେକ ସମୟରେ ଓଡ଼ିଆମାନଙ୍କୁ ''ନିର୍ବୋଧ'' ବୋଲି

ସମ୍ବୋଧନ କରୁଥିଲେ । ଏ ଜାତିକୁ ଜାଗ୍ରତ କରିବା ପାଇଁ, ଉତ୍ସାହ ପ୍ରଦାନ କରିବା ପାଇଁ ଗୌରୀଶଙ୍କର ଉତ୍କଳୀୟଙ୍କର ପୂର୍ବ ଗୌରବ, ପୂର୍ବ ଇତିହାସ ସଭାସମିତି ମାଧ୍ୟମରେ, ଉତ୍କଳ ଦୀପିକା ଜରିଆରେ ଲୋକଲୋଚନକୁ ଆଣୁଥିଲେ, ଉଦ୍ଦେଶ୍ୟ ଥିଲା-ଜାତୀୟତାବାଦ ସୃଷ୍ଟି । ଓଡ଼ିଆ ଜାତିର ଅଳସୁଆମିକୁ ଲକ୍ଷ୍ୟ କରି ଲେଖିଥିଲେ- 'ମୁଠାଏ ଖାଇବାକୁ ବା ଖଣ୍ଡେ ପିନ୍ଧିବାକୁ ଯେତିକି ପରିଶ୍ରମ ନିତାନ୍ତ ନ କଲେ ନ ହୁଏ, ସେତିକି କରିବେ' ଓ ତାହା ହେଲାଠାରୁ ବିଛଣା ଖଣ୍ଡେ ଧରି ଗଡୁଥିବେ ବା ବୃଥା ଗଳ୍ପ କ୍ରୀଡ଼ାରେ ଅବସର କାଳକୁ ଅତିବାହିତ କରିବେ । ଗୌରୀଶଙ୍କର ଗଭୀର କ୍ଷୋଭ ପ୍ରକାଶ କରି ଉତ୍କଳ ଦୀପିକାରେ ଲେଖିଥିଲେ-

''ହେ ଉତ୍କଳୀୟମାନେ ଉଠ । ଆପଣାର ପୂର୍ବପୁରୁଷର ଯଥାର୍ଥ ନାମ ରକ୍ଷା କର ଓ ଆପଣା ଆପଣାର ଲଲାଟସ୍ଥ ଅଜ୍ଞତାପବାଦ ରୂପ କଳଙ୍କରେଖା ଉନ୍ମୋଚନ କରିବାକୁ ତତ୍ପର ହୁଅ । ଆଉ କେତେ କାଳ ଆଳସ୍ୟ ସଳିଳରେ ଜୀବନ ବିସର୍ଜନ କରିବ ?''

''କଟକ ଷ୍ଟାର'' ନାମକ ପତ୍ରିକାରେ ଉମାଚରଣ ହାଲଦାର ବଙ୍ଗଳାକ୍ଷରରେ ଲେଖିବା ପାଇଁ ଏକ ପ୍ରସ୍ତାବ ଦେଲେ ଏବଂ କହିଲେ ଏହାଦ୍ୱାରା ଓଡ଼ିଆ ଭାଷାର ପ୍ରକୃତ ଉନ୍ନତି ହେବ । ଗୌରୀଶଙ୍କର ତାଙ୍କୁ ଭର୍ତ୍ସନା କରି କହିଲେ- ''ଯାହା ପୁଅ ତାହାକୁ ସୁନ୍ଦର'' । ଏଇଥିରୁ ଜଣାପଡ଼େ ମାତୃଭୂମି ଓ ମାତୃଭାଷାର ସ୍ୱାର୍ଥରକ୍ଷା ପାଇଁ ସେ କେତେ ମାତ୍ରାରେ ପ୍ରତିଜ୍ଞାବଦ୍ଧ ଥିଲେ । ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ସେ ଉତ୍କଳ ଦୀପିକାର ପରିକଳ୍ପନା କରିଥିଲେ । ରାଜେନ୍ଦ୍ରଲାଲ ମିତ୍ର, ଉମାଚରଣ ହାଲ୍‌ଦାର, କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ନେତୃତ୍ୱରେ ଓଡ଼ିଆ ଭାଷାକୁ ଓଡ଼ିଶାରୁ ଉଠାଇଦେବା ପାଇଁ ଯେଉଁ ଚକ୍ରାନ୍ତ କରିଥିଲେ, ତାହା ବିଫଳ କରିଦେବା ପାଇଁ ଦୀପିକା ଯେଉଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା, ତାହା ଊଣାଅଧିକେ ସମସ୍ତଙ୍କୁ ଜଣା । ଉତ୍କଳ ଦୀପିକା ମାଧ୍ୟମରେ ଏ ଦେଶରେ ନବଜାଗରଣ ସୃଷ୍ଟି କରିବାରେ ସେ ସକ୍ଷମ ହୋଇଥିଲେ । ସେ ହୃଦୟଙ୍ଗମ କରିଥିଲେ ଓଡ଼ିଶାର ପୂର୍ବ ଐତିହ୍ୟ ଓ ଗୌରବ ଇତିହାସ ଯେତେ ପ୍ରକାଶ ହେବ, ପୁରାତନ କୀର୍ତ୍ତିରାଜି ଓ ଏହାର ବୈଶିଷ୍ଟ୍ୟତା ଯେତେ ପ୍ରଚାର ହେବ ଅନ୍ୟାନ୍ୟ ଦେଶରେ ଓଡ଼ିଶାର ଚାହିଦା ସେତେ ବଢ଼ିବ ଓ ବାହାର ଲୋକମାନଙ୍କର ଓଡ଼ିଶା ପ୍ରତି, ଓଡ଼ିଆ ଜାତି ପ୍ରତି ସମ୍ମାନ ବଢ଼ିବ । ଓଡ଼ିଶାରେ ଓଡ଼ିଆ ଭାଷାର ସୁରକ୍ଷା ଓ ପ୍ରସାର, ବିକାଶ, ଓଡ଼ିଶାରେ ଉଚ୍ଚଶିକ୍ଷାର ପ୍ରସାର, ଗମନାଗମନ ସୁବିଧା, ରାସ୍ତାଘାଟ ନିର୍ମାଣ, ଦୁର୍ଭିକ୍ଷ ପ୍ରପୀଡ଼ିତ ଓଡ଼ିଶାର ଦୁଃଖଦୁର୍ଦ୍ଦଶାକୁ ଲୋକ ଲୋଚନକୁ ଆଣିବା ଓ ଓଡ଼ିଶାର ସମସ୍ୟା ପ୍ରତି ଗୋରା ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ଥିଲା ଉତ୍କଳ ଦୀପିକାର ଲକ୍ଷ୍ୟ । ନ'ଅଙ୍କ ଦୁର୍ଭିକ୍ଷର ବିଭୀଷିକା ଦେଖି ଗୋରା ସରକାରକୁ ଦାୟୀ କରିଥିଲେ ଓଡ଼ିଶା ରୋଦନ କବିତା ମାଧ୍ୟମରେ-

କରଇ ରୋଦନ ଓଡ଼ିଶା ବସିଣ ବହୁ ସନ୍ତାନ ହରାଇ
ଦୁର୍ଭିକ୍ଷ ବିପଦ ଘୋର ପରମାଦ ଘୋଟିଲା ମତେ କମ୍ପାଇ ।
ନ ଜାଣଇ ମୁଁ କିଛି, କିବା ଅପରାଧ କରିଅଛି
କରିକି ବିଚାର ବୋଲେ କମିସ୍ନର ଧାନ ମୁହଁ ନୁଚାଇଛି
ଲୋଭରେ ପଡ଼ିଣ ଶସ୍ୟ ବି ରଖିଣ ସନ୍ତାପଣେ ମାରୁଛି
ପୋଡ଼ୁଡା ବୁଝାମଣା, ତା'ର ବିବେକତ ଗଲା ଜଣା
ଯଦି କମିସ୍ନର ହୋଇଣ ତତ୍ପର କରିଥାନ୍ତା ଅନ୍ୱେଷଣ
ପ୍ରକୃତ ଅବସ୍ଥା ଜାଣିପାରିଥାନ୍ତା ନ ହୁଅନ୍ତା ଏ ମରଣ
ବଡ଼ ଆଳସ୍ୟ କଲା, ଘର କଥାରେ ଭୁଲି ରହିଲା ।

ନ'ଅଙ୍କ ଦୁର୍ଭିକ୍ଷବେଳର ଦୁଃଖଦୁର୍ଦ୍ଦଶାର କରୁଣ କାହାଣୀ ଉତ୍କଳ ଦୀପିକାରେ ପ୍ରତିଫଳନ କରି ଗୋରା ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ଯାହା ଫଳସ୍ୱରୂପ ''କ୍ୟାମ୍ପବେଲ କମିଶନ'' ବସି ଭବିଷ୍ୟତ୍‌ରେ କିପରି ଏହାର ପୁନରାବୃତ୍ତି ନ ହେବ ସେଥିପ୍ରତି ଧ୍ୟାନ ଦିଆଯିବାକୁ ସ୍ଥିର ହେଲା । ସରକାରଙ୍କ ତରଫରୁ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ଓ ପଦକ୍ଷେପ ହାତକୁ ନିଆଗଲା । ଓଡ଼ିଶାରେ ରେଳପଥର ପ୍ରସାର ପାଇଁ ଉତ୍କଳଦୀପିକା ମାଧ୍ୟମରେ ସରକାରଙ୍କ ଉପରେ ବିଭିନ୍ନ ସମୟରେ ଚାପ ପକାଗଲା, ଓଡ଼ିଶାକୁ ରେଳପଥରୁ ବଂଚିତ କରିବା ଯଥାର୍ଥ ନୁହେଁ ବୋଲି ଗୌରୀଶଙ୍କର ସରକାରଙ୍କୁ ସମାଲୋଚନା କରୁଥିଲେ । ଯାହା ଫଳରେ ୧୮୯୬ ମସିହା ବେଳକୁ ଓଡ଼ିଶାରେ ରେଳପଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ଗୋରା ସରକାରର ଓଡ଼ିଶାବାସୀଙ୍କ ପ୍ରତି ଚରମ ଅବହେଳା ଦେଖି ଗୌରୀଶଙ୍କର ଥୟ ଧରି ରହି ନ ଥିଲେ । ଏଥିରେ ଅତ୍ୟନ୍ତ ମର୍ମାହତ ହୋଇ ଗୌରୀଶଙ୍କର ଲେଖିଥିଲେ- ''ଆମ୍ଭେମାନେ ଭାବୁଅଛୁଁ କି ମାନ୍ୟବର ଇଡ଼ନ ସାହେବ ବଙ୍ଗଳାର ରେଳବାଟ ବିସ୍ତାର କରିବାର ଏତେ ଉପାୟ ଚିନ୍ତା କଲାବେଳେ ଯେ ଓଡ଼ିଶାକୁ ଥରେ ମନରେ ନ ପକାଇଲେ ବଡ଼ ଦୁଃଖର ବିଷୟ ଅଟଇ । ଛତିଶଗଡ଼ ପର୍ଯ୍ୟନ୍ତ ଆସିଲାବେଳେ ଯେବେ ଟିକିଏ ଓଡ଼ିଶା ପ୍ରତି ଚାହିଁଦେଇଥାଆନ୍ତେ, ତେବେ ରାୟଗଡ଼ାଠାରୁ ସମ୍ବଲପୁର ବାଟେ କଟକ ପର୍ଯ୍ୟନ୍ତ ଗୋଟିଏ ରେଖା ଟାଣି ଦେଇଥିଲେ ଆଜି ଆମ୍ଭେମାନେ କେତେ ଆନନ୍ଦିତ ହୋଇଥାନ୍ତୁ ତାହା ବୋଲାଯାଇ ନ ପାରେ ।'' ଓଡ଼ିଶାରେ ରେଳପଥ ନିର୍ମାଣ ପାଇଁ ତାଙ୍କର ଅବଦାନ ଏଇଥିରୁ ସହଜରେ ଅନୁମେୟ ।

ଓଡ଼ିଆ ଭାଷା ଆନ୍ଦୋଳନ, ଓଡ଼ିଶାରେ ଉଚ୍ଚଶିକ୍ଷା ପ୍ରସାର, ଓଡ଼ିଶା ସହିତ ଗଞ୍ଜାମ ଓ ସମ୍ବଲପୁର ମିଶ୍ରଣ, ଉତ୍କଳ ସମ୍ମିଳନୀ ଗଠନ, ଓଡ଼ିଶାର ପତ୍ରପତ୍ରିକାର ପ୍ରସାର, ଦେଶ ମିଶ୍ରଣ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଜାତୀୟ କଂଗ୍ରେସର ଜୟଯାତ୍ରା, ଓଡ଼ିଶାର ସ୍ୱାୟତ୍ତ ଶାସନ ଓ ଶିଳ୍ପର ଅଭିବୃଦ୍ଧି, ରେଳ ସେବା ଆରମ୍ଭ, ସାମାଜିକ କୁସଂସ୍କାର ବିରୋଧରେ ସ୍ୱର ଉତ୍ତୋଳନ, ନାରୀଶିକ୍ଷା ପ୍ରସାର, ବିଧବା ବିବାହ ପ୍ରଚଳନ କ୍ଷେତ୍ରରେ ଥିଲା ''ଉତ୍କଳ ଦୀପିକା''ର ପ୍ରମୁଖ ଭୂମିକା । ଗୌରୀଶଙ୍କର ଥିଲେ ଜଣେ ସଚ୍ଚୋଟ ଓ ନିର୍ଭୀକ ସାମ୍ବାଦିକ, ଓଡ଼ିଆ ଭାଷା ଓ ଓଡ଼ିଆ ଜାତିକୁ କିପରି ବଞ୍ଚାଇବାକୁ ହେବ ସେଥିପାଇଁ ସେ ଅକ୍ଳାନ୍ତ ପରିଶ୍ରମ କରୁଥିଲେ । ନିର୍ଭୀକ, ନିରପେକ୍ଷ ଓ ସର୍ଜନାତ୍ମକ ସମାଲୋଚନା ଥିଲା ତାଙ୍କର ନୀତି ।

ଓଡ଼ିଶାବାସୀଙ୍କ ସମୂହ ସ୍ୱାର୍ଥକୁ ପ୍ରାଧାନ୍ୟ ଦେବା ପାଇଁ ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନରେ ଯୋଗ ଦେଇଥିଲେ । ଏପରିକି ଭାରତୀୟ ଜାତୀୟ କଂଗ୍ରେସର ବିଭିନ୍ନ ଅଧିବେଶନରେ ଉତ୍କଳ ସଭା ଦ୍ୱାରା ମନୋନୀତ ହୋଇ ଗୌରୀଶଙ୍କର ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲେ । କଟକ ମ୍ୟୁନିସିପାଲଟିର ପ୍ରଥମ ଚେୟାରମ୍ୟାନ ରୂପେ ହେଉ ଅଥବା ଉତ୍କଳ ସାହିତ୍ୟ ସମାଜର ସଭାପତି ଭାବେ ହେଉ ସେ ନିଜର କାର୍ଯ୍ୟଦକ୍ଷତାର ପରିଚୟ ଦେଇଥିଲେ । ଗୌରୀଶଙ୍କରଙ୍କ ଓଡ଼ିଶା ପ୍ରୀତି କେତେ ତାହା ଗୋଟିଏ ଉଦାହରଣରୁ ଜାଣିହୁଏ । ଥରେ ଉତ୍କଳ ପ୍ରିଣ୍ଟିଂ କମ୍ପାନୀ ପରିସରରେ ବଡ଼ଲାଟ୍ ଲର୍ଡ଼ ମେଓଙ୍କୁ ସମ୍ବର୍ଦ୍ଧନା ଦିଆଯିବା ପାଇଁ ସ୍ଥିର ହେଲା । ମାତ୍ର ଅନିବାର୍ଯ୍ୟ କାରଣବଶତଃ ତାହା ସ୍ଥଗିତ ରହିଲା । ଠିକ୍ ଏହି ସମୟରେ ବଙ୍ଗଳା ସରକାରଙ୍କଠାରୁ ଓଡ଼ିଶାରେ ଏକ କଲେଜ ପ୍ରତିଷ୍ଠା ପାଇଁ ତିରିଶ ହଜାର ଟଙ୍କା ବିଶ୍ୱବିଦ୍ୟାଳୟରେ ଦାଖଲ କରିବାକୁ ନିର୍ଦ୍ଦେଶ ଆସିଲା । ଲର୍ଡ଼ ମେଓଙ୍କ ସମ୍ବର୍ଦ୍ଧନା ପାଇଁ ସଂଗୃହୀତ ଅର୍ଥକୁ ଗୌରୀଶଙ୍କର ବିନା ଦ୍ୱିଧାରେ ବଙ୍ଗଳା ବିଶ୍ୱବିଦ୍ୟାଳୟରେ ଜମା ଦେବା ପରେ ଓଡ଼ିଶାର ପ୍ରଥମ କଲେଜ ''ରେଭେନ୍‌ସା ମହାବିଦ୍ୟାଳୟ'' ସ୍ଥାପନ ହୋଇପାରିଲା ।

ନାରୀଶିକ୍ଷାର ପ୍ରସାର ପାଇଁ ଗୌରୀଶଙ୍କର ସର୍ବଦା ସଚେତନ ଥିଲେ । ନାରୀଶିକ୍ଷା ସମ୍ବନ୍ଧରେ ସେ ଲେଖିଥିଲେ- ଆମ୍ଭେମାନେ ସମସ୍ତ ଉତ୍କଳବାସୀଙ୍କୁ ଅନୁରୋଧ କରୁଅଛୁଁ କି ଆପଣ ସ୍ତ୍ରୀ ପିଲାମାନଙ୍କୁ ଉପଯୁକ୍ତ ଶିକ୍ଷାଦାନ ବିଷୟରେ ସର୍ବଦା ଯତ୍ନଶୀଳ ହେଉନ୍ତୁ । କେବଳ ସେତିକି ନୁହେଁ, ସେ କାଳରେ ସାଲେପୁର ଇଲାକା ପଲୀସାହି ଗ୍ରାମରେ ଶଶୀଦେବୀ ନାମ୍ନୀ ଜଣେ ବିଧବା ବ୍ରାହ୍ମଣୀ ଶିକ୍ଷୟିତ୍ରୀ ରୂପେ କାର୍ଯ୍ୟ କରୁଥିବା ଜାଣି ଗୌରୀଶଙ୍କର ତାଙ୍କୁ ଅଭିନନ୍ଦନ ଜଣାଇ ''ଏହି ଉଦ୍ୟମ ଦ୍ୱାରା ସ୍ତ୍ରୀ ଶିକ୍ଷା ବିସ୍ତାରିତ ହେବ ବୋଲି ମନେ କରିଥିଲେ । ସେ ସମୟରେ ନିଜ ଗ୍ରାମ ଦୀକ୍ଷିତପଡ଼ାରେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନ କରିଥିଲେ । ସେ ଏକ ଆଦର୍ଶ ସମାଜ ଗଠନ କରିବା ପାଇଁ ନିରନ୍ତର ଉଦ୍ୟମ କରିଥିଲେ । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଥିଲା ତାଙ୍କର ଲକ୍ଷ୍ୟ ।

ସବୁ ବର୍ଗର ଲୋକଙ୍କ ସହିତ ମିଶିବା ତାଙ୍କ ଚରିତ୍ରର ବୈଶିଷ୍ଟ୍ୟତା । ଦୀନ, ଦରିଦ୍ରଙ୍କ ପାଇଁ ତାଙ୍କ ହୃଦୟରେ ବ୍ୟାକୁଳତା କେତେ ସେ କବିତା ମାଧ୍ୟମରେ ଉତ୍କଳ ଦୀପିକାରେ ପ୍ରକାଶ କରୁଥିଲେ । ଗୋଟିଏ କବିତାର କିଛି ଅଂଶ ପଢ଼ିଲେ ଗୌରୀଶଙ୍କରଙ୍କ ହୃଦୟର ମହାନତା କେତେ ତା ଆକଳନ କରିହୁଏ-

''ମାଣ୍ଡିଆ ଚାଉଳ ହେଲା କି ମୂଲ
ନ କହ ଆଉ ସଂସାର
ବଡ଼ଲୋକ ଘୋଡ଼ା ହୋଇଲା ତ ମଡ଼ା
ନ ପାଇ କୋଳଥ ଫଳ ଯେ, ପୁଣ
ଶାଗ ସଜନା ହେଲା ଓଜନ
ଭାତ ନାହିଁ କେ ଲୋଡ଼େ ତିଉଣ
କେତେ କହିବା ତା ପୁଣ ପୁଣ ଯେ ।''

କଟକରେ ସଭାସମିତି ପାଇଁ ଜାଗା ନ ଥିବାରୁ ବା ଉଦ୍ୟମ ନ ଥିବାରୁ ନିଜସ୍ୱ ଅର୍ଥରେ ସେ ଟାଉନ୍‌ହଲ ନିର୍ମାଣ କରିଥିଲେ । ଗାଁଗହଳି ପିଲାଙ୍କ ପାଇଁ କଟକରେ ଛାତ୍ରାବାସ ନିର୍ମାଣ, ଗରିବ ଛାତ୍ରଙ୍କୁ ବୃତ୍ତି ପ୍ରଦାନ, ଗାଁରେ ସ୍କୁଲ ଓ ଡାକ୍ତରଖାନା ପ୍ରତିଷ୍ଠା, ସର୍ବସାଧାରଣଙ୍କ ପାଇଁ ପାଠାଗାର ସ୍ଥାପନ କରିବାରେ ଥିଲା ବିଶେଷ ଭୂମିକା ।

ଓଡ଼ିଆ ଜାତିର ସେ ପ୍ରାତଃସ୍ମରଣୀୟ, ଚିରନମସ୍ୟ, ଧ୍ରୁବତାରା ସଦୃଶ । ଉତ୍କଳଦୀପିକା ମାଧ୍ୟମରେ ଗୌରୀଶଙ୍କର ପ୍ରକାଶ କରିଥିଲେ- ଓଡ଼ିଆ ଜାତିର ଆତ୍ମସମୀକ୍ଷା, ମାନବବାଦୀ ଚିନ୍ତାଧାରା ଓ ନାଗରିକର ଦାୟିତ୍ୱ ଓ କର୍ତ୍ତବ୍ୟ ଓ ମୂଲ୍ୟବୋଧ । ଜାତିରେ ଓଡ଼ିଆ ନ ହୋଇ ମଧ୍ୟ ଓଡ଼ିଶାର ସ୍ୱାର୍ଥରକ୍ଷା ପାଇଁ ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ତାଙ୍କୁ ସବୁଦିନ ପାଇଁ ଅମର କରି ରଖିବ ଏବଂ ଇତିହାସରେ ତାଙ୍କ ନାଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ବାସ୍ତବିକ୍ ସେ ଥିଲେ କର୍ମଯୋଗୀ ଓ କର୍ମବୀର ।



ଡି ୧୧/୩, ୟୁନିଟ୍-୯,
ଭୁବନେଶ୍ୱର-୨୨

# ଓଡ଼ିଶାର ବରପୁତ୍ର ଗୋପାଳଚନ୍ଦ୍ର ପ୍ରହରାଜ

ଇଂ. ମାୟାଧର ସ୍ୱାଇଁ

ଓଡ଼ିଶାର ଜଣେ ପ୍ରଥିତଯଶା ସାହିତ୍ୟିକ ହେଉଛନ୍ତି ଗୋପାଳଚନ୍ଦ୍ର ପ୍ରହରାଜ । ସେ ପେଶାରେ ଥିଲେ ଜଣେ ଓକିଲ, ମାତ୍ର ତାଙ୍କର ନିଶା ଥିଲା ସାହିତ୍ୟ । ଓଡ଼ିଆ ଭାଷାର ବିକାଶ ଓ ଓଡ଼ିଆ ସାହିତ୍ୟର ସେବା କରି ସର୍ବସ୍ୱାନ୍ତ ହୋଇଯାଇଥିଲେ ସୁଦ୍ଧା ଜୀବନର ଶେଷପର୍ଯ୍ୟନ୍ତ ସେ ଏଥିରୁ ବିରତ ହୋଇ ନ ଥିଲେ ।

ଗୋପାଳଚନ୍ଦ୍ର ପ୍ରହରାଜ କଟକ ଜିଲ୍ଲାର କୋଚିଣ୍ଡା ପ୍ରଗଣା ଅନ୍ତର୍ଗତ ସିଦ୍ଧେଶ୍ୱରପୁର ଗ୍ରାମରେ ୧୮୭୪ ମସିହା ସେପ୍ଟେମ୍ବର ମାସ ୨୭ ତାରିଖରେ ଗୋଟିଏ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ନରସିଂହ ପ୍ରହରାଜ । ସତର ଜଣ ଭାଇଭଉଣୀଙ୍କ ମଧ୍ୟରେ ସେ ଥିଲେ ପିତାମାତାଙ୍କ ଦ୍ୱିତୀୟ ସନ୍ତାନ ଓ ଜ୍ୟେଷ୍ଠ ପୁତ୍ର । ଗାଁ ଚାଟଶାଳୀରେ ପାଠ ପଢ଼ା ଆରମ୍ଭ କରି ସେ ଏଗାର ବର୍ଷ ବୟସରେ କଟକର କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲେ । ଏହା ପରେ ରେଭେନ୍‌ସା କଲେଜରୁ ଏଫ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲିକତାର ଶିବପୁର ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇଲେ । ମାତ୍ର ସେଠାରେ ତାଙ୍କ ଦେହ ଭଲ ନ ରହିବାରୁ ସେ ସେଠାରୁ ଫେରିଆସି ରେଭେନ୍‌ସା କଲେଜରେ ବି.ଏ. ପଢ଼ିଲେ । ସେ ୧୮୯୮ ମସିହାରେ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏହା ପରେ ଓକିଲାତି ପାସ୍ କରି ଓକିଲାତି କଲେ । ସେତେବେଳର ନାମଜାଦା ଓକିଲ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଅଧୀନରେ ରହି ଓକିଲାତି ଶିକ୍ଷା କରି ପରେ ସେ ନିଜେ ସ୍ୱାଧୀନ ଭାବରେ ଓକିଲାତି କଲେ । ଓକିଲାତିରେ ଭଲ ନାମ କରି ଅନେକ ଟଙ୍କା ରୋଜଗାର କରିଥିଲେ ।

ଓଡ଼ିଆ ଭାଷାରେ ପ୍ରଥମ କରି ଭାଷାକୋଷ ପ୍ରଣୟନ କରି ଗୋପାଳଚନ୍ଦ୍ର ପ୍ରହରାଜ ଖ୍ୟାତି ଲାଭ କରିଛନ୍ତି । ଅନ୍ୟ ଭାରତୀୟ ଭାଷାରେ ଭାଷାକୋଷ ଥିବାବେଳେ ଓଡ଼ିଆରେ ଏହା ନ ଥିଲା । ଏଣୁ ଓଡ଼ିଆ ଭାଷାର ବିକାଶ ପାଇଁ ସେ ଅକ୍ଳାନ୍ତ ପରିଶ୍ରମ କରି ଏହାକୁ ପ୍ରସ୍ତୁତ କଲେ । ୧୯୧୩ ମସିହାରେ ଏହାର ଲେଖା ଆରମ୍ଭ କରି ସେ ୧୯୩୦ ମସିହାରେ ଏହାକୁ ସମ୍ପୂର୍ଣ୍ଣ କରିଥିଲେ । ଏହାକୁ ଲେଖିବାକୁ ତାଙ୍କୁ ଦୀର୍ଘ ଅଠର ବର୍ଷ ଲାଗିଥିଲା । ଏହାକୁ ପ୍ରକାଶ କରିବା ପାଇଁ ଅନେକ ଟଙ୍କା ଦରକାର ହେଲା । ତାଙ୍କ ପାଖରେ ସେତେ ଟଙ୍କା ନ ଥିଲା । ମୟୂରଭଞ୍ଜ ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜଦେଓ ଏଥିପାଇଁ ତାଙ୍କୁ ତେରହଜାର ଟଙ୍କା ସାହାଯ୍ୟ ଦେଇଥିଲେ ଏବଂ ନିଜର ସ୍ୱର୍ଗତଃ ଭ୍ରାତା ପୂର୍ଣ୍ଣଚନ୍ଦ୍ରଙ୍କ ନାମାନୁସାରେ ଭାଷାକୋଷର ନାମ ରଖିବା ପାଇଁ ଅନୁରୋଧ କଲେ । ତାଙ୍କ ଅନୁରୋଧ ରକ୍ଷା କରି ଗୋପାଳଚନ୍ଦ୍ର ପ୍ରହରାଜ ଭାଷାକୋଷର ନାମ ରଖିଲେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' । ୧୯୩୧ ମସିହାରେ ଭାଷାକୋଷର ପ୍ରଥମ ଖଣ୍ଡ ପ୍ରକାଶ ପାଇଲା । ଅର୍ଥାଭାବରୁ ପୂରା ସାତଖଣ୍ଡ ପ୍ରକାଶ ପାଇଁ ଦଶବର୍ଷ ଲାଗିଲା । ଗ୍ରନ୍ଥଟିକୁ ସଂକୁଚିତ କରି ଅଳ୍ପ ଖର୍ଚ୍ଚରେ ପ୍ରକାଶ କରିବା ପାଇଁ କେତେଜଣ ବନ୍ଧୁ ପରାମର୍ଶ ଦେଇଥିଲେ । ମାତ୍ର ଗୋପାଳଚନ୍ଦ୍ର ଏଥିରେ ରାଜି ହେଲେ ନାହିଁ । କାରଣ କଷ୍ଟାର୍ଜିତ ପ୍ରତିଟି ଉପାଦାନ ତାଙ୍କ ପାଖରେ ସମାନ ମୂଲ୍ୟାଙ୍କନ ଥିଲା । ୧୯୪୦ ମସିହାରେ ଭାଷାକୋଷର ଶେଷଖଣ୍ଡ ପ୍ରକାଶ ପାଇଲା । ସେ ଅନ୍ୟ କେତେଜଣ ବଦାନ୍ୟ ବ୍ୟକ୍ତିଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇଥିଲେ ସୁଦ୍ଧା ଶେଷକୁ ଟଙ୍କା ଅଭାବ ପଡ଼ିବାରୁ ନିଜର ଘର ବନ୍ଧା ପକାଇ ଟଙ୍କା ଯୋଗାଡ଼ କରିଥିଲେ ।

ଭାଷାକୋଷ ରଚନାର ଆରମ୍ଭରୁ ଶେଷ ଭାଗ ପ୍ରକାଶ ପାଇବାକୁ ୨୭ ବର୍ଷରୁ ଅଧିକ ସମୟ ଲାଗିଥିଲା । ଏଥିପାଇଁ ଗୋପାଳଚନ୍ଦ୍ର କେତେ ପରିଶ୍ରମ ଓ ସାଧନା କରିଥିଲେ, ତାହା ଏଥିରୁ ଜଣାପଡ଼େ । ଭାଷାକୋଷ ରଚନା ପାଇଁ ସେ ବିଭିନ୍ନ ଭାଷାର କୋଡ଼ିଏଟି ଭାଷାକୋଷର ସାହାଯ୍ୟ ନେଇଥିଲେ । ସାତଖଣ୍ଡ ଭାଷାକୋଷର ମୋଟ ପୃଷ୍ଠା ସଂଖ୍ୟା ହେଉଛି ୯୫୦୩ ଏବଂ ଏଥିରେ ୧୮୫୦୦୦ଟି ଶବ୍ଦ ରହିଛି । ଏହାର ପ୍ରକାଶ

ପାଇଁ ସେତେବେଳେ ଏକ ଲକ୍ଷ ପଚିଶହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । ଏହା ଏକ ଚତୁର୍ଭାଷିକ ଅଭିଧାନ । ଏହା ଓଡ଼ିଆ, ଇଂରାଜୀ, ବଂଗଳା ଓ ଦେବନାଗରୀ ଲିପିରେ ଲିଖିତ ।

ଗୋପାଳଚନ୍ଦ୍ର ଭାଷାକୋଷରେ ଓଡ଼ିଆ ଭାଷାର ପ୍ରାୟ ସମସ୍ତ ଶୁଦ୍ଧ ଶବ୍ଦ ସହିତ ସାନ୍ତାଳୀ, କନ୍ଧ, କୋହ୍ଲ ଆଦି ଆଦିବାସୀ ଭାଷା, ସମ୍ବଲପୁରୀ, ଉଦରୀ, ଲରିଆ ଆଦି ଅନେକ ସ୍ଥାନୀୟ ଓଡ଼ିଆ ଭାଷାର ଶବ୍ଦ ବ୍ୟବହାର କରିଛନ୍ତି । ପୁନଶ୍ଚ ସେ ଏଥିରେ ଅନେକ ବୈଦେଶିକ ଶବ୍ଦ ବ୍ୟବହାର କରିଛନ୍ତି । ଏଗୁଡ଼ିକ ମୁଖ୍ୟତଃ ଇଂରାଜୀ, ଉର୍ଦ୍ଦୁ, ପାର୍ଶୀ, ଫରାସୀ, ଜର୍ମାନୀ, ପର୍ତ୍ତୁଗୀଜ୍, ତୁର୍କୀ ଆଦି ଭାଷାରୁ ଆସିଛି । ସେ ଭାରତର ଅନ୍ୟ ରାଜ୍ୟରୁ ଆନୀତ ଓ ଓଡ଼ିଆରେ ବ୍ୟବହୃତ ଶବ୍ଦମାନ ମଧ୍ୟ ବ୍ୟବହାର କରିଛନ୍ତି ।

ଭାଷାକୋଷ ପୁସ୍ତକ ସହିତ ଗୋପାଳଚନ୍ଦ୍ର ଏପରିଭାବେ ଜଡ଼ିତ ଥିଲେ ଯେ ତାଙ୍କ ଘରର ପରିଚୟ ଥିଲା 'ଭାଷାକୋଷ ଅଫିସ୍' ଏବଂ ବର୍ତ୍ତମାନ ପର୍ଯ୍ୟନ୍ତ ତାଙ୍କ ଘର ସାମନାରେ ଯାଇଥିବା ରାସ୍ତାଟି 'ଭାଷାକୋଷ ଲେନ୍' ନାମରେ ପରିଚିତ । ମହାତ୍ମାଗାନ୍ଧୀ ୧୯୨୭ ମସିହାରେ ତାଙ୍କର କାର୍ଯ୍ୟ ପରିଦର୍ଶନ କରି ପ୍ରଶଂସା କରିଥିଲେ । ଭାଷାକୋଷ ଭଳି ଏକ ଚତୁର୍ଭାଷିକ ବୃହତ୍ ଅଭିଧାନ ରଚନା କରିଥିବାରୁ ବ୍ରିଟିଶ୍ ସରକାର ତାଙ୍କୁ 'ରାୟବାହାଦୁର' ଏବଂ 'କାଇଜର-ଇ-ହିନ୍ଦ୍' ପଦରେ ସମ୍ମାନିତ କରିଥିଲେ ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ବ୍ୟତୀତ ଗୋପାଳଚନ୍ଦ୍ର ଅନେକ କବିତା, ପ୍ରବନ୍ଧ, ଗଳ୍ପ ଓ ଶିଶୁଗୀତ ଲେଖିଛନ୍ତି । ତାଙ୍କ ରଚିତ ଅନ୍ୟ ପୁସ୍ତକଗୁଡ଼ିକ ହେଉଛି ଉତ୍କଳ କାହାଣୀ (୧ମ ଓ ୨ୟ ଭାଗ), ଭାଗବତ ଟୁଙ୍ଗୀରେ ସନ୍ଧ୍ୟା, ବାଇମହାନ୍ତି ପାଞ୍ଜି, ମିଆଁ ସାହେବଙ୍କ ରୋଜନାମଚା, ଧୋରେ ବାଇଆ ଧୋ, ନନାଙ୍କ ବସ୍ତାନି, ବାଇନାନୀଙ୍କ ବୁଜୁଳୀ, ଆମ ଘରର ହାଲ୍‌ଚାଲ୍, ବାଇଦାସଙ୍କ ଭଜନ ଓ ଶିଶୁଗୀତ, ଢଗଢମାଳି ବଚନ (୧ମ ଓ ୨ୟ ଭାଗ), ଜେଜେବାପାଙ୍କ ଟୁଣିମୁଣି, ସ୍ୱପ୍ନରେ ରାଜଧାନୀ ଯୋଗ ଏବଂ ଭାଷାକୋଷ ପାଇଁ ସଫର । ଗୋପାଳଚନ୍ଦ୍ର ଲୋକମୁଖରେ ଯୁଗ ଯୁଗ ଧରି ପ୍ରଚାରିତ ଅନେକ ଲୋକପ୍ରିୟ କାହାଣୀକୁ ସଂଗ୍ରହ କରି ୧୯୦୦ ମସିହାରୁ ୧୯୦୬ ମସିହା ମଧ୍ୟରେ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶ କରିଥିଲେ । ଏହି କାହାଣୀଗୁଡ଼ିକ ପରବର୍ତ୍ତୀ କାଳରେ 'ଉତ୍କଳ କାହାଣୀ' ନାମରେ ପ୍ରକାଶିତ ହେଲା ।

ଗୋପାଳଚନ୍ଦ୍ର ପ୍ରହରାଜ ଓଡ଼ିଆ ବ୍ୟତୀତ ସଂସ୍କୃତ, ଇଂରାଜୀ, ବଂଗଳା, ହିନ୍ଦୀ ଓ ପାର୍ଶୀ ଭାଷାରେ ପାରଙ୍ଗମ ଥିଲେ । ଆନ୍ଧ୍ର ବିଶ୍ୱବିଦ୍ୟାଳୟ ତାଙ୍କୁ 'ସାହିତ୍ୟ ବିଶାରଦ' ଉପାଧି ପ୍ରଦାନ କରିଥିଲା । ସେ ୧୯୪୫ ମସିହା ମେ ମାସ ୧୬ ତାରିଖରେ କଟକରେ ଇହଲୀଳା ସମ୍ବରଣ କଲେ । ମାତ୍ର ଭାଷାକୋଷ ପ୍ରଣୟନ ପାଇଁ ସେ ଓଡ଼ିଆ ଭାଷା ଓ ସାହିତ୍ୟରେ ଅମର ହୋଇ ରହିଛନ୍ତି ।



ଡେପୁଟି ଜେନେରାଲ ମ୍ୟାନେଜର
ପି.ପି. ଏଣ୍ଡ୍ ଇ.ଇ. ସେକସନ୍
ମେକନ୍, ରାଞ୍ଚି-୮୩୪୦୦୨

# ଗଙ୍ଗା ଓ ପ୍ରଜାପତି

ରବି କାନୁନ୍‌ଗୋ

ଲୁଚିବା ଓ ହଜିବା ଭିତରେ ଆକାଶ ପାତାଳ ପ୍ରଭେଦ । ଇଚ୍ଛା କରି ହଜିଲେ ତାହା ଲୁଚିବା ସାଙ୍ଗରେ ସମାନ ଏବଂ ମନ ଭୁଲେଇ ନିଜେ ଲୁଚିବା ଅସମ୍ଭବ । ଏ ଦୁଇ ଅନ୍ତିମ ବାସ୍ତବତା ଭିତରେ ମଣିଷ ବଞ୍ଚିବାକୁ ବାଧ୍ୟ । ଏ ବ୍ୟବଧାନର କଣ୍ଟା ଜଗି ବାଟ ନ ଚାଲିଲେ କାଲିର ପ୍ରେମ ଆଜି ପ୍ରଳୟରେ ପରିଣତ ହୁଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଆଲବର୍ଟ ଆଇନ୍‌ଷ୍ଟାଇନ୍ (୧୮୭୯–୧୯୫୫) ଆମେରିକାରେ ଏତେ ପପୁଲାର ହୋଇ ସାରିଥିଲେ ଯେ ଲୋକେ ତାଙ୍କୁ ବାଟଘାଟରେ ଅଟକାଇ 'କ୍ୱାଣ୍ଟମ-ଥିଓରି' ପଚାରିଲେ । ଶିଷ୍ଟଭାବେ ଏ ବିପତ୍ତିରୁ କେମିତି ରକ୍ଷା ପାଇବେ ସେଥିପାଇଁ ସେ ଏକ ଉପାୟ ଆବିଷ୍କାର କଲେ । ତେଣିକି, ଏମିତିକା ଜିଜ୍ଞାସୁ ହାବୁଡ଼ିଲେ ସେ କହୁଥିଲେ, ''ଆହା, ଆପଣ ବୋଧେ ମତେ ପ୍ରଫେସର ଆଇନ୍‌ଷ୍ଟାଇନ୍ ବୋଲି ଭାବିଛନ୍ତି କି ? ନାଇଁ ଆଜ୍ଞା, ମାଫ୍ କରିବେ, ସିଏ ଆଉ ଜଣେ । ମୁଁ କୁଆଡ଼େ ଟିକେ ତାଙ୍କ ପରି ଦେଖାଯାଏ ତ ।'' ତା'ପରେ ଲୋକଟି ନିଜଆଡୁ 'ସରି–ସରି' କହି ବାଟ କାଟେ ।

ତାଙ୍କର ଗୋଟିଏ ଉକ୍ତି, ''Each makes this cosmos and its construction the pivot of his emotional life, in order to find in this way peace and security which he cannot find in the narrow whirlpool of personal experience'' (My Philosophy : 1934) ଜୀବନ ଆବେଗରେ ପରିତୋଷ ଓ ପୂର୍ଣ୍ଣତା ପାଇଁ ପ୍ରତ୍ୟେକ ସବାଆଗେ ନିଜ ଚାରିପଟେ ବ୍ରହ୍ମାଣ୍ଡଟିଏ ରଚନା କରନ୍ତି । ତା ଉପରେ ଠିଆ ହୋଇ ତା'ରି ପରିଧି ଭିତରୁ ସେ ସନ୍ତୋଷ ଓ ଶାନ୍ତି ଖୋଜେ । କାଳର ଭଉଁରିରେ ବଞ୍ଚୁଥିବା ଜଣଜଣିକିଆ ବିବେଚନାରୁ ଏ 'ପିଭଟ୍' (ଅକ୍ଷବିନ୍ଦୁ)ର ଦମ୍ଭ ବୁଝିବା ସମ୍ଭବ ନୁହେଁ ।

ଆବଶ୍ୟକତା ନ ଥିଲେ କାହାର ବା କାହିଁକି ପରିଚୟଟିଏ ଦରକାର ହୁଅନ୍ତା ?

'ମୁଁ ଓଡ଼ିଆ' – ଏ ଉଚ୍ଚାରଣ ଏକ ଆବେଗିକ ଆବଶ୍ୟକତା । ବାରମ୍ବାର ମେହେରଙ୍କ କବିତା ଉଦ୍ଧାର କରି ପ୍ରତିକ୍ରିୟା ପ୍ରକାଶ କରିବା ଗେଟାପାର୍ଚ୍ଚା କଣ୍ଢେଇ ପରି । ଦେଖିବାକୁ ତୋରା ଲାଗେ ଏବଂ ତଳେ ପଡ଼ିଲେ ତୁଟିଯାଏ । ଓଡ଼ିଆ ଅସ୍ମିତା ଇତ୍ୟାଦି କହିବାକୁ ଭଲ ଲାଗେ, କିନ୍ତୁ କେହି ବୁଝନ୍ତିନି । ନିହାତି ମାତ୍ରା ନ ହୁଡ଼ିଲେ, ଭାବପ୍ରବଣତା ମୋଟେ ଆବେଗରେ ପରିଣତ ହୁଏନି ବା ଆଇନ୍‌ର ନିଷିଦ୍ଧ ଇଲାକା ମାଡ଼େନା । ତାହା ପାଳନ ନ କଲେ କେହି କାହାକୁ ଫାଶୀ ଦିଅନ୍ତିନି । ମଣିଷକୁ ନିଜ ଆବେଗ ନିଜ ଆଡୁ ସଜାଡ଼ି ରଖିବାକୁ ହୁଏ । ପ୍ରେମ ସାଇତିବାକୁ ଯେମିତି ଫୁଲଟିଏ ବା ଗେଲ ଟିକେ ଦରକାର ହୁଏ ସେମିତି ଆବେଗ ଅକ୍ଷତ ରଖିବାକୁ କିଛି ମୂଲ ବି ଭରଣା କରିବାକୁ ପଡ଼େ ।

ଓଡ଼ିଶାର ଲୋକେ ଆବେଗିକ ଭାବେ ଓଡ଼ିଆ କି ? ନିର୍ଭର ବିଶ୍ୱାସରେ କୁହାଯାଇପାରେ–ନା ।

ଭାରତ ଗଣରାଜ୍ୟ ମହାମହିମ ରାଷ୍ଟ୍ରପତିଙ୍କ ସମ୍ମତି ପରେ ଗତ ନଭେମ୍ବର ୪ରେ ଆମ ସରକାର ଘୋଷଣା କଲେ ଯେ '୨୦୧୧ ଏପ୍ରିଲ ୧'ରୁ ଓଡ଼ିଶା /ODISHA ନାଁ ଅଫିସିଆଲ ହେଲା । ଏଣିକି ସମସ୍ତେ ରାଜ୍ୟକୁ ଓଡ଼ିଶା ଓ ଭାଷାକୁ ଓଡ଼ିଆ କହିବେ । ଯାଡୁସ୍ୟାଡୁ କେହି ଲେଖିବେନି କି କହିବେନି । ଏ ଦିନଟିକୁ ମୁଖ୍ୟମନ୍ତ୍ରୀ କହିଲେ, ଐତିହାସିକ ।

ଓଡ଼ିଶାର ଶିକ୍ଷିତମାନେ ଓଡ଼ିଆରେ ଲେଖନ୍ତିନି । ଏହାର କାରଣ ନୁହେଁ ଯେ ସେମାନେ ଇଂଲିଶରେ ପଣ୍ଡିତ । ଅଭ୍ୟାସ ଦୋଷ ଛଡ଼ା ଏହା ସପକ୍ଷରେ ଖାସ୍ କିଛି ଯୁକ୍ତି ନ ଥାଏ ।

ଏବେ ବାହାଘର ସିଜିନ ଚାଲିଛି । ଆମେ ଲକ୍ଷ୍ୟ କରୁ ଯେ ଓଡ଼ିଆ ଲୋକେ ବାହା–ବ୍ରତ–ଘର ପ୍ରତିଷ୍ଠା ଇତ୍ୟାଦି ନିମନ୍ତ୍ରଣପତ୍ର ଇଂଲିଶରେ ଛାପନ୍ତି । ଦେଶର ଅନ୍ୟ ପ୍ରାନ୍ତରରେ ଆଉ କେହି ଏମିତି କରନ୍ତିନି । ଓଡ଼ିଆମାନେ ଏମିତି କରନ୍ତି କାହିଁକି ? ଯଦିଓ ହର୍ତ୍ତା, କର୍ତ୍ତା ଏବଂ ଅତିଥିଙ୍କ ଭିତରୁ ୯୯.୯୯୯% ଓଡ଼ିଆଭାଷୀ । ପୁଣି ସେଥିରେ ଯେଉଁ ବିଛୁଆତି କିସମ ଶବ୍ଦ ପ୍ରୟୋଗ ହୁଏ, ନ କହିବା ଭଲ । ଆଜି ପ୍ରୟୋଗ ହେଉଛି 'Wedding Knot' (ଶୁଭ ପରିଣୟ) ଓ 'Thread Ceremony' (ବ୍ରତୋପନୟନ) । ସମୟାନୁକ୍ରମେ ହୁଏତ ସେଗୁଡ଼ିକ 'Hangman Knot','Guillotin' ବା 'Rope'ରେ ପରିଣତ ହୋଇପାରେ ।

କେବଳ ମୃତ୍ୟୁ ସୂଚନା ଜଣାଇବାକୁ ଗଙ୍ଗା–ପତ୍ର ଏପର୍ଯ୍ୟନ୍ତ ଆମେ ଇଂଲିଶରେ ଦେଖି ନାହୁଁ । ଆମ ପାଇଁ ଆଇନ୍‌ଷ୍ଟାଇନ୍ ବର୍ଣ୍ଣିତ 'ପିଭଟ୍' ବା ଆବେଗର ମାନେ କ'ଣ ? ଯିଏ ମଲା, ସିଏ ଓଡ଼ିଆରେ ମରୁ ! ଯିଏ ବଞ୍ଚିରହିଲେ, ସେମାନଙ୍କର ନ ହେଲେ ଚଳିବ ।



# ଶ୍ରୀମନ୍ଦିରରେ ପାଳିତ ହେଉଥିବା ବିଭିନ୍ନ ଯାନିଯାତ୍ରା ଓ ପର୍ବପର୍ବାଣି

ଅଧ୍ୟାପକ ତରଣୀସେନ ବେହେରା

''ବାରମାସରେ ତେର ଯାତ''- ଭାରତବର୍ଷର ଅନ୍ୟତମ ଶ୍ରେଷ୍ଠଧାମ ତଥା ଉତ୍କଳୀୟ ଧର୍ମ-ସଂସ୍କୃତିର ମହାନ୍ ପୀଠ ଶ୍ରୀମନ୍ଦିର-ଶ୍ରୀକ୍ଷେତ୍ରରେ ପାଳିତ ଯାନିଯାତ୍ରା ଓ ପର୍ବପର୍ବାଣି ସହିତ ଓଡ଼ିଆଘରର ଯାନିଯାତ୍ରା ଓ ପର୍ବପର୍ବାଣିର ନିବିଡ଼ ସମ୍ପର୍କ ରହିଛି । ଜଗତବାସୀଙ୍କୁ ଧର୍ମ ଭାବନାରେ ନିମଗ୍ନ କରିବା ପାଇଁ, ସତ୍‌ପଥକୁ ଆଣିବା ପାଇଁ ଓ ପାପପଙ୍କରୁ ଉଦ୍ଧାର କରିବା ପାଇଁ ପ୍ରତି ବର୍ଷ ଲୀଳାମୟ ମହାପ୍ରଭୁ ଶ୍ରୀଜଗନ୍ନାଥ ଏହି ଯାନିଯାତ୍ରା ଓ ପର୍ବପର୍ବାଣି ପ୍ରବର୍ତ୍ତନ କରୁଥିବା ବିଶ୍ୱାସ ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମୌଳିକ ଯାତ୍ରା ଭାବେ ବାର ଯାତ୍ରା ପ୍ରସିଦ୍ଧ । ଏହି ସବୁ ଯାତ୍ରାଗୁଡ଼ିକର ବର୍ଣ୍ଣନା ଯାତ୍ରା ଭାଗବତ, ନୀଳାଦ୍ରି ମହୋଦୟ, ସ୍କନ୍ଦପୁରାଣ, ବାମଦେବ ସଂହିତା ପ୍ରଭୃତି ଗ୍ରନ୍ଥରେ ଉଲ୍ଲେଖ ରହିଥିଲେ ହେଁ ''ଲୋକନାଥ ବିଦ୍ୟାଧର''ଙ୍କ ''ନୀଳାଦ୍ରି ମହୋତ୍ସବ'' ଗ୍ରନ୍ଥର ବର୍ଣ୍ଣନା ଅନୁଯାୟୀ-

''ସ୍ନାହାନ ଗୁଣ୍ଡିଚା ଶୟନ ଯାତ୍ରା ଅନ୍ତେ ଅୟନ
ପାଶ୍ୱର୍ ପରିବର୍ତ୍ତନ ଉଥାପନ ଓଢ଼ଣ ।
ମକର ଅଭିଷେକ ଦୋଳ ଦମନକ ଚନ୍ଦନ
ଯେ ରୂପେ ଦ୍ୱାଦଶ ଉତ୍ସବ ଯେକେ ସଘନ ।''

(୨/୩-୪)

ଏହି ବାର ଯାତ୍ରା ସହିତ ବୈଶାଖ ଶୁକ୍ଳ ଅଷ୍ଟମୀରେ ଅନୁଷ୍ଠିତ ହେଉଥିବା ନୀଳାଦ୍ରି ମହୋଦୟକୁ ମିଶାଇ ତେର ଯାତ୍ରା ପ୍ରସିଦ୍ଧ ।

ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରରେ ତେର ଯାତ୍ରା ଅନୁଷ୍ଠିତ ହେଉଥିଲାବେଳେ ଜନସାଧାରଣଙ୍କ ପାଖରେ ଶତାଧିକ ଯାନିଯାତ୍ରା ଓ ପର୍ବପର୍ବାଣି ପାଳିତ ହୋଇଥାଏ । ଏହି ଯାନିଯାତ୍ରା ଓ ପର୍ବପର୍ବାଣି କେବେଠାରୁ ପ୍ରଚଳନ ହେଲା ଓ ଏହା କିପରି ଏତେ ସଂଖ୍ୟାରେ ପହଞ୍ଚିଲା ସେ ସମ୍ପର୍କରେ ନିର୍ଦ୍ଦିଷ୍ଟ ମତ ଦେବା କଷ୍ଟକର ବ୍ୟାପାର ।

ବୈଶାଖ ମାସର ମହାବିଷୁବ ସଂକ୍ରାନ୍ତିଠାରୁ ଚୈତ୍ର ପୂର୍ଣ୍ଣିମା ଯାଏ ଶ୍ରୀମନ୍ଦିରରେ ପାଳନ କରାଯାଉଥିବା ଯାନିଯାତ୍ରା ଓ ପର୍ବପର୍ବାଣିର ଏକ ତାଲିକା ନିମ୍ନରେ ପ୍ରଦତ୍ତ କରାଗଲା-

୧. ମହାବିଷୁବ ସଂକ୍ରାନ୍ତି : ବୈଶାଖ ମେଷ ସଂକ୍ରାନ୍ତି ।
୨. ଅକ୍ଷୟ ତୃତୀୟା (ରଥ ଅନୁକୂଳ ଓ ଚନ୍ଦନ ଯାତ୍ରାରମ୍ଭ): ବୈଶାଖ ଶୁକ୍ଳ ତୃତୀୟା ।
୩. ନୀଳାଦ୍ରି ମହୋତ୍ସବ (ଅଧିବାସ) : ବୈଶାଖ ଶୁକ୍ଳ ସପ୍ତମୀ ।
୪. ନୀଳାଦ୍ରି ମହୋତ୍ସବ : ବୈଶାଖ ଶୁକ୍ଳ ଅଷ୍ଟମୀ
୫. ସୀତା ନବମୀ : ବୈଶାଖ ଶୁକ୍ଳ ନବମୀ
୬. ନୃସିଂହ ଜନ୍ମ : ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ
୭. ଚନ୍ଦନ ପୂର୍ଣ୍ଣିମା : ବୈଶାଖ ପୂର୍ଣ୍ଣିମା
୮. ଭଉଁରୀ ଯାତ୍ରା : ଜ୍ୟେଷ୍ଠ କୃଷ୍ଣ ସପ୍ତମୀ
୯. ଜଳ କ୍ରୀଡ଼ା : ଜ୍ୟେଷ୍ଠ କୃଷ୍ଣ ଏକାଦଶୀ
୧୦. ସାବିତ୍ରୀ ବ୍ରତ : ସାବିତ୍ରୀ ଅମାବାସ୍ୟା
୧୧. ଶିବ ବିବାହୋତ୍ସବ : ଜ୍ୟେଷ୍ଠ ଶୁକ୍ଳ ପଞ୍ଚମୀ
୧୨. ଶୀତଳ ଷଷ୍ଠୀ : ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ
୧୩. ରାଜେନ୍ଦ୍ରାଭିଷେକ ଓ ଗଙ୍ଗା ଦଶହରା : ଜ୍ୟେଷ୍ଠ ଶୁକ୍ଳ ଦଶମୀ
୧୪. ପଞ୍ଚକ : ଜ୍ୟେଷ୍ଠ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣିମା ଯାଏଁ
୧୫. ରୁକ୍ମିଣୀ ହରଣ ବା ରୁକ୍ମିଣୀ ବିବାହୋତ୍ସବ : ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ
୧୬. ଚମ୍ପକ ଦ୍ୱାଦଶୀ : ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ
୧୭. ରଜ ସଂକ୍ରାନ୍ତି : ମିଥୁନ ସଂକ୍ରାନ୍ତି
୧୮. ଦଇତାପତି ଶ୍ରୀମନ୍ଦିର ପ୍ରବେଶ : ଜ୍ୟେଷ୍ଠ ଶୁକ୍ଳ ତ୍ରୟୋଦଶୀ
୧୯. ଦେବସ୍ନାନ ଯାତ୍ରା ଓ ଗଜାନନ ବେଶ : ଜ୍ୟେଷ୍ଠ ପୂର୍ଣ୍ଣିମା

୨୦. ଅଣସର ନୀତି ଆରମ୍ଭ : ଜ୍ୟେଷ୍ଠ ପୂର୍ଣ୍ଣିମାଠାରୁ ଚତୁର୍ଦ୍ଦଶୀ ଯାଏଁ ୧୫ ଦିନ
୨୧. ଫୁଲୁରି ଲାଗି : ଆଷାଢ଼ କୃଷ୍ଣ ପଞ୍ଚମୀ
୨୨. ଚକା ବିଜେ : ଆଷାଢ଼ କୃଷ୍ଣ ଦଶମୀ
୨୩. ଖଳି ଓ ଚନ୍ଦନ ଲାଗି : ଆଷାଢ଼ କୃଷ୍ଣ ଏକାଦଶୀ
୨୪. ଦ୍ୱାଦଶୀ ଓ ରାଜପ୍ରସାଦ ବିଜେ : ଆଷାଢ଼ କୃଷ୍ଣ ଦ୍ୱାଦଶୀ
୨୫. ଘଣାଲାଗି ଓ ଶ୍ରୀପୟର ମୁଦା : ଆଷାଢ଼ କୃଷ୍ଣ ତ୍ରୟୋଦଶୀ
୨୬. ଚକା ଅଣସର ଲାଗି : ଆଷାଢ଼ କୃଷ୍ଣ ଚତୁର୍ଦ୍ଦଶୀ
୨୭. ଉଭା ଯାତ୍ରା : ଆଷାଢ଼ ଅମାବାସ୍ୟା
୨୮. ନେତ୍ରୋତ୍ସବ : ଆଷାଢ଼ ଅମାବାସ୍ୟା (ବେଳେବେଳେ ପ୍ରତିପଦା)
୨୯. ଶ୍ରୀଗୁଣ୍ଡିଚା ବା ରଥଯାତ୍ରା : ଆଷାଢ଼ ଶୁକ୍ଳ ଦ୍ୱିତୀୟା
୩୦. ହେରା ପଞ୍ଚମୀ : ଆଷାଢ଼ ଶୁକ୍ଳ ଷଷ୍ଠୀ
୩୧. ବାହୁଡ଼ା ଯାତ୍ରା : ଆଷାଢ଼ ଶୁକ୍ଳ ଦଶମୀ
୩୨. ରଥ ଉପରେ ସୁନା ବେଶ ଓ ଦେବଶୟନ ଯାତ୍ରା : ଆଷାଢ଼ ଶୁକ୍ଳ ଏକାଦଶୀ
୩୩. ଗରୁଡ଼ ଶୟନ ଓ ରଥ ଉପରେ ଅଧରପଣା : ଆଷାଢ଼ ଶୁକ୍ଳ ଦ୍ୱାଦଶୀ
୩୪. ନୀଳାଦ୍ରି ବିଜେ : ଆଷାଢ଼ ଶୁକ୍ଳ ତ୍ରୟୋଦଶୀ
୩୫. ଦକ୍ଷିଣାୟନ ବନ୍ଦାପନା ବା ଯାତ୍ରା : କର୍କଟ ସଂକ୍ରାନ୍ତି
୩୬. ଚିତାଲାଗି ବା ଶ୍ରୀଜୀଉଙ୍କ ସୁବର୍ଣ୍ଣ ଚିତା ଲାଗି : ଶ୍ରାବଣ ଅମାବାସ୍ୟା
୩୭. ବାଡ଼ ନୃସିଂହ ବିଜେ : ଶ୍ରାବଣ ଶୁକ୍ଳ ନବମୀ
୩୮. ଝୁଲଣ ଯାତ୍ରା : ଶ୍ରାବଣ ଶୁକ୍ଳ ଦଶମୀଠାରୁ ଭାଦ୍ର ପ୍ରତିପଦା ଯାଏଁ
୩୯. ବଳଭଦ୍ର ଜନ୍ମ ଓ ଗହ୍ମା ପୂର୍ଣ୍ଣିମା : ଶ୍ରାବଣ ପୂର୍ଣ୍ଣିମା
୪୦. ଚତୁର୍ମାସ୍ୟା ବ୍ରତ : ଶ୍ରାବଣ ପୂର୍ଣ୍ଣିମାଠାରୁ କାର୍ତ୍ତିକ ପୂର୍ଣ୍ଣିମା-୪ ମାସ
୪୧. ରାହୁରେଖା ଲାଗି : ଭାଦ୍ରବ କୃଷ୍ଣ ପଞ୍ଚମୀ
୪୨. ଦେବକୀ ସାନ୍ତ୍ୱନା ଉତ୍ସବ : ଭାଦ୍ରବ କୃଷ୍ଣ ସପ୍ତମୀ
୪୩. ଶ୍ରୀକୃଷ୍ଣ ଜନ୍ମ ଓ ଜନ୍ମାଷ୍ଟମୀ : ଭାଦ୍ରବ କୃଷ୍ଣ ଅଷ୍ଟମୀ
୪୪. ନନ୍ଦୋତ୍ସବ : ଭାଦ୍ରବ କୃଷ୍ଣ ନବମୀ
୪୫. ବନଭୋଜୀ ବେଶ : ଭାଦ୍ରବ କୃଷ୍ଣ ଦଶମୀ
୪୬. କାଳୀୟ ଦଳନ ବେଶ ଓ ଧେନୁକାସୁର ବଧ : ଭାଦ୍ରବ କୃଷ୍ଣ ଏକାଦଶୀ
୪୭. ପ୍ରଳମ୍ବାସୁର ବଧ ବେଶ : ଭାଦ୍ରବ କୃଷ୍ଣ ଦ୍ୱାଦଶୀ
୪୮. କୃଷ୍ଣ-ବଳରାମ ବେଶ : ଭାଦ୍ରବ କୃଷ୍ଣ ତ୍ରୟୋଦଶୀ
୪୯. ସପ୍ତପୁରୀ ଅମାବାସ୍ୟା ଓ ସାତପୁରୀ ଭୋଗ : ଭାଦ୍ରବ ଅମାବାସ୍ୟା
୫୦. ଦାବାଗ୍ନି : ଭାଦ୍ରବ ଶୁକ୍ଳ ପ୍ରତିପଦା
୫୧. ନିକୁଞ୍ଜ ଲୀଳା : ଭାଦ୍ରବ ଶୁକ୍ଳ ଦ୍ୱିତୀୟା
୫୨. ବିନାୟକ ବ୍ରତ ବା ଗଣେଶ ପୂଜା : ଭାଦ୍ରବ ଶୁକ୍ଳ ଚତୁର୍ଥୀ ।
୫୩. ଋଷି ପଞ୍ଚମୀ : ଭାଦ୍ରବ ଶୁକ୍ଳ ପଞ୍ଚମୀ
୫୪. କୃଷ୍ଣ ଲୀଳା : ଭାଦ୍ରବ ଶୁକ୍ଳ ଷଷ୍ଠୀ ଓ ସପ୍ତମୀ
୫୫. ଶ୍ରୀରାଧାଷ୍ଟମୀ ଓ ଲକ୍ଷ୍ମୀବ୍ରତ : ଭାଦ୍ରବ ଶୁକ୍ଳ ଅଷ୍ଟମୀ
୫୬. କୃଷ୍ଣ ଲୀଳା (ଲବଣିଖିଆ ଓ ମଥୁରା ହାଟ ଜୁର) : ଭାଦ୍ରବ ଶୁକ୍ଳ ଦଶମୀ
୫୭. ପାର୍ଶ୍ୱ ପରିବର୍ତ୍ତନ : ଭାଦ୍ରବ ଶୁକ୍ଳ ଏକାଦଶୀ
୫୮. ବାମନ ବେଶ, ସୁନିଆଁ, ଗରୁଡ଼ ପାର୍ଶ୍ୱ ପରିବର୍ତ୍ତନ ଓ ଲକ୍ଷ୍ମୀନାରାୟଣ ବ୍ରତ : ଭାଦ୍ରବ ଶୁକ୍ଳ ଦ୍ୱାଦଶୀ
୫୯. ଅନନ୍ତ ବ୍ରତ : ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ
୬୦. ଇନ୍ଦ୍ର ଉତ୍ସବ : ଭାଦ୍ରବ ପୂର୍ଣ୍ଣିମା
୬୧. ସହସ୍ର କୁମ୍ଭାଭିଷେକ : ଆଶ୍ୱିନ କୃଷ୍ଣ ଅଷ୍ଟମୀ
୬୨. ଷୋଡ଼ଶ ପୂଜା : ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଶୁକ୍ଳ ନବମୀ ଯାଏଁ - ୧୬ ଦିନ ବ୍ୟାପୀ ।
୬୩. ମହାଳୟା : ମହାଳୟା ଅମାବାସ୍ୟା
୬୪. ଦୁର୍ଗା ପୂଜା : ଆଶ୍ୱିନ ଶୁକ୍ଳ ସପ୍ତମୀଠାରୁ ନବମୀ ଯାଏଁ
୬୫. ଦଶହରା ବା ବିଜୟ ଦଶମୀ ଓ ଶ୍ରୀଜଗନ୍ନାଥଙ୍କ ରାଜବେଶ : ଆଶ୍ୱିନ ଶୁକ୍ଳ ଦଶମୀ
୬୬. କାର୍ତ୍ତିକ ବ୍ରତ, ବାଳଧୂପ ଓ ରାଧା-ଦାମୋଦର ବେଶ : ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀଯାଏଁ- ଏକମାସ ବ୍ୟାପୀ ।

୬୭. ଦ୍ୟୂତ କ୍ରୀଡ଼ା : କୁମାର ପୂର୍ଣ୍ଣିମା
୬୮. ଦୀପାବଳୀ : ଦୀପାବଳୀ ଅମାବାସ୍ୟା
୬୯. ହରିହର ବେଶ : କାର୍ତ୍ତିକ ଶୁକ୍ଳ ପକ୍ଷର ପ୍ରତ୍ୟେକ ସୋମବାର
୭୦. ଅଁଳା ନବମୀ : କାର୍ତ୍ତିକ ଶୁକ୍ଳ ନବମୀ
୭୧. ଦେବ ଉତ୍‌ଥାପନ, ଷୋଳଶାସନ ଭୋଗ, ଠିଆ କିଆ ବେଶ ବା ଲକ୍ଷ୍ମୀନାରାୟଣ ବେଶ : କାର୍ତ୍ତିକ ଶୁକ୍ଳ ଏକାଦଶୀ ।
୭୨. ଭୀଷ୍ମ ବା ବକ ପଞ୍ଚକାରମ୍ଭ : କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣିମା ଯାଏଁ ୫ ଦିନ
୭୩. ବାଙ୍କଚୂଡ଼ା ବେଶ : କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ
୭୪. ଗରୁଡ଼ ଉତ୍‌ଥାପନ : କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ
୭୫. ଶରତ ରାସ, ଆଡ଼କିଆ ବେଶ ବା ତ୍ରିବିକ୍ରମ ବେଶ : କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ
୭୬. ଡାଳିକିଆ ବେଶ ବା ନୃସିଂହ ବେଶ : କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ
୭୭. ରାସ ପୂର୍ଣ୍ଣିମା, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସୁନାବେଶ, ରାଜରାଜେଶ୍ୱର ବେଶ : କାର୍ତ୍ତିକ ପୂର୍ଣ୍ଣିମା
୭୮. ଶ୍ରୀକ୍ଷେତ୍ର ପରିକ୍ରମା : ମାର୍ଗଶିର କୃଷ୍ଣ ପଞ୍ଚମୀ
୭୯. ପ୍ରଥମାଷ୍ଟମୀ : ମାର୍ଗଶିର କୃଷ୍ଣ ଅଷ୍ଟମୀ
୮୦. ଦେବ ଦୀପାବଳି, ଦୀପଦାନ, ପିତୃଶ୍ରାଦ୍ଧ ଓ ଶ୍ରାଦ୍ଧ ବେଶ : ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ଶୁକ୍ଳ ପ୍ରତିପଦା
୮୧. ଓଢ଼ଣ ଷଷ୍ଠୀ : ମାର୍ଗଶିର ଶୁକ୍ଳ ଷଷ୍ଠୀ
୮୨. ଘୋଡ଼ ଲାଗି ବେଶ : ମାର୍ଗଶିର ଶୁକ୍ଳ ଷଷ୍ଠୀଠାରୁ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ
୮୩. ମହୋଦଧି ଅମାବାସ୍ୟା : ମାର୍ଗଶିର ଅମାବାସ୍ୟା
୮୪. ବସ୍ତ୍ରାଦିବାସ : ମାର୍ଗଶିର ଶୁକ୍ଳ ପଞ୍ଚମୀ
୮୫. ପ୍ରାବରଣ ଯାତ୍ରା : ମାର୍ଗଶିର ଶୁକ୍ଳ ଷଷ୍ଠୀ
୮୬. ଲକ୍ଷ୍ମୀ ପୂଜା : ମାର୍ଗଶିର ମାସର ପ୍ରତ୍ୟେକ ଗୁରୁବାର
୮୭. ପଣ୍ଡୁଓଷା : ମାର୍ଗଶିର ପୂର୍ଣ୍ଣିମା
୮୮. ଧନୁ ସଂକ୍ରାନ୍ତି (ପହିଲି ଭୋଗ ଆରମ୍ଭ) : ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ଯାଏଁ
୮୯. ବକୁଳ ଅମାବାସ୍ୟା : ପୌଷ ଅମାବାସ୍ୟା
୯୦. ନବାଙ୍କ ବେଶ : ମକର ସଂକ୍ରାନ୍ତି ପୂର୍ବଦିନ
୯୧. ମକର ସଂକ୍ରାନ୍ତି : ମକର ସଂକ୍ରାନ୍ତି
୯୨. ଶାମ୍ବ ଦଶମୀ : ପୌଷ ଶୁକ୍ଳ ଦଶମୀ
୯୩. ପୁଷ୍ୟାଭିଷେକ, ସୁନାବେଶ ଓ ରଘୁନାଥ ବେଶ : ପୌଷ ପୂର୍ଣ୍ଣିମା
୯୪. ତ୍ରିବେଣୀ ଅମାବାସ୍ୟା : ମାଘ ଅମାବାସ୍ୟା
୯୫. ପଦ୍ମ ବେଶ : ମାଘ ଶୁକ୍ଳ ପ୍ରତିପଦା ଶ୍ରୀପଞ୍ଚମୀ ମଧ୍ୟରେ ବୁଧବାର ବା ଶନିବାର
୯୬. ଶ୍ରୀପଞ୍ଚମୀ : ମାଘ ଶୁକ୍ଳ ପଞ୍ଚମୀ
୯୭. ବସନ୍ତୋତ୍ସବ : ମାଘ ଶୁକ୍ଳ ପଞ୍ଚମୀଠାରୁ ବସନ୍ତ ଋତୁ ଶେଷ ଯାଏଁ
୯୮. ତିଳ ସପ୍ତମୀ ବା ସପ୍ତମୀ ସ୍ନାନ : ମାଘ ଶୁକ୍ଳ ସପ୍ତମୀ
୯୯. ଭୌମ ଏକାଦଶୀ : ମାଘ ଶୁକ୍ଳ ଏକାଦଶୀ
୧୦୦. ଅଗ୍ନି ଉତ୍ସବ : ମାଘ ଶୁକ୍ଳ ଚତୁର୍ଦ୍ଦଶୀ
୧୦୧. ଗଜ ଉଦ୍ଧାରଣ ବେଶ ଓ ସୁନାବେଶ : ମାଘ ପୂର୍ଣ୍ଣିମା
୧୦୨. ଶିବ ରାତ୍ର : ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ
୧୦୩. ଚାଚେରୀ ବେଶ : ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ଚତୁର୍ଦ୍ଦଶୀ ଯାଏଁ
୧୦୪. ଦୋଳ ଯାତ୍ରା : ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ଚୈତ୍ର କୃଷ୍ଣ ପ୍ରତିପଦା ଯାଏଁ–ସପ୍ତ ଦିବସ ବ୍ୟାପୀ
୧୦୫. ଫଗୁ ଦଶମୀ : ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ
୧୦୬. ଗୋବିନ୍ଦ ଦ୍ୱାଦଶୀ ସ୍ନାନ : ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀ
୧୦୭. ଦୋଳପୂର୍ଣ୍ଣିମା ଓ ସୁନାବେଶ : ଫାଲ୍‌ଗୁନ ପୂର୍ଣ୍ଣିମା
୧୦୮. ହୋଲି : ଚୈତ୍ର କୃଷ୍ଣ ପ୍ରତିପଦା
୧୦୯. ବେଣ୍ଟ ଯାତ୍ରା : ଚୈତ୍ର ଶୁକ୍ଳ ପ୍ରତିପଦା, ଚତୁର୍ଥୀ, ଅଷ୍ଟମୀ ଓ ଦ୍ୱାଦଶୀ
୧୧୦. ଚୈତ୍ର ଗୁଣ୍ଡିଚା : ଚୈତ୍ର ଶୁକ୍ଳ ଷଷ୍ଠୀ
୧୧୧. ଅଶୋକାଷ୍ଟମୀ : ଚୈତ୍ର ଶୁକ୍ଳ ଅଷ୍ଟମୀ
୧୧୨. ଶ୍ରୀରାମ ନବମୀ : ଚୈତ୍ର ଶୁକ୍ଳ ନବମୀ
୧୧୩. ଯଜ୍ଞ ରକ୍ଷା : ଚୈତ୍ର ଶୁକ୍ଳ ଦଶମୀ
୧୧୪. ସୀତା ବିବାହ : ଚୈତ୍ର ଶୁକ୍ଳ ଏକାଦଶୀ

୧୧୫. ବନବାସ : ଚୈତ୍ର ଶୁକ୍ଳ ଦ୍ୱାଦଶୀ

୧୧୬. ଦମନକ ଚୋରି : ଚୈତ୍ର ଶୁକ୍ଳ ତ୍ରୟୋଦଶୀ

୧୧୭. ଦମକଳ ଯାତ୍ରା ଓ ମାୟାମୃଗ ପ୍ରସ୍ଥାନ : ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ

୧୧୮. ଲଙ୍କା ପୋଡ଼ି : ଚୈତ୍ର ପୂର୍ଣ୍ଣିମା

ଏହା ବ୍ୟତୀତ :

୧୧୯. ନକ୍ଷେତ୍ର ବନ୍ଦାପନା : ଯେଉଁ ଦିନ ଦିଅଁଙ୍କର ଜନ୍ମ ନକ୍ଷତ୍ର ପଡ଼େ

୧୨୦. ଗୁରୁବାର ବା ଏକାନ୍ତ ନୀତି : ବର୍ଷର ପ୍ରତ୍ୟେକ ଗୁରୁବାର

୧୨୧. ଅମାବାସ୍ୟା ନୀତି : ଆଷାଢ଼ ମାସ ବ୍ୟତୀତ ବର୍ଷର ପ୍ରତ୍ୟେକ ଅମାବାସ୍ୟା

୧୨୨. ଏକାଦଶୀ ନୀତି : ବର୍ଷର ପ୍ରତ୍ୟେକ ଏକାଦଶୀ

୧୨୩. ବନକ ଲାଗି ବା ଶ୍ରୀମୁଖ ସିଂହାର : ବର୍ଷର ପ୍ରତ୍ୟେକ ବୁଧବାର କିମ୍ବା ଗୁରୁବାର ଦିନ

୧୨୪. ଭିତର ଦର୍ଶନ ଓ ଜଳକେଳି : ଜ୍ୟେଷ୍ଠ କୃଷ୍ଣ ଏକାଦଶୀ, ଶୁକ୍ଳ ଏକାଦଶୀ, ସାବିତ୍ରୀ ଅମାବାସ୍ୟା ଓ ଶୀତଳ ଷଷ୍ଠୀ

୧୨୫. ଗର୍ଭଣା ସଂକ୍ରାନ୍ତି : ତୁଳା ସଂକ୍ରାନ୍ତି

୧୨୬. ସେତୁ ବନ୍ଧ : ବୈଶାଖ କୃଷ୍ଣ ପ୍ରତିପଦା

୧୨୭. ରାବଣ ବଧ : ବୈଶାଖ କୃଷ୍ଣ ଦ୍ୱିତୀୟା

୧୨୮. ରାମାଭିଷେକ : ଯେଉଁ ଦିନ ପୁଷ୍ୟା କକଡ଼ା ନକ୍ଷତ୍ର ଥାଇ ମହାପ୍ରଭୁଙ୍କ ତାରା ଶୁଦ୍ଧି ହୁଏ, ସେଦିନ ଏହି ଅଭିଷେକ ନୀତି ହୁଏ ।



ଅଧ୍ୟାପକ
ସରକାରୀ ମହାବିଦ୍ୟାଳୟ, ପଲାସା, ଶ୍ରୀକାକୁଲାମ୍,
ଆନ୍ଧ୍ର ପ୍ରଦେଶ

# ପ୍ରଫେସର ଡଃ ଜଗନ୍ନାଥ ମହାନ୍ତି ଏକ ଅମ୍ଳାନ ପ୍ରତିଭା

ଡଃ. ଦାମୋଦର ମହାପାତ୍ର

ପ୍ରଫେସର ଡଃ ଜଗନ୍ନାଥ ମହାନ୍ତି ୧୯୩୭ ମସିହା ଜାନୁୟାରୀ ୭ ତାରିଖରେ ପୁରୀ ଜିଲ୍ଲାରୁ ଗୋପଥାନା ଅନ୍ତର୍ଗତ ଜଙ୍ଗଲବରୀରେ ଜନ୍ମଗ୍ରହଣ କରିଥିଲେ । ଶିକ୍ଷା ବିଭାଗର ପ୍ରଫେସର ଥାଇ ଶିଶୁସାହିତ୍ୟକୁ ତାଙ୍କର ଅବଦାନ ଅବିସ୍ମରଣୀୟ । ସେ ସର୍ବଭାରତୀୟ ଶିଶୁ ସମ୍ମେଳନର ସଭାପତି ଆସନ ଅଳଙ୍କୃତ କରିଥିଲେ । ପ୍ରଫେସର ମହାନ୍ତି 'ଦୂର ଦିଗନ୍ତ' ଲେଖି ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । ତାଙ୍କର ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣର କାର୍ଯ୍ୟକାଳ ମଧ୍ୟରେ ଶୈକ୍ଷିକ ପ୍ରଯୁକ୍ତି ବିଦ୍ୟା ଓଡ଼ିଶାରେ ନୂତନ ଦିଗର ଶୁଭାରମ୍ଭ କରିଥିଲା । ସେହିପରି ଉତ୍କଳ ବିଶ୍ୱବିଦ୍ୟାଳୟ ଏକାଡେମିକ୍ ଷ୍ଟାଫ୍ କଲେଜର ନିର୍ଦ୍ଦେଶକ ଭାବରେ ବହୁତ ବିକାଶୋନ୍ମୁଖୀ ପରିବର୍ତ୍ତନ ଆଣିଥିଲେ । ତାଙ୍କ ଅଧୀନରେ ୪୫ରୁ ଊର୍ଦ୍ଧ୍ୱ ଅଧ୍ୟାପକ ଓ ଶିକ୍ଷକ ପିଏଚ୍.ଡି. ଓ ଡି.ଲିଟ୍. ପାଇବାର ସୌଭାଗ୍ୟ ଅର୍ଜନ କରିଛନ୍ତି । ଶିକ୍ଷା ବିଷୟର ବହୁ ଉପାଦେୟ ପୁସ୍ତକ ରଚନା କରିବା ସହିତ ଶିଶୁମାନଙ୍କ ପାଇଁ ମଧ୍ୟ ବହୁ ଗୀତ, ଗପ ଓ ପୁସ୍ତକ ରଚନା କରିଛନ୍ତି ।

ଏହି ମିଷ୍ଟଭାଷୀ ବ୍ୟକ୍ତି ଜଣଙ୍କର ବ୍ୟକ୍ତିତ୍ୱ ଏପରି ଶୀର୍ଷରେ ପହଞ୍ଚି ଥିଲା ଯେ ମଥା ଟେକି ଚାହିଁଲେ ମଧ୍ୟ ମୋ ଭଳି ମଣିଷ ଏହାକୁ ଦେଖିବା ସମ୍ଭବ ନୁହେଁ । ସେ ଆଜି ଆଉ ନାହାନ୍ତି । ଗଲା ୧୨.୩.୨୦୧୧ରେ ସେ ଇହଲୀଳା ସମ୍ବରଣ କଲେ ।

ସେ ଅତ୍ୟନ୍ତ ସ୍ୱଷ୍ଟବାଦୀ ଥିଲେ । ଯାହା ସତ୍ୟ, ତାହା ପ୍ରକାଶ କରିବାରେ ସେ କେବେ କୁଣ୍ଠାବୋଧ କରୁ ନ ଥିଲେ । ''ସତ କହିବାକୁ କିଆଁ ଡରିବି, ସତ କହି ପଛେ ମଲେ ମରିବି''– ଏହା ହିଁ ତାଙ୍କ ଆଦର୍ଶ ଥିଲା । ସତ କହିଲେ କାହାକୁ ବାଧିବ ବା କିଏ କ'ଣ ଭାବିବ ସେକଥା ସେ ଭାବୁ ନ ଥିଲେ । ସତ କହିବାକୁ ବେଳେବେଳେ ଭୟ ଲାଗେ । ମାତ୍ର ତାଙ୍କଠାରେ ସେ ଭୟ ନ ଥିଲା । ଏପରି ଘଟଣା ମୋ ସମ୍ମୁଖରେ ଘଟିଛି । ଯାହା ଫଳରେ ମୁଁ ସ୍ତବ୍ଧ ହୋଇଯାଇଛି ।

ପ୍ରଫେସର ମହାନ୍ତିଙ୍କ ଜୀବନରେ କଲମର କ୍ୟାପ ଦେବାକୁ କେବେ ପଡ଼େ ନାହିଁ । ଏତେ ପଢ଼ନ୍ତି ଓ ଏତେ ଲେଖନ୍ତି ଯେ, ଯିଏ ନ ଦେଖିବ ସେ ବିଶ୍ୱାସ କରିପାରିବ ନାହିଁ । ୧୯୮୮ ମସିହା ବେଳକୁ ମୁଁ ଏସ୍.ସି.ଇ.ଆର୍.ଟି.ରେ ତାଙ୍କ ସହିତ କାର୍ଯ୍ୟ କରିଛି । ସେତେବେଳକୁ କମ୍ପ୍ୟୁଟର ପ୍ରଚଳନ ଏତେ ନ ଥିଲା । ଟାଇପ୍ ମେସିନ୍‌ର ସହାୟତା ନେଇ ସେ ଗପ, ଗୀତ, ବହି ଲେଖି ଚାଲୁଥିଲେ । ମୁଁ ଥରେ ପଚାରିଲି, ସାର୍ ଆପଣ କ୍ଳାନ୍ତ ହୋଇ ପଡୁ ନାହାନ୍ତି କିପରି ? ସେ ଅତି ସାଧାରଣ ଭାବରେ ଉତ୍ତର ଦେଇଥିଲେ– ଇଚ୍ଛା ଥିଲେ, ଉଦ୍ଦେଶ୍ୟ ଥିଲେ, ନିଦ୍ରା ଓ କ୍ଳାନ୍ତି ଆପେ ଆପେ ଦୂରେଇ ଯାଏ, ମଣିଷର ଶକ୍ତି ଦ୍ୱିଗୁଣିତ ହୁଏ । ତାଙ୍କର ସେଇ କେଇପଦ କଥା ମୋତେ ଲେଖିବା ପାଇଁ ପ୍ରେରଣା ଯୋଗାଇଥିଲା । ଥରେ ସମ୍ବାଦ ଖବର କାଗଜରେ ମୋର ଲେଖାଟିଏ ବାହାରିବା ପରେ ତାଙ୍କୁ ଦେଖାଇ ଥିଲି । ମୋତେ ଉତ୍ତର ମିଳିଥିଲା, ''ଲେଖନ୍ତୁ, ଲେଖନ୍ତୁ– ଥରେ ଲେଖିଲେ, ଲେଖିଚାଲିବେ ।''

ଆଶ୍ଚର୍ଯ୍ୟ ମଣିଷ ସିଏ । ଜୀବନରେ ଅନ୍ୟର ଦୋଷତ୍ରୁଟିକୁ ନଜର ନ ଦେଇ, ଭଲ ଗୁଣକୁ ପ୍ରଶଂସା କରନ୍ତି । ଥରେ ମୁଁ ସାର୍‌ଙ୍କୁ ମୋର ଗୋଟିଏ ବହି ଦେଖାଇ କହିଲି ବହିଟି ଲେଖିଦେଲି, ମାତ୍ର ଭଲ ହେଲା ନାହିଁ । ସେ କହିଲେ, କିଏ କହିଲା ଭଲ ହେଲା ନାହିଁ । ହୁଏତ ଏହା ଭିତରେ ଏମିତି କିଛି ଥିବ ଯାହା କୌଣସି ବହିରେ ନ ଥିବ । ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ସେଦିନ । ଆଜିକାଲି ଲୋକ ଦୋଷଦୁର୍ବଳତା ବାଛିବାରେ ବ୍ୟସ୍ତ ଥିବା ବେଳେ, ଏହି ମହାମନୀଷୀ ମଣିଷର ଭଲଗୁଣ ଖୋଜି, ତାକୁ ପ୍ରଶଂସା କରି କୋଳେଇ ନେବାର ଯେଉଁ ଉଦ୍ୟମ କରୁଥିଲେ, ବାସ୍ତବିକ୍ ଆଜିକାଲି ଦୁନିଆରେ ତାହା ସ୍ୱପ୍ନ ।

ରାଗ, ଦ୍ୱେଷ, ଅହମିକାଠାରୁ ସେ ଢେର ଦୂରରେ ଥିଲେ । ଏଠି ଗୋଟିଏ କଥା ମନେପଡ଼େ । ସେତେବେଳେ ଡଃ ଶ୍ରୀବସ୍ତ

ଲାଞ୍ଜନ ଜେନା ଏସ୍.ସି.ଇ.ଆର୍.ଟିରେ ଚାକିରି କରିଥିଲେ । (ପରବର୍ତ୍ତୀ ସମୟରେ ନିର୍ଦ୍ଦେଶକ ଭାବରେ ଅବସର ନେଲେ) ଥରେ କୌଣସି କାରଣରୁ ଦୁଇଜଣଙ୍କ ଭିତରେ କଥା କଟାକଟି ହେଲା । ତା' ପରଦିନ ଘଟଣା । ଶ୍ରୀଯୁକ୍ତ ଜେନା ନିଜ ସିଟ୍‌କୁ ଗଲାବେଳେ ଯେହେତୁ ପ୍ରଫେସର ମହାନ୍ତିଙ୍କ ସିଟ୍ ବାମପଟେ ପଡ଼େ ତେଣୁ ଡାହାଣପଟକୁ ମୁହଁ କରି ଟିକିଏ ଜୋର୍‌ରେ ଚାଲିଯିବାବେଳେ ପଛରୁ ସାର୍ ଡାକିଲେ ଡଃ ଜେନା ଆସ ଆସ । ତା'ପରେ ସାଧାରଣ କଥାବର୍ତ୍ତା । ଯେପରି ପୂର୍ବଦିନ କିଛି ଘଟି ନ ଥିଲା । ତାଙ୍କ ପାଖରୁ ଫେରିବା ପରେ ଶ୍ରୀଯୁକ୍ତ ଜେନା ଏହା ମୋ ଆଗରେ ପ୍ରକାଶ କଲେ । ବଡ଼ମାନେ ସାନମାନଙ୍କ କଥାକୁ ନ ଧରି ଉଦାରତାର ସହ ସବୁ ହଜମ କରିଦିଅନ୍ତି । ଏହାହିଁ ଥିଲା ତା'ର ନମୁନା ।

ପର ପାଇଁ କଥା ପଦେ କହିବା ବା ଟିକିଏ ସାହାଯ୍ୟ କରିବା ପାଇଁ ତାଙ୍କର ଆଦୌ କଷ୍ଟ ନ ଥିଲା । ଥରେ ମୋ ସାନଭଉଣୀର କାମ ପାଇଁ ମୁଁ ତାଙ୍କୁ ଗୋଟିଏ ଫୋନ୍ କରିବାକୁ କହିଲି । ସେ ବିନା ଦ୍ୱିଧାରେ ଫୋନ୍ କରି ସମସ୍ୟାଟିର ସମାଧାନ କରିଦେଲେ । ଏଇ ଦୁଇମାସ ତଳର କଥା ଥରେ ଗୋଟିଏ ବିଶ୍ୱବିଦ୍ୟାଳୟରେ ସେ ଦେଖା ହେଲେ । ମୋତେ ସଂଗେ ସଂଗେ କହିଲେ ଦାମବାବୁ ଏଠି କ'ଣ କାମ ଅଛି ? ମୁଁ ତମକୁ କିଛି ସାହାଯ୍ୟ କରିପାରିବି ? ତାଙ୍କ ଜାଣନ୍ତରେ ହେଉ ବା ଅଜାଣତରେ ପର ପାଇଁ ପଦେ କହିବାକୁ ସେ ଆଗେଇ ଆସୁଥିଲେ ।

ପାଞ୍ଚ ସାତ ବର୍ଷ ତଳର କଥା ହେବ । ମୁଁ ପିପିଲି ଏସ୍.ଟି. ସ୍କୁଲକୁ ଯାଇଥାଏ । ସେଠାରେ ବସିଛି, ସାର୍ ଓ ମାଡ଼ାମ୍ ଦୁଇଜଣ ପହଞ୍ଚିଲେ । ସାର୍‌ଙ୍କଠାରୁ ବୁଝିଲି ସେ କୌଣସି କାରଣରୁ ଶୈକ୍ଷିକ ତଥ୍ୟ ସଂଗ୍ରହ କରିବାକୁ ଯାଇଥିଲେ । ବୟସ ତାଙ୍କ ପାଖରେ ହାର ମାନିଥିଲା । ଚାକିରି କରିବା ଜୀବନ ଓ ଅବସର ଜୀବନ ମଧ୍ୟରେ ତାଙ୍କର କିଛି ତଫାତ୍ ନ ଥିଲା । ଖୁବ୍ କମ୍ ବୟସରୁ ଚାଲିଗଲେ । ଓଡ଼ିଶାର ଶିକ୍ଷା ବିଭାଗ ତାଙ୍କଠାରୁ ଆହୁରି କିଛି ଆଶା କରୁଥିଲା ।

ଜୀବନରେ ଖୁସି ହେଲି ଏସ୍.ସି.ଇ.ଆର୍.ଟିରେ ତାଙ୍କ ସହିତ ସହକର୍ମୀ ଭାବେ କିଛି ଦିନ କାମ କରି । ମାତ୍ର ଅବଶୋଷ ରହିଗଲା ତାଙ୍କ ଛାତ୍ର ହୋଇପାରିଲି ନାହିଁ । ଏକଲବ୍ୟ ହୋଇ ରହିଗଲି । ସେ ଯାହା ହେଉନା କାହିଁକି ତାଙ୍କର ''ତୁମପରି ଛୋଟ ପିଲାଟିଏ...'' ପାଇଁ ସେ ଅମର ହୋଇ ରହିବେ ।



ଧନ୍ଦାମୂଳକ ଶିକ୍ଷା ନିର୍ଦ୍ଦେଶାଳୟ
ଭୁବନେଶ୍ୱର

# ନୌବାଣିଜ୍ୟର ସ୍ମୃତିରେ ବୋଇତବନ୍ଦାଣ

କାଞ୍ଚି ନାରାୟଣ ମହାନ୍ତି

ଜାତିକୁ ଉଦ୍‌ବୁଦ୍ଧ କରେ ଏହା ସମୃଦ୍ଧ ପରମ୍ପରା । ଇତିହାସକୁ ଭୁଲିଯାଇ କୌଣସି ଜାତି ପ୍ରଗତିର ପ୍ରଶସ୍ତିକୁ ଦେଖିନି । ସଂପ୍ରତି ଓଡ଼ିଶାର ବିଭିନ୍ନ ପ୍ରାନ୍ତରରେ ଐତିହାସିକ ବାଲିଯାତ୍ରାର ଆୟୋଜନ କରାଯାଉଛି । ଓଡ଼ିଶାର ନୌବାଣିଜ୍ୟ ସହ ସଂପୃକ୍ତିଥିବା ସାଗର ପାରି ଜାଭା, ବୋର୍ଣ୍ଣିଓ, ସୁମାତ୍ରା ସିଂହଳରେ ମଧ୍ୟ ଏହି ନୌବାଣିଜ୍ୟର ସ୍ମୃତିକୁ ସ୍ମରଣ କରାଯାଇ ଯାତ୍ରା ମହୋତ୍ସବର ଆୟୋଜନ କରାଯାଇଥାଏ । ଦେଶ ଦେଶ ମଧ୍ୟରେ ବାଣିଜ୍ୟଦ୍ରବ୍ୟ ବିନିମୟ ସହ ସାଂସ୍କୃତିକ ତଥା ଆଧ୍ୟାତ୍ମିକ ସନ୍ଦେଶର ବିନିମୟ ହୁଏ ।

ଉତ୍କଳର ନୌବାଣିଜ୍ୟ କେତେ ପ୍ରାଚୀନ ଓ ସୁଦୂରପ୍ରସାରୀ ତାହାର ପ୍ରାମାଣିକ ନମୁନା ଶ୍ରୀମନ୍ଦିର । କୋଣାର୍କ ସୂର୍ଯ୍ୟମନ୍ଦିର, ଲିଙ୍ଗରାଜ ମନ୍ଦିର, ରାଜାରାଣୀ ମନ୍ଦିର ଓ ଅନ୍ୟାନ୍ୟ ବହୁ ମନ୍ଦିର ଶିଳାଲେଖ, ମୋହର ଓ ମୁଦ୍ରାରେ ସ୍ଥାନିତ ହୋଇଅଛି ତା'ଛଡ଼ା ଓଡ଼ିଶାର ଓଷା ବ୍ରତ, ପାଲା, ଲୋକକାହାଣୀ ପର୍ବପର୍ବାଣିରେ ନୌବାଣିଜ୍ୟରେ ଓଡ଼ିଆ ସାଧବପୁଅ କେତେ ଦକ୍ଷ ଥିଲେ ତାହା ସୁସ୍ପଷ୍ଟ ।

କାର୍ତ୍ତିକ ପୂର୍ଣ୍ଣିମା ବର୍ଷର ଅନ୍ୟାନ୍ୟ ପୂର୍ଣ୍ଣିମାଠାରୁ ପବିତ୍ର ଓ ଶ୍ରେଷ୍ଠ ଧର୍ମୀୟ ମାସ । ଅତୀତ ଉତ୍କଳ ସାଧବପୁଅ ଓ ସୌଦାଗରମାନେ ଅଣ୍ଟାରେ ବଟୁଆ ପାଦରେ ନାଗରା ଜୋତା ପିନ୍ଧି ପାଲଟଣା ବୋଇତରେ ସୁଦୂର ବାଲି, ସିଂହଳ, ବ୍ରହ୍ମଦେଶ, ବୋର୍ଣ୍ଣିଓ, ଥାଇଲ୍ୟାଣ୍ଡ, କାମ୍ବୋଡ଼ିଆ ପର୍ଯ୍ୟନ୍ତ କେବଳ ନୁହେଁ ଐତିହାସିକମାନଙ୍କ ମତରେ କଳିଙ୍ଗବାସୀ ସାହସୀ ସାଧବ ସୌଦାଗରମାନେ ପେରୁ ଓ ମେକ୍ସିକୋ ପର୍ଯ୍ୟନ୍ତ ବୋଇତ ନେଇ ବାଣିଜ୍ୟ କରୁଥିଲେ ।

ପ୍ରାକୃତିକ ଓ ଭୌଗୋଳିକ ଦୃଷ୍ଟିକୋଣରୁ ଓଡ଼ିଶାର ଅବସ୍ଥିତି ସମୁଦ୍ରର ୪୮୦ କି.ମି. ଦୀର୍ଘ ଉପକୂଳ ଏହାକୁ ବାଣିଜ୍ୟ ପାଇଁ କରିଛି ଅନୁକୂଳ ଓ ଉପଯୋଗୀ । ମହାନଦୀ ପରି ଅନେକ ନଦୀର ମୁହାଣ ମଧ୍ୟ ସମୁଦ୍ରରେ ମିଶି ଏହାକୁ ବନ୍ଦର ପାଇଁ ଜଳପଥର ବିସ୍ତାର, ଯାହା ଆଭ୍ୟନ୍ତରୀଣ ଅଞ୍ଚଳକୁ ଦ୍ରବ୍ୟ ପରିବହନ ତଥା ସଂଗ୍ରହ ପାଇଁ କରିଛି ସୁଗମ ।

ସେତେବେଳେ କଳିଙ୍ଗର ବିସ୍ତୃତ ଉପକୂଳରେ ଅନେକ ପ୍ରସିଦ୍ଧ ବନ୍ଦର ଥିଲା । ସେଗୁଡ଼ିକ ହେଲେ ତାମ୍ରଲିପ୍ତ, ନରେଖା, ସାରେଖା, ପିପିଲି, କୋଣାଗର, ସୁବର୍ଣ୍ଣରେଖା, ବାଲେଶ୍ୱର, ଧାମରା, ଚେଳିତୋଳ, ଚାନ୍ଦବାଲି ହରିଶପୁର ପଞ୍ଚାମୁଣ୍ଡାଇ ପାଲୁର, ଚିଲିକା, ଦନ୍ତପୁର ।

ଏହି ବାଣିଜ୍ୟପୋତମାନେ ସୁସଜ୍ଜିତ ହୋଇ ମାସାଧିକକାଳ ପାଇଁ ଖାଦ୍ୟଦ୍ରବ୍ୟ ଧରି ଯାତ୍ରା ଆରମ୍ଭ କରିଥାନ୍ତି କାର୍ତ୍ତିକପୂର୍ଣ୍ଣିମା ତିଥିରେ । ସାଧବଘରର କୁଳବଧୂମାନେ ପାଟପିତାମ୍ବରୀରେ ସୁନା ଅଳଙ୍କାରରେ ନିଜକୁ ସଜାଇ ଧୂପଦୀପ ଚନ୍ଦନ ସିନ୍ଦୂର ଧରି ବୋଇତର ମଙ୍ଗରେ ଥିବା ମଙ୍ଗଳା ମାଆଙ୍କୁ ପୂଜା କରି ବୋଇତକୁ ବନ୍ଦାଇଥାନ୍ତି । ସବୁ ସାଧବ ସୌଦାଗରମାନଙ୍କ ମଥାରେ ପଗଡ଼ି ପିନ୍ଧାଇ ମଥାରେ ସିନ୍ଦୂର ଚନ୍ଦନ ଲଗାଇ ସେମାନଙ୍କ ଭିତରେ ଅସୀମ ସାହସ ଜଗାଇ ଦେଇଥାନ୍ତି । ଶଙ୍ଖ ହୁଳହୁଳି ଧ୍ୱନିରେ ସାଗରତଟ ନଦୀ ମୁହାଣ ଉଚ୍ଛୁଳି ଉଠେ ।

କାର୍ତ୍ତିକମାସ ବେଳକୁ ନଦୀର ଜଳରେ ସ୍ଥିରତା ଆସିଥାଏ । ପାଗ ଥାଏ ନାତିଶୀତୋଷ୍ଣ, ଆକାଶ ଥାଏ ନିର୍ମଳ । ପବନ ଥାଏ ଯାତ୍ରା ଅନୁଯାୟୀ ଅନୁକୂଳ ।

ନଦୀର ଜଳପଥ ଦେଇ ବନ୍ଦର ନିକଟକୁ ବଡ଼ବଡ଼ ନାଆ ବା ବୋଇତରେ ରପ୍ତାନି ପାଇଁ ଯେଉଁ ଦ୍ରବ୍ୟ ସବୁ ଆସିଥାଏ ସେଗୁଡ଼ିକ ମୁଖ୍ୟତଃ କଣ୍ଟିଲୋର ପିତଳ ବାସନ, ହାତୀଦାନ୍ତର ସୂକ୍ଷ୍ମ କାରୁକାର୍ଯ୍ୟର ଗୃହ ଉପକରଣ, କଟକର ତାରକସୀ କାମ, ସୁଗନ୍ଧ ଦ୍ରବ୍ୟ, ଚାନ୍ଦୁଆ, ବିଭିନ୍ନ ଚିତ୍ରକଳ୍ପରେ ବୁଣା ତନ୍ତୀମାନଙ୍କର ହାତବୁଣାଶାଢ଼ୀ କଉଡ଼ି ଧାନର ମେଣ୍ଟାରେ ପ୍ରସ୍ତୁତ ସୌଖୀନ ଗୃହସଜ୍ଜା । ଆଷାଢ଼ରେ ଫେରିଲାବେଳେ ସାଙ୍ଗରେ ନେଇ ଆସନ୍ତି ମୁକ୍ତା ସୁବର୍ଣ୍ଣ, ତମ୍ବା, ଚନ୍ଦନ ଅଗୁରୁ କଉଡ଼ିରେ ତିଆରି ଗୃହ ସାମଗ୍ରୀ, ପ୍ରବାଳ ଓ ଅନେକ ସାମୁଦ୍ରିକ ଦ୍ରବ୍ୟ । ସେତେବେଳେ

ବିଭିନ୍ନ ଜାତିର ଲୋକେ ସାଧବଭାବେ ବାଣିଜ୍ୟ କରୁଥିଲେ । ସେଥିରେ ଥିଲେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ । ସେମାନଙ୍କ ମଧ୍ୟରୁ ସାଙ୍ଗିଆ ପ୍ରାୟତ ମଙ୍ଗରାଜ, ମହାନାୟକ, ବୋଇତାଳ, ପାଟୁଆ, ବେହେରା ଇତ୍ୟାଦି ।

ଖଣ୍ଡାୟତମାନେ ନିରାପତ୍ତା ଯଥା ବାଣିଜ୍ୟିକ ଦ୍ରବ୍ୟ ତଥା ବୋଇତର ପଥ, ପାଣିପାଗ ଓ ବୋଇତର ଅବସ୍ଥା ଦେଖୁଥିଲେ । ବେହେରା କୈବର୍ତ୍ତମାନେ ବୋଇତ ଚାଳନା ଦାୟିତ୍ୱରେ ଥିଲେ ।

ନଦୀ ବନ୍ଦରମାନଙ୍କରେ ବହିଃଶତ୍ରୁଙ୍କୁ ପ୍ରବେଶ କରାଇ ନ ଦେବା ପାଇଁ ମଧ୍ୟ ସାମନ୍ତମାନେ ବ୍ୟବସ୍ଥା କରିଥିଲେ ଯେଉଁ ପାଇଁ 'ମୁହାଣ ଚଉକିଆ ପଦବୀ' ରଖି ସେମାନଙ୍କୁ ଜାଗିରି ଦିଆଯାଇଥିଲା । ବୋଇତ ଫେରିବା ପରେ ଯେଉଁଠାରେ ଅର୍ଥାତ୍ ନଦୀ ଅବବାହିକା ବା ପଠାରେ ଲାଗୁଥିଲା ତାହାକୁ 'ବୋଇତ କୁଦ', 'ବୋଇତପଦା' ବୋଲି କୁହାଯାଉଥିଲା ।

କାକଟପୁରର ପ୍ରାଚୀ ନଦୀ ଥିଲା ସୁନାବ୍ୟା । ଏହାର ତଟବର୍ତ୍ତୀ, ଗାଁ ଜନପଦରୁ ଆଖୁ, ଶସ୍ୟ, ଦୁଗ୍ଧଜାତ ଦ୍ରବ୍ୟ, ଘିଅ, ମଠା, ସିଲ୍କ ସାମଗ୍ରୀ ବୋଇତଦ୍ୱାରା ଚିଲିକା ଅସ୍ତରଙ୍ଗ କୋଣାଗାର ଇତ୍ୟାଦି ବିଭିନ୍ନ ବନ୍ଦରକୁ ପଠାଯାଇ ବିଦେଶକୁ ରପ୍ତାନୀ କରାଯାଉଥିଲା । ଓଡ଼ିଶାର ପ୍ରାଚୀ, ସୁବର୍ଣ୍ଣରେଖା, ବ୍ରାହ୍ମଣୀ ବୈତରଣୀ, କାଣି, ଚିତ୍ରୋତ୍ପଳା, ମହାନଦୀ, ଖରସୁଆଁ ଇତ୍ୟାଦି ନଦୀରେ ଅନ୍ତଃବାଣିଜ୍ୟ ଚାଲିଥିଲା । ଧାନ, ଲୁଣଠାରୁ ବହୁମୂଲ୍ୟବାନ୍ ଧନରତ୍ନ ଏହି ନୌବାଣିଜ୍ୟ ମାଧ୍ୟମରେ ଆମକୁ କରିଥିଲା ପରିପୁଷ୍ଟ ଓ ପରିପୂର୍ଣ୍ଣ । ଓଡ଼ିଶାରେ ବନ୍ଦରଶିଳ୍ପର ବିକାଶ ପ୍ରତି ଏକବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବିଧିବଦ୍ଧ ପ୍ରଚେଷ୍ଟା ଆରୋପ ହେଲା । ଜାନୁଆରୀ ଆଠ ଦୁଇହଜାର ତିନିରେ ପୋର୍ଟ ପଲିସି ଅନୁସାରେ ଓଡ଼ିଶାରେ ୧୨ଟି କ୍ଷୁଦ୍ର ବନ୍ଦର ପ୍ରତିଷ୍ଠା ଓ ପୁନଃଉଦ୍ଧାର ପାଇଁ ନିଷ୍ପତ୍ତି ନିଆଗଲା । ସେଗୁଡ଼ିକ ହେଲା- ବାଲେଶ୍ୱର ଚାନ୍ଦିପୁର, ଇଂଚୁରି, ସୁବର୍ଣ୍ଣରେଖା ମୁହାଣର କୀର୍ତ୍ତନିଆ ବାହାବଳପୁର, ଭଦ୍ରକର ଧାମରା, ଗଞ୍ଜାମର ପାଲୁର, ଗୋପାଳପୁର ବହୁଦାମୁହାଣ, ସୋନେପୁର, ଚୂଡ଼ାମଣି, ପୁରୀ-ଜିଲାର ଅସ୍ତରଙ୍ଗ, ବାଲିହରଚଣ୍ଡୀ, ଜଗତ୍‌ସିଂହପୁର ଜିଲ୍ଲାର ଜଟାଧାରୀ ଇତ୍ୟାଦି ।

ସୁଖର କଥା ଏହି କାର୍ଯ୍ୟକ୍ରମର ଶୁଭାରମ୍ଭ ହୋଇ ଧାମରା ଓ ଗୋପାଳପୁର ବନ୍ଦରର କାର୍ଯ୍ୟ ଆଗେଇ ଚାଲିଛି ।

ଧାମରା ବନ୍ଦରରେ ୧୩ଟି ବର୍ଥ ନିର୍ମାଣ କରାଯାଇ ବାର୍ଷିକ ୮୩ ନିୟୁତ ଟନ ପଣ୍ୟ କାରବାର ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ସେହିପରି ଗୋପାଳପୁର ବନ୍ଦରରୁ ରପ୍ତାନି କାରବାର ଆରମ୍ଭ ହୋଇସାରିଛି । କ୍ଷୁଦ୍ର ଜାହାଜମାନଙ୍କ ଦ୍ୱାରା ସମୁଦ୍ର ମଧ୍ୟରେ ଅପେକ୍ଷା କରିଥିବା ବଡ଼ ଜାହାଜମାନଙ୍କୁ ବାଣିଜ୍ୟିକ ଦ୍ରବ୍ୟ ପଠାଯାଇ ବାଣିଜ୍ୟ କାରବାର ଆରମ୍ଭ ହୋଇଛି । ତିନୋଟି ପର୍ଯ୍ୟାୟରେ ବିଭକ୍ତ ଗୋପାଳପୁର ବନ୍ଦର ସଂପ୍ରସାରଣ କାର୍ଯ୍ୟ ହାତକୁ ନିଆଯାଇଛି । ସେଗୁଡ଼ିକ ହେଲା-ତିନୋଟି ଗଭୀର ବର୍ଥ ନିର୍ମାଣ କରାଯାଇ ଏକଲକ୍ଷ କୋଡ଼ିଏ ହଜାର ଡେଡ୍‌ୱେଟ୍ ଟନ୍‌ର ଦ୍ୱାରା ଜାହାଜ ବାଣିଜ୍ୟିକ ଦ୍ରବ୍ୟର ଉତ୍ତୋଳନ ଅବତରଣ କରି ପାରି କାରବାର କରିବ । ବନ୍ଦର ପ୍ରବେଶ ପଥର ଗଭୀରତା ରହିବ ୧୮.୫ ମିଟର ଓ ପ୍ରସ୍ଥ ରହିବ ୨୦୦ ମିଟର । ଜାହାଜର ଟର୍ଣ୍ଣିଂସର୍କଲ ପାଇଁ ବନ୍ଦର ମଧ୍ୟରେ ୬୦୦ ମିଟର ବ୍ୟାସାର୍ଦ୍ଧର ଆବର୍ତ୍ତନ କ୍ଷେତ୍ର ରହିବ । ଗୋପାଳପୁର ବନ୍ଦରରେ କୋଡ଼ିଏଟି ବର୍ଥ ନିର୍ମାଣ ସହିତ ୩୫୦୦ ମିଟର ଦୀର୍ଘ ବ୍ରେକ୍ ୱାଟର ବା ଲହଡ଼ି ରୋକିବା ବନ୍ଧ ନିର୍ମାଣ କରାଯିବ । ଏହାର ଦକ୍ଷିଣ ଦିଗରେ ସ୍ଥଳଭାଗ ସୃଷ୍ଟି କରି ସେଠାରେ ପଣ୍ୟଦ୍ରବ୍ୟ ଗଚ୍ଛିତ କରି ରଖାଯିବ । ସେଠାରେ ଅନ୍ୟୂନ ତିନିଲକ୍ଷ ଟନ୍‌ର ଲୁହାପଥର ଓ ଛଅଲକ୍ଷ ଟନ୍‌ର କୋଇଲା ଗଚ୍ଛିତ କରି ରଖାଯାଇପାରୁଥିବ । ଏଠାରୁ ଛତିଶଗଡ଼ ଝାଡ଼ଖଣ୍ଡ ଓ ଓଡ଼ିଶାରୁ ପଣ୍ୟମାନ ଆସିବାର ଭିତ୍ତିଭୂମି ବ୍ୟବସ୍ଥା କରାଯିବ ।

ଧାମରା, ଗୋପାଳପୁର ପରେ କେନ୍ଦ୍ରାପଡ଼ାର ବରୁଣେଇ ମୁହାଣରେ ଏକ ବନ୍ଦର ନିର୍ମାଣ ପାଇଁ ୨୦୦୫ ମସିହାରେ ନିଷ୍ପତ୍ତି ହୋଇଛି । ଏହାର କାର୍ଯ୍ୟ ଆରମ୍ଭ ପାଇଁ କେତେକ ବେସରକାରୀ ସଂସ୍ଥା ଆଗ୍ରହ ପ୍ରକାଶ କରିଛନ୍ତି ।

ପ୍ରାକୃତିକ ସମ୍ପଦରେ ପୂର୍ଣ୍ଣଗର୍ଭା ଉତ୍କଳର ୪୮୦ କିଲୋମିଟର ଉପକୂଳ ଜଳପଥରେ ବାଣିଜ୍ୟ ପାଇଁ ସହଜ ଓ ସ୍ୱଳ୍ପ ବ୍ୟୟବହୁଳ । ଅତୀତର କୌଣସି ଦୁର୍ବିପାକ ପ୍ରାକୃତିକ ବିପର୍ଯ୍ୟୟ ହେଉ ଅବା ରାଜନୈତିକ ଅପକୀର୍ତ୍ତିରୁ ହେଉ ବିଲୁପ୍ତ ବନ୍ଦର ଓ ପୋତାଶ୍ରୟଗୁଡ଼ିକ ଆମ ଅତୀତର ମହାନତା ସାହସିକତା ବର୍ଣ୍ଣାଢ଼୍ୟ କଳା ସଂସ୍କୃତିର ବିଜୟବାଜଣା ବଜାଇ ଚେତାଇ ଦେଇଛନ୍ତି-ତୁମେ କୌଣସିକାଳେ କମ୍ ନ ଥିଲ ହେ ବୀର ସନ୍ତାନ ! ତୁ ପୁଣି ଶୌର୍ଯ୍ୟବୀର୍ଯ୍ୟରେ ମହିମାରେ ବିଶ୍ୱରେ ବନ୍ଦନୀୟ ହୋଇପାରିବୁ, ବାଣିଜ୍ୟେ ବସତି ଲକ୍ଷ୍ମୀ ।

ଖାଲି 'ଆ-କା-ମା-ବୈ ପାନଗୁଆ ଥୋଇ'' ବୋଲି ଗୀତ ଗାଇ ନଦୀସାଗରରେ ସୋଲ, ପଟୁକା, କାଗଜ ନୌକା ଭସେଇ ଅତୀତକୁ ସ୍ମରଣ କଲେ ହେବ ନାହିଁ । ଦେଶ ଓ ଜାତିକୁ ଆଗେଇ ନେବାର ସଂକଳ୍ପ ଭାବି ଉତ୍କଳକୁ ବିଶ୍ୱ ଦରବାରରେ ଶ୍ରୀମୟ କରିବା ଯେମିତି ବିଜୁବାବୁଙ୍କ ସ୍ୱପ୍ନର ପାରାଦ୍ୱୀପ ବନ୍ଦର ବିଶ୍ୱ ବନ୍ଦର ମାନଚିତ୍ରରେ ପ୍ରତିଭାତ ହୋଇପାରିଛି ।



''ଆଶ୍ରମ'', ଶ୍ରୀବିହାର କଲୋନି, କଟକ-୮

# ଆନ୍ତର୍ଜାତିକ ମହିଳା ଦିବସ ନାରୀ ସଶକ୍ତିକରଣର ଏକ ଉପାଦାନ

ସୁରେନ୍ଦ୍ର ନାଥ ପଣ୍ଡା

ଯୁଗେ ଯୁଗେ ନାରୀ ଶକ୍ତି ଏକ ମହାନ୍ ଶକ୍ତି ଭାବେ ଦଣ୍ଡାୟମାନ ହୋଇଛି । ସେହି ଶକ୍ତିକୁ ଚିରନ୍ତନ ତଥା ଚିର ଜାଜ୍ୱଲ୍ୟମାନ କରିବା ନିମନ୍ତେ ୧୯୧୦ ମସିହାରେ ଇଉରୋପରେ ସର୍ବପ୍ରଥମ ଆନ୍ତର୍ଜାତିକ ମହିଳା ସମ୍ମିଳନୀ ଆୟୋଜିତ ହୋଇଥିଲା । ଏଥିରେ ପୃଥିବୀର ବିଭିନ୍ନ ଦେଶର ମହିଳାମାନେ ଯୋଗ ଦେଇ ମହିଳାମାନଙ୍କ କର୍ତ୍ତବ୍ୟ ଏବଂ ଅଧିକାର ଉପରେ ଆଲୋକପାତ କରିଥିଲେ । କିନ୍ତୁ ମହିଳାମାନଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ଦିବସ ପାଳନ କରାଗଲେ ଏହି ଉଦ୍ଦେଶ୍ୟ ଚରିତାର୍ଥ ହେବ ବୋଲି ଜର୍ମାନୀର ଜଣେ ଶିକ୍ଷୟିତ୍ରୀ ଶ୍ରୀମତୀ କ୍ଲାରା ଜେଠ୍‌କିନ୍ ମତପୋଷଣ କରି ପ୍ରତିବର୍ଷ ମାର୍ଚ୍ଚ ୮ ତାରିଖକୁ ଆନ୍ତର୍ଜାତିକ ମହିଳା ଦିବସର ମାନ୍ୟତା ଦେବା ନିମନ୍ତେ ଏକ ପ୍ରସ୍ତାବ ଗୃହୀତ କରିଥିଲେ । ସେହିଦିନଠାରୁ ପ୍ରତିବର୍ଷ ମାର୍ଚ୍ଚ ୮ ତାରିଖକୁ ଆନ୍ତର୍ଜାତିକ ମହିଳା ଦିବସ ଭାବେ ପାଳନ କରାଯାଉଛି ।

ମହିଳାଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ଦିବସ ପାଳନ କରାଯିବା କେତେ ଦୂର ସମୀଚୀନ ତାହା ଚିନ୍ତା କଲେ ଜଣାଯାଏ ଯେ, ଏହି ଦିବସ ପାଳନ କରିବା ନିତାନ୍ତ ଜରୁରୀ । କାରଣ ପ୍ରତ୍ୟେକ ମହିଳା ଜାୟା, ଜନନୀ, ଭଗିନୀ ହିସାବରେ ସମାଜକୁ ତଥା ପରିବାରକୁ ପଥ ପ୍ରଦର୍ଶକ ହୋଇ ଉନ୍ନତିର ଚରମ ସୋପାନରେ ପହଞ୍ଚାଇବାକୁ ରାସ୍ତା ଦେଖାଇଥାନ୍ତି । ସେହିଭଳି ଶିଶୁ ଜନ୍ମଠାରୁ ମୃତ୍ୟୁଯାଏଁ ତା'ର ଲାଳନ ପାଳନ, ଶିକ୍ଷା ଦୀକ୍ଷା, ଆଚାର ବ୍ୟବହାର ସର୍ବୋପରି ପାରିବାରିକ ଜୀବନ ଶୃଙ୍ଖଳିତ କରିବାରେ ସହାୟକ ହୁଏ । କିନ୍ତୁ ପୃଥିବୀର ବିଭିନ୍ନ ଦେଶରେ ଦେଖାଯାଇଛି ଯେଉଁ ନାରୀ ପରିବାର ତଥା ସମାଜ ପାଇଁ ସବୁକିଛି ତ୍ୟାଗ କରୁଛି କିନ୍ତୁ ତାକୁ ଏହି ସମାଜ ଅବଳା ଦୁର୍ବଳା କହି ପଦାଘାତ କରୁଛି । ଆମ ଭାରତୀୟ ସଂସ୍କୃତିରେ ଯଦିଓ ନାରୀକୁ ଉଚ୍ଚ ସ୍ଥାନ ଦିଆଯାଇଛି ତଥା ତାକୁ ବୈଦିକ ଯୁଗରେ ବ୍ରହ୍ମବାଦିନୀ କୁହାଯାଉଥିଲା ତଥାପି ତାକୁ ପୁରୁଷର ପରାଧୀନତା ସ୍ୱୀକାର କରିବା ପାଇଁ ଏକ ପରିବେଶ ସୃଷ୍ଟି କରାଯାଉଥିଲା । ନାରୀମାନଙ୍କର ସ୍ଥିତି ଏବଂ ପ୍ରଗତି ମଧ୍ୟଯୁଗରେ କିଭଳି ରହିଥିଲା, ଗରୁଡ଼ ପୁରାଣରେ ବର୍ଣ୍ଣିତ ଏକ ଉକ୍ତିରୁ ବେଶ୍ ବାରି ହୁଏ । ଯଥା–

''ପିତା ରକ୍ଷତି କୌମାରେ
ଭର୍ତ୍ତା ରକ୍ଷତି ଯୌବନେ
ବାର୍ଦ୍ଧକ୍ୟେ ପୁତ୍ରୋ ରକ୍ଷତି
ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି ।''

ଅର୍ଥାତ୍ ଏଥିରୁ ସ୍ପଷ୍ଟ ଜାଣିହୁଏ ଯେ, ନାରୀର ସ୍ଥିତି ଓ ପ୍ରଗତିକୁ ପୁରୁଷ ପ୍ରଧାନ ସମାଜ କେବେ ମଧ୍ୟ ସ୍ୱୀକାର କରିବାକୁ ଆଗଭର ହୁଏ ନାହିଁ । ଏହି ଉକ୍ତିରୁ ସ୍ପଷ୍ଟ ଜଣାଯାଏ ଯେ ନାରୀ ଶୈଶବରେ ପିତା, ଯୌବନରେ ସ୍ୱାମୀ ଏବଂ ବାର୍ଦ୍ଧକ୍ୟରେ ପୁତ୍ର ଦ୍ୱାରା ପରିପାଳିତ ହୁଏ ଅବା ସୁରକ୍ଷିତ ରହେ । କିନ୍ତୁ ଯେଉଁ ନାରୀ ପରିବାର ନିମନ୍ତେ ସର୍ବସ୍ୱ ତ୍ୟାଗ କରେ ସେହି ନାରୀକୁ ଆମ ସମାଜ ଏଭଳି ଦୃଷ୍ଟିରେ ଦେଖିବା ଆଦୌ ସମୀଚୀନ ନୁହେଁ ।

କିନ୍ତୁ ସେହି ମଧ୍ୟଯୁଗୀୟ ଚିନ୍ତା ଆଜି ଆଉ ନାହିଁ । ନାରୀ ଶିକ୍ଷା ଏବଂ ନାରୀ ପ୍ରଗତି ଶୀର୍ଷରେ ପହଞ୍ଚିପାରିଛି । ଜଳ, ସ୍ଥଳ ଓ ଆକାଶ ସବୁକୁ ନାରୀ ଆଜି ଜୟ କରିପାରିଛି । ତା'ର ଉନ୍ନତିର ଧ୍ୱଜା ସେ ନିଜେ ଉତ୍ତୋଳନ କରିପାରିଛି । ତଥାପି ସମାଜର ସର୍ବାଙ୍ଗୀନ ଉନ୍ନତି, ସବୁ ବର୍ଗର ଉନ୍ନତି ହେଲେହିଁ ସମ୍ଭବ ହେବ । ଏହି ପ୍ରଗତିକୁ ଚରିତାର୍ଥ କରିବା ନିମନ୍ତେ ବିଭିନ୍ନ ଦେଶରେ ବିଭିନ୍ନ ଆଇନ୍ ପ୍ରଣୟନ କରାଯାଇଛି । ଜାତିସଂଘର ସାଧାରଣ ପରିଷଦ ମଧ୍ୟ ନାରୀ ପ୍ରଗତି ଏବଂ ନାରୀ ଶିକ୍ଷା ଉପରେ ଗୁରୁତ୍ୱାରୋପ କରି ବିଭିନ୍ନ ପ୍ରକାରର ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଛନ୍ତି । ୧୯୭୫ଠାରୁ ୧୯୮୫ ମସିହା ଯାଏଁ ଦଶବର୍ଷକୁ ମହିଳା ଦଶକ ଭାବେ ଜାତିସଂଘ ଘୋଷଣା କରି ନାରୀଙ୍କ ଉନ୍ନତି ନିମନ୍ତେ ଅନେକ ପଦକ୍ଷେପ ଗ୍ରହଣ କରିଥିଲେ । ଠିକ୍ ସେହିଭଳି ଜାତିସଂଘର ସାଧାରଣ ପରିଷଦ ୧୯୭୫ ମସିହାକୁ ଆନ୍ତର୍ଜାତିକ ମହିଳା

ବର୍ଷର ମାନ୍ୟତା ପ୍ରଦାନ କରିଥିଲେ । ୧୯୭୯ ମସିହାକୁ ଜାତିସଂଘ ଆନ୍ତର୍ଜାତିକ ଶିଶୁ ବର୍ଷ ଭାବେ ଗ୍ରହଣ କରିଥିଲେ । ଏସବୁ ସତ୍ତ୍ୱେ ୧୯୯୦ ମସିହାକୁ ଜାତିସଂଘ ସାଧାରଣ ପରିଷଦ ଆନ୍ତର୍ଜାତିକ ସାକ୍ଷରତାବର୍ଷ ରୂପେ ପାଳନ କରି ସାରା ବିଶ୍ୱରୁ ନିରକ୍ଷରତା ଦୂରେଇବା ପାଇଁ ଅନେକ ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଥିଲେ ।

ଆମ ଏସିଆ ମହାଦେଶର ବିଭିନ୍ନ ସଂଗଠନ ମଧ୍ୟ ନାରୀ ଉନ୍ନତି ତଥା ନାରୀ ପ୍ରଗତି ନିମନ୍ତେ ଅନେକ ପଦକ୍ଷେପ ଗ୍ରହଣ କରିଛନ୍ତି । ଦକ୍ଷିଣ ଏସିଆର ଭାରତ, ପାକିସ୍ଥାନ, ବଙ୍ଗଳାଦେଶ, ନେପାଳ, ଭୁଟାନ, ଶ୍ରୀଲଙ୍କା ଏବଂ ମାଳଦ୍ୱୀପ ପ୍ରଭୃତି ଦେଶ South Asia Association of Regional Co-operation ଗଠନ କରି ଦକ୍ଷିଣ–ଏସିଆ ତଥା ସମଗ୍ର ଏସିଆ ମହାଦେଶରେ ଶାନ୍ତି ଏବଂ ପ୍ରଗତି ଆଣିବା ପାଇଁ ଅନେକ ପଦକ୍ଷେପ ଗ୍ରହଣ କରିଛନ୍ତି । ଏହି SAARC 1990 ମସିହାକୁ ବାଳିକା ବର୍ଷ ରୂପେ ପାଳନ କରି ବାଳିକାମାନଙ୍କର ଶିକ୍ଷା ତଥା ସ୍ୱାସ୍ଥ୍ୟ କିଭଳି ଭାବେ ବ୍ୟକ୍ତିତ୍ୱର ପରିପ୍ରକାଶରେ ସହାୟକ ହେବ ତାହାହିଁ ଉଦ୍ଦେଶ୍ୟ ରଖିଥିଲେ । କାରଣ ଆଜିର ବାଳିକା ଆସନ୍ତାକାଲିର ମାତୃଶକ୍ତି ଭାବେ ସମାଜକୁ ଦିଗ୍‌ଦର୍ଶନ ଦେବ । ଏହି ଉଦ୍ଦେଶ୍ୟ ନେଇ SAARC ଦେଶମାନେ ବାଳିକା ବର୍ଷ ପାଳନ କରିଥିଲେ । କିନ୍ତୁ ଶିକ୍ଷା ତଥା ସଚେତନତା ଆଶାନୁରୂପେ ବୃଦ୍ଧି ପାଇପାରୁ ନାହିଁ । ନାରୀମାନଙ୍କର ବିଭିନ୍ନ ସମସ୍ୟାକୁ ପ୍ରତିହତ କରିବା ନିମନ୍ତେ ଏବଂ ସମାଜରେ ସେମାନଙ୍କୁ ସାଧାରଣ ଜୀବନସ୍ରୋତରେ ପହଞ୍ଚାଇବା ପାଇଁ ୧୯୯୫ ମସିହାରେ ଚୀନ ଦେଶର ରାଜଧାନୀ ବେଜିଂଠାରେ ଚତୁର୍ଥ ବିଶ୍ୱ ମହିଳା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ପୃଥିବୀର ବିଭିନ୍ନ ନେତୃସ୍ଥାନୀୟ ବିଶେଷତଃ ମହିଳା ନେତୃମଣ୍ଡଳୀ ଯୋଗଦେଇ ଅନେକ ଐତିହାସିକ ପ୍ରସ୍ତାବମାନ ଗ୍ରହଣ କରିଛନ୍ତି । ଏହି ପ୍ରସ୍ତାବମାନଙ୍କ ମଧ୍ୟରୁ ନିମ୍ନୋକ୍ତ ପ୍ରସ୍ତାବ ମାନ ପ୍ରଣିଧାନଯୋଗ୍ୟ ।

1) Violence (including domestic violence) against women must be dropped.

2) Girls must be given importance against the boys in their family as well as in the society.

3) Women must have access to quality education, health care, economic independence and political power.

4) Family responsibility must be shared.

5) Women must have right to control their own fertility and equality in sexual relation.

ଏଣୁ ଉପରେ ଦର୍ଶିତ ବେଜିଂ ପ୍ରସ୍ତାବମାନଙ୍କୁ ତର୍ଜମା କଲେ ଜଣାଯାଏ ଯେ, Human Rights and Women's Rights are based on freedom of expression. ତେଣୁ ଯଥାର୍ଥରେ କୁହାଯାଇପାରେ ଯେ, ନାରୀ ଉନ୍ନତି ଏବଂ ନାରୀ ପ୍ରଗତି ମାନବିକ ଅଧିକାର ସୁରକ୍ଷା ହେଲେହିଁ ସମ୍ଭବ ହେବ । କିନ୍ତୁ ଆଜିକାଲି ଦେଖାଯାଉଛି ନାରୀ ସ୍ୱାଧୀନତା ନାମରେ ନାରୀ ସ୍ୱେଚ୍ଛାଚାରିତା ବ୍ୟାପକ ହୋଇଛି । ଚଳଚ୍ଚିତ୍ର ଏବଂ ଆଲବମ୍‌ରେ ନାରୀ ବିଜ୍ଞାପନ, ନାରୀର ଅଶ୍ଳୀଳ ଅଙ୍ଗ ପ୍ରଦର୍ଶନ, ନାରୀକୁ ନେଇ ମାଦକ ଦ୍ରବ୍ୟର ଚୋରା ଚାଲାଣ ଏବଂ ସେବନ ଆମ ସମାଜକୁ ନିମ୍ନଗାମୀ କରିବାରେ ଏକ ନୂତନ ସୁଯୋଗ ସୃଷ୍ଟି କରିଛି । କିନ୍ତୁ ଆମେ ସମସ୍ତେ ଭୁଲିବା ଉଚିତ ନୁହେଁ, ନାରୀ ହିଁ ସର୍ବଂସହା । ତାକୁ ନେଇ ବିଜ୍ଞାପନ ଦେବା କିମ୍ବା ମାଦକଦ୍ରବ୍ୟ ଚୋରା ଚାଲାଣ କରିବା ଅର୍ଥ ନାରୀ ଶକ୍ତିକୁ କୁଠାରଘାତ କରିବା । ମହିଷାସୁର, ଦଶାନନ ତଥା ଦୁଃଶାସନ ଭୂମିକାରେ ପୁରୁଷ ଆଜି ଅବତୀର୍ଣ୍ଣ ହୋଇ ନାରୀଶକ୍ତିକୁ ଅପମାନିତ କରୁଛି । ବିଭିନ୍ନ ଗୁପ୍ତଚର ତଥ୍ୟ ଆଦାୟରେ ତାକୁ ବିନିଯୋଗ କରୁଛି । ଏହା ସମାଜ ତଥା ଦେଶ ପାଇଁ ଏକ ବଡ଼ ବିପଦ । ଏଣୁ ଆସନ୍ତୁ ଆମେ ସମସ୍ତେ ହାତକୁ ହାତ ମିଳାଇ ନାରୀ ପ୍ରଗତି ଏବଂ ନାରୀ ଶିକ୍ଷା ତଥା ନାରୀ ସ୍ୱାସ୍ଥ୍ୟ ନିମନ୍ତେ ଉଚିତ ପଦକ୍ଷେପ ନେବା । ତେବେ ଯାଇ ଆନ୍ତର୍ଜାତିକ ମହିଳା ଦିବସ ପାଳନ କରିବାର ତାତ୍ପର୍ଯ୍ୟ ଚରିତାର୍ଥ ହେବ ।



ଆଇନ୍‌ଜୀବୀ, ଆସିକା
ଗଞ୍ଜାମ

# ମାଣିକ ଲଭିଲା ମୁକତି

**ଶାନ୍ତନୁ କୁମାର ଷଡ଼ଙ୍ଗୀ**

ମାଣିକତ ସିନା ଗଉଡୁଣୀଟିଏ
ଦୁଧ, ଦହି ତା'ର ପେଶା,
ଅର୍ଦ୍ଧରାତ୍ରିରେ ସେ ଦେଖିଲା ସପନ
ଆଖି ନ କରିଲା କଷା ।
ଶୋଇଶୋଇ ସିଏ ଦେଖଇ ସପନ
ବଡ଼ ଠାକୁରଙ୍କ ଦେଶ,
ଚତୁର୍ଦ୍ଧା ମୂରତି ଉଭା ହୋଇଛନ୍ତି
କର୍ପୂର ମହକ ବାସ ।
ସୁନାର ବେଶରେ ଉଭା ହୋଇଛନ୍ତି
କହୁଛନ୍ତି ମୋତେ ପରା,
ଦହି ଦୁଧ ପରା ତୋହରି ବେଉସା
ପଡ଼ିଲାଣି ପରା ଖରା ।
ଶଯ୍ୟାତ୍ୟାଗ କରି କାମ ତୋର ସାରି
ନେଇଯାଆ ଦୁଧ ଦହି,
ତୋ କପାଳ ଲେଖା ବିଧିର ବିଧାନ
କରିଅଛି ପରା ବିହି ।
ନିଦ ଭାଙ୍ଗିଗଲା ନାହିଁ ପରା କେହି
ଦେଖା ପାଇଲିନି ପରା,
ଅଭୁଲା ସେ ରୂପ କମନୀୟ କାନ୍ତି
ସତେ କି ଦୁଃଖ ପାସୋରା ।
ବଡ଼ ଠାକୁରତ ଜଗତ ଠାକୁର
ଦେଖିଛି ଶିରୀକ୍ଷେତରେ,
ସୁନାର ବେଶରେ ଦେଖିଥିଲି ପରା
ମନକଥା ମନେ ମରେ ।
ପିତେଇ ମାଆତ କହୁଥିଲା ତାକୁ
ଧନ୍ୟ ତୋ ଜୀବନ ମାଆ,
ସପନେ ଦେଖିଲୁ କାଳିଆ ଠାକୁର
ସେହି ହେବେ ତୋର ସାହା ।
ଭକତ ଦୁଃଖରେ ହୁଏ ସେହି ଦୁଃଖୀ
ସେ ପରା ଜଗତ ରଜା,
ଷାଠିଏ ପଉଟି ଭୋଗତ ଖାଉଛି
ମନରେ ମାରୁଛି ମଜା ।
ପାଟଣା ଅଞ୍ଚଳେ ଦହି ବିକ୍ରି କରି
ସଂସାର ନାବେ ମାଣିକ

ସଂସାର ରଥକୁ ଗଡ଼ାଇତ ନିଏ
ମନରେ ଭକତିଯାକ ।
ସପନ ଦେଖିଣ ଭାବିଥିଲା ସିଏ
ଦୁଃଖତ ହୋଇବ ଦୂର
ଦୁଃଖର ନଦୀଟା କୂଳ ଖାଉଥିଲା
ଆଶାତ ହୋଇଲା ପର ।
ଆଶାର ଆକାଶେ ବାଦଲ ଘୋଟିଛି
ମାଣିକ ମନରେ ଦୁଃଖ,
ଭକ୍ତ ଲାଗି ପ୍ରଭୁ ପାଷାଣ ହୋଇଲେ
ନ ମିଳିବ କେବେ ସୁଖ ।
ଦହି ଖାଇ ପରା ବାହୁଡ଼ି ଯେ ଗଲେ
ଦେଲେତ ରତନ ମୁଦି,
ମାଣିକ ଦେଖିଣ ତାଟକା ହୋଇଲା
ନ କରିଲା ପରା ଜିଦି ।
ରତନ ମୁଦିଟା ଦେଖାଇ ରାଜାଙ୍କୁ
ରାଜାତ ହେଲେ ଚକିତ,
ଏଇ ମୁଦି ପରା ଜଗନ୍ନାଥଙ୍କର
ମାଣିକ ହୋଇଲା ଭୀତ ।
ପାଉଣାତ ପାଇ ମୁଦିକୁ ଯେ ନେଲେ
ଭାବ ବିହ୍ୱଳିତ ହୋଇ
କହିଲେ ମାଣିକ ଧନ୍ୟ ହେଲୁ ତୁହି
ଦେଖିଲୁ ଜଗତ ସାଇଁ
ଏକଥା ଶୁଣିଣ ମାଣିକ ଯେ ପରା
ହେଲା ତହିଁ ଆନନ୍ଦିତ ।
ପାପ ଚକ୍ଷୁ ତାର ହୋଇଲା ପବିତ୍ର
ଏକଥା ଅଟଇ ସତ,
ମାଣିକପାଟଣା ନାମରେ ଯେ ଖ୍ୟାତ
ହୋଇଲା ପାଟଣା ଗ୍ରାମ
ମାଣିକତ ଆଜି ଅତୀତର ସ୍ମୃତି
ରଖିଲା ପାଟଣା ଧାମ ।



ମହିଳୋ : କାଦୁଅପଡ଼ା,
ଜଗତ୍‌ସିଂହପୁର



# ପ୍ରଫେସର ଡାକ୍ତର ବିକ୍ରମ ଦାସ

**ଆବିର୍ଭାବ–** ୧୩ ଫେବୃୟାରୀ ୧୯୨୧ **ତିରୋଧାନ–** ୨୪ ଜୁନ୍ ୨୦୦୭

ବିଶିଷ୍ଟ ସାହିତ୍ୟିକ ପ୍ରଫେସର ଡାକ୍ତର ବିକ୍ରମ ଦାସ ମନୀଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କର କନିଷ୍ଠ ପୁତ୍ର । ମାତ୍ର ସ୍ୱକୀୟ ସାଧନା ବଳରେ ଜଣେ ସଫଳ ଚିକିତ୍ସକ ତଥା କଟକସ୍ଥିତ ରାଜ୍ୟର ସର୍ବବୃହତ୍ ଚିକିତ୍ସା ମହାବିଦ୍ୟାଳୟ, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଅଧ୍ୟକ୍ଷ ଭାବେ ଅବସର ଗ୍ରହଣ କରିଥିଲେ । ଏତଦ୍‌ବ୍ୟତୀତ ଓଡ଼ିଆ ଭାଷା–ସାହିତ୍ୟର ସେ ଥିଲେ ଜଣେ ନୀରବ ସାଧକ ଏବଂ ତାଙ୍କ ଦ୍ୱାରା ଓଡ଼ିଆ ସାହିତ୍ୟ ଅନେକ ସମୃଦ୍ଧି ଲାଭ କରିଛି । ତାଙ୍କ ସ୍ମୃତି ପ୍ରତି 'ଉତ୍କଳ ପ୍ରସଙ୍ଗ' କେତୋଟି ବିଶେଷ ଆଲେଖ୍ୟ ପ୍ରକାଶିତ କରି ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

# ସାହିତ୍ୟ ସାଧକ ଡାକ୍ତର ବିକ୍ରମ ଦାସ

## ଏକ ଶ୍ରଦ୍ଧାଞ୍ଜଳି

ଫେବୃଆରୀ ମାସରେ ଆମ ଭାଷା-ସାହିତ୍ୟର ଜଣେ ଦକ୍ଷ ବିଦ୍ଧାଣୀ ତଥା ଓଡ଼ିଶାର ଜଣେ ଅଗ୍ରଗଣ୍ୟ ଚିକିତ୍ସା ବିଶାରଦ ଡାକ୍ତର ବିକ୍ରମ ଦାସ ଜନ୍ମ ନେଇ ଓଡ଼ିଆ ଜାତିକୁ ଧନ୍ୟ କରିଛନ୍ତି । ସତ୍ୟବାଦୀର ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ବିଶାଳ ବ୍ୟକ୍ତିତ୍ୱର ଅଧିକାରୀ, ସ୍ୱଦେଶ ପ୍ରେମୀ, ଜାତୀୟ ସ୍ୱାଭିମାନର ମୂର୍ତ୍ତିମନ୍ତ ପ୍ରତୀକ ମନୀଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସେ ଥିଲେ କନିଷ୍ଠ ପୁତ୍ର । ମହାନ୍ ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ବିକ୍ରମବାବୁ ସେହି ଅନୁସାରେ ନିଜ ବ୍ୟକ୍ତିତ୍ୱକୁ ନିର୍ମାଣ କରିଥିଲେ । ଅସମ୍ଭବ ଭାବେ ସ୍ୱାଭିମାନୀ, ସ୍ୱଦେଶ ପ୍ରୀତିରେ ପରିପୂର୍ଣ୍ଣ, ସାହିତ୍ୟ ସୃଷ୍ଟିରେ ତଲ୍ଲୀନ ଏହି ସାଧାସିଧା ଅଥଚ ଖୁବ୍ ଉଚ୍ଚ ବିଚାରବନ୍ତ ମଣିଷ ଥିଲେ ଡାକ୍ତର ବିକ୍ରମ ଦାସ । ଓଡ଼ିଶାର ସର୍ବବୃହତ୍ ମେଡ଼ିକାଲ କଲେଜର ଅଧକ୍ଷ ପଦରୁ ଅବସର ନେଇ ମଧ୍ୟ ସେ ଥିଲେ ଜନଜୀବନର ଜଣେ ଅବସରବିହୀନ ସ୍ୱେଚ୍ଛାସେବୀ । ତାଙ୍କ ସଂସ୍ପର୍ଶରେ ଯିଏ ଥରେ ଆସିଛି, ସେ ତାଙ୍କୁ କେବେବି ଭୁଲି ପାରି ନାହିଁ ।

ଏହି ଯୋଜଗନ୍ମା ସାହିତ୍ୟିକ ଓ ଚିକିତ୍ସକଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ନିବେଦନ କରି 'ଉତ୍କଳ ପ୍ରସଙ୍ଗ'ରେ ଏଥର ତାଙ୍କ ସମ୍ପର୍କରେ କେତୋଟି ବିଶେଷ ଆଲେଖ ପ୍ରକାଶ କରାଯାଇଛି । ଆଶା କରୁ, ଓଡ଼ିଶାର ସଚେତନ ବିଜ୍ଞ ଓ ପ୍ରାଜ୍ଞମାନେ 'ଉତ୍କଳ ପ୍ରସଙ୍ଗ'ର ଏହି ଉଦ୍ୟମକୁ ନିଶ୍ଚୟ ସାଧୁବାଦ ପ୍ରଦାନ କରିବେ ।

ସଂପାଦକ  
ଉତ୍କଳ ପ୍ରସଙ୍ଗ

# ଡାକ୍ତର ବିକ୍ରମ ଦାସ : ଏକ ବ୍ୟକ୍ତିତ୍ୱ

ଡ. ଶ୍ରୁତି ଦାସ

ଡାକ୍ତର ବିକ୍ରମ ଦାସ, ମୋ ପିତା, ପଣ୍ଡିତ ନୀଳକଣ୍ଠ ଦାସଙ୍କର ଦ୍ୱିତୀୟ ପୁତ୍ର ଏବଂ ତାଙ୍କ ପିତା ପଣ୍ଡିତ ନୀଳକଣ୍ଠଙ୍କର ଜୀବନ ଦର୍ଶନରେ ଆଲୋକିତ । ନୀଳକଣ୍ଠ, କନ୍ୟା ବିୟୋଗ ପରି ବଜ୍ରପାତରେ ଭାଙ୍ଗି ନ ଯାଇ, ଦେଶ ପ୍ରତି ନିଜର କର୍ତ୍ତବ୍ୟରୁ ବିଚ୍ୟୁତ ହୋଇ ନ ଥିଲେ । ସେହିପରି, ନନା ତାଙ୍କର ଅତି ଦୁଃସମୟରେ ମଧ୍ୟ କେବେହେଲେ ଭାଙ୍ଗି ପଡ଼ି ନାହାନ୍ତି । ବରଂ ଦୁଃଖକୁ କବିତା ବା ଗଳ୍ପରେ ରୂପାନ୍ତରିତ କରି ଆଗେଇ ଯାଇଛନ୍ତି । ସେ ସନ୍ତୁଳିତ ବ୍ୟକ୍ତିତ୍ୱର ଏକ ନିଦର୍ଶନ । ସବୁବେଳେ କୁହନ୍ତି ''ଦୁଃଖ ବା ସୁଖ ଆସୁ ଯାହା, ବହିବ ଧୀର ଚିତ୍ତେ ତାହା ।'' ପ୍ରକୃତରେ ସୁଖରେ ସେ ଅତି ଉଲ୍ଲସିତ ହୁଅନ୍ତି ନାହିଁ ବା ଦୁଃଖରେ ଭାଙ୍ଗିପଡ଼ନ୍ତି ନାହିଁ । ତେଣୁ, ମୁଁ ନିଜକୁ ସଂଯମ କରି ନନାଙ୍କ ସମ୍ବନ୍ଧରେ ଦୁଇଧାଡ଼ି ଲେଖିବାର ପ୍ରୟାସ କରୁଛି । ନନାଙ୍କ ବିଷୟରେ ଅନେକ ଲୋକ ଅନେକ କଥା କୁହନ୍ତି, କୁହନ୍ତି ସେ ହେଉଛନ୍ତି ଏକାଧାରାରେ ଜଣେ ଡାକ୍ତର, ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ ଏବଂ ଔପନ୍ୟାସିକ । ଏହା ଛଡ଼ା ସାମାଜିକ ସ୍ତରରେ ସେ ଜଣେ ବନ୍ଧୁବତ୍ସଳ, ଛାତ୍ରବତ୍ସଳ, ଶିଶୁବତ୍ସଳ, ଅନାବିଳ ଶିଶୁସୁଲଭ ଗୁଣଧାରୀ ବ୍ୟକ୍ତି । ପିଲାଦିନୁ ଦେଖି ଆସିଛି ତାଙ୍କର ଛାତ୍ର ଓ ବନ୍ଧୁମାନଙ୍କ ପାଇଁ ଆମ ଦୁଆର ସଦା ଉନ୍ମୁକ୍ତ । ବୋଉ ମଧ୍ୟ ସେମାନଙ୍କୁ ବଡ଼ ଆନନ୍ଦରେ ସ୍ୱାଗତ କରେ । ଜୀବନରେ ସେ କେବେ କିଛି ବଡ଼ ଜିନିଷ ଚାହିଁ ନାହାନ୍ତି । ଛୋଟ ଛୋଟ ଜିନିଷ ତାଙ୍କୁ ବହୁତ ଆନନ୍ଦ ଦିଏ । ନିଜେ ଲଗାଇଥିବା ଆମ୍ବଗଛର ଆମ୍ବକୁ ନେଇ ସେ ଖୁବ୍ ଗର୍ବ କରନ୍ତି । କେଉଁଦିନ ତାକୁ ନିଲମ କୁହନ୍ତି ତ କେଉଁଦିନ ବମ୍ବେର ଆଲ୍‌ଫନ୍ ସୋ । ସେ ଯାହା ହେଉ, କୁଆ, ଗୁଣ୍ଡୁଚି, ଶୁଆ ଓ ମାଙ୍କଡ଼ଙ୍କଠାରୁ ଆମ୍ବ ଓ ପିଜୁଳିକୁ ଜଗୁଜଗୁ ଯେପରି ତାଙ୍କର ଖରାଦିନର ଖରାବେଳଗୁଡ଼ିକ କଟିଯାଏ । ପାକଳ ଆମ୍ବ ତୋଳି ବାଲିରେ ପଚାଯାଏ ଓ ପାଚିଗଲେ ସବୁ ପିଲାଙ୍କୁ ଦିଅନ୍ତି ଓ କେବେ କାହାକୁ ପଇସାଟିଏ ମାଗି ନାହାନ୍ତି । ସ୍ୱାଭିମାନୀ ନନା ମୋର ସବୁବେଳେ କୁହନ୍ତି – ''ଆଲୋ ସଖି ଆପଣା ମହତ ଆପେ ରଖି'' ଓ ନିଜ ମହତ କେବେହେଲେ ତଳେ ପକାଇ ନାହାନ୍ତି ସେ ।

ଆତ୍ମମର୍ଯ୍ୟାଦା ଓ ଆଭିଜାତ୍ୟର ଅଭିମାନକୁ ବଜାଏ ରଖିବାକୁ ଯାଇ ଉତ୍କଳ ଗୁରୁ ପଣ୍ଡିତ ନୀଳକଣ୍ଠଙ୍କର କନିଷ୍ଠ ପୁତ୍ର, ବିକ୍ରମ ଦାସ ତାଙ୍କର ସ୍ମୃତି ଓ କୃତିକୁ ଅମର କରିବା ପାଇଁ ସତତ ବ୍ରତୀ ହୋଇ ପଡ଼ିଥିଲେ । ମୋ ନନା ପିତୃଭକ୍ତିର ଏକ ଉଦାହରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ପିତୃ ପ୍ରେରଣାରେ ଭାରତ ତଥା ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷ ଯୋଗଦାନ କରି ଛାତ୍ରାବସ୍ଥାରେ ଅନେକବାର କାରାବରଣ କରିଥିଲେ । ସେ ସବୁ କାହାଣୀ ଆମେ ପିଲାଦିନୁ ପ୍ରାୟ ସବୁଦିନ ଶୁଣୁ । ଯଦିଓ ପାଥୋଲଜିରେ ତାଙ୍କର ସନ୍ଦର୍ଭ ଏବଂ ଡାକ୍ତରୀ ତାଙ୍କର ପେଶା, ତଥାପି ଜୀବନରେ ଶେଷ ୩୦ ବର୍ଷ ସେ ସମ୍ପୂର୍ଣ୍ଣ ଭାବେ ସାହିତ୍ୟକୁ ଉତ୍ସର୍ଗ କରି ବିଂଶ ଏବଂ ଏକବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ତାଙ୍କର ଅନ୍ୟାନ୍ୟ କୃତି ମଧ୍ୟରେ ୫୦ଟି ଉପନ୍ୟାସ ଅନ୍ତର୍ଭୁକ୍ତ । ପଣ୍ଡିତ ନୀଳକଣ୍ଠଙ୍କ ସମ୍ବନ୍ଧରେ ସେ ଅନେକ ପ୍ରବନ୍ଧ ଏବଂ ପୁସ୍ତକ ରଚନା କରିଛନ୍ତି । ତାଙ୍କ ଦ୍ୱାରା ରଚିତ 'ମୋ ନନାଙ୍କ ଦେଶ' ଏବଂ ତାଙ୍କର ଆତ୍ମଜୀବନୀ 'ଜୀବନର ଛାପ' ନୀଳକଣ୍ଠଙ୍କର କର୍ମମୟ ଜୀବନ ଏବଂ ଜୀବନ ଦର୍ଶନର ପରିଚାୟକ ହେବା ସଙ୍ଗେ ସଙ୍ଗେ ପ୍ରାକ୍ ସ୍ୱାଧୀନତାରୁ ନେଇ ଉତ୍ତର ସ୍ୱାଧୀନତା ପର୍ଯ୍ୟନ୍ତ ଭାରତ ତଥା ଓଡ଼ିଶା ଇତିହାସର ଏକ ଆଲେଖ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । 'ଜୀବନର ଛାପ' ପୁସ୍ତକରେ ବିକ୍ରମ ଦାସ ଏକ ଅନୁଭୂତିର ଭଣ୍ଡାର ଖୋଲି ଦେଇଛନ୍ତି । ପ୍ରତ୍ୟେକଟି ଅନୁଭୂତିକୁ ସେ ପ୍ରଶ୍ନ କରିଛନ୍ତି । ଏହା ତାଙ୍କର ବୈଜ୍ଞାନିକ ମାନସିକତାର ନିଦର୍ଶନ । ନିଜର ସଂସ୍କୃତି ପ୍ରତି ସର୍ବଦା ସଚେତନ, ବିକ୍ରମ ଦାସ ଦେଶବିଦେଶରେ ଘଟିଥିବା ଘଟଣାବଳୀକୁ ଏକ କୌତୁହଳ ଦୃଷ୍ଟିଭଙ୍ଗୀରେ ପରିବେଷଣ କରିଛନ୍ତି । ସବୁବେଳେ ଗୁଣ୍ଡୁଚିମୂଷାପରି ମୁଁ ପିଠିରେ ବାଲି ବୋହି ତାଙ୍କ ସାଧନାରେ ତାଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କରିଛି ।

କର୍କଟ ରୋଗରେ ଆକ୍ରାନ୍ତ ହୋଇ ଜୀବନର ଶେଷ ଛଅ-ଆଠ ମାସ ସେ ବହୁତ କଷ୍ଟ ପାଇଲେ । ମୃତ୍ୟୁ ସହିତ ସଂଗ୍ରାମ କରୁଥିବା ସମୟରେ ତାଙ୍କ କୋଠରିରେ ଦୁଇଟି ଫଟୋ ରଖିଥିଲେ-ଗୋଟିଏ ଜଗନ୍ନାଥଙ୍କର ଏବଂ ଗୋଟିଏ ନୀଳକଣ୍ଠଙ୍କର । ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସେହି ଫଟୋକୁ ଚାହିଁ ବୋଲୁଥିଲେ- ''ପିତା ଧର୍ମ, ପିତା ସ୍ୱର୍ଗ, ପିତା ହିଁ ପରମଂ ତପଃ, ପିତରି...'' । ତାଙ୍କର ଭାରି ଇଚ୍ଛା ଥିଲା ତାଙ୍କ ପିତା ନୀଳକଣ୍ଠଙ୍କର ଏକ ମୂର୍ତ୍ତି ଉତ୍କଳ ସାହିତ୍ୟ ସମାଜ ପରିସରରେ ପ୍ରତିଷ୍ଠା କରିବା ପାଇଁ । ଉତ୍କଳ ସାହିତ୍ୟ ସମାଜର ତତ୍କାଳୀନ ସଭାପତି ଶ୍ରୀଯୁକ୍ତ ଅନ୍ନଦା ରାୟ ଏଥିପାଇଁ ସମ୍ମତି ଦେଇ, ମୂର୍ତ୍ତି ସ୍ଥାପନ ନିମନ୍ତେ ସମସ୍ତ ଆୟୋଜନ ଆରମ୍ଭ କଲେ । ସଙ୍ଗେ ସଙ୍ଗେ ନନା ମୋତେ ଫୋନ୍ କଲେ ''ଶ୍ରୁତି ଦୋଉଡ଼ି ଆ'' । ମୁଁ ପହଞ୍ଚିଲି, ମୋତେ କହିଲେ, ''ବୁଝିଲୁ, ମତେ କାନ୍‌ସର୍ ହୋଇଛି, ଭଲ ହେଲା ।'' ଏହା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁରହିଲି, ତା'ପରେ ଯାହା କହିଲେ ଶୁଣି ମୋ ଆଖିରୁ ଲୁହ ଗଡ଼ିଗଲା, କହିଲେ ''ଆଲୋ, ମତେ ଏଡ଼େ ବଡ଼ ରୋଗ ନ ହୋଇଥିଲେ ଅନ୍ନଦା କ'ଣ ମୋ କଥା ଶୁଣିଥା'ନ୍ତା, ନା ନୀଳକଣ୍ଠଙ୍କର ମୂର୍ତ୍ତି ତାଙ୍କର ଉଚିତ ସ୍ଥାନ ପାଇଥାନ୍ତା ।'' ସତରେ ଅଦ୍ଭୁତ ମଣିଷ ସେ !

କ୍ରମେ କ୍ରମେ କଷ୍ଟ ବଢ଼ି ଚାଲିଥାଏ । ପେଟରୁ ଲିଟର୍ ଲିଟର୍ ପାଣି କଢ଼ା ହେଉଥାଏ । ସବୁ କାର୍ଯ୍ୟ ତ ତାଙ୍କର ସରିଥାଏ, ସତେ ଯେମିତି ଭଗବାନ୍ ତାଙ୍କର ଶରୀର ମୋହ ବି ଶେଷ କରୁଥିଲେ । ଏତେ ଯନ୍ତ୍ରଣା ମଧ୍ୟରେ ବି ଗୋଟିଏ କଥା- ''ମା ଲୋ, ମତେ ପିତୃ ଋଣରୁ ମୁକ୍ତ କର, ମୁଁ ଯିବି ।'' ମୁଁ ଥଟ୍ଟା କରେ ''କୁଆଡ଼େ ଯିବ ?'' କୁହନ୍ତି- ''ପାଟି କରନା, ମୁଁ ଯାହା କହୁଛି କରି ଦେ ।'' ମୂର୍ତ୍ତି ତିଆରି ହେଲା, ସମସ୍ତ ଆୟୋଜନ ଚାଲିଥାଏ । ପ୍ରତ୍ୟେକ ଦିନ ଚାତକ ପରି ଚାହିଁ ରହିଥା'ନ୍ତି ସେହି ଦିନକୁ, ଯେଉଁଦିନ କି ନୀଳକଣ୍ଠଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ ହେବ । ପିଲାଙ୍କ ପରି ଜିଦ୍ କରୁଥିଲେ- ''ଗଭର୍ଣ୍ଣରଙ୍କୁ ଡାକିବ । ବିଷ୍ଣୁ (ଡାକ୍ତର ବିଷ୍ଣୁଚରଣ ମିଶ୍ର) ଆଉ ଭବଙ୍କୁ (ଭବ ପ୍ରସାଦ ମହାପାତ୍ର) କହିବୁ ମତେ ଟିକିଏ ଗାଡ଼ିରେ ନେଇଯିବେ । ମୁଁ ଫୁଲମାଳଟିଏ ଦେବି ଆଉ ଗଭର୍ଣ୍ଣରଙ୍କ ସଙ୍ଗେ ହାଣ୍ଡସେକ୍ କରିବି ।''

ସତେ ଯେମିତି ମୃତ୍ୟୁ ବି ତା'ର କରାଳ ହାତ ଡରରେ ଅଟକାଇ ରଖିଥିଲା । ଏହି ଭୀଷ୍ମପ୍ରତୀମ ବ୍ୟକ୍ତିଙ୍କର ଇଚ୍ଛା ପୂର୍ବରୁ ତାଙ୍କୁ ନେବ କେମିତି ? ଦିନ ପାଖେଇ ଆସିଲା, ମୂର୍ତ୍ତି ଉନ୍ମୋଚନର ଆୟୋଜନ ଚାଲିଥାଏ, ଉନ୍ମୋଚନର ତାରିଖ ୩୦ ଜୁନ୍ ସ୍ଥିର ହୋଇ କାର୍ଡ଼ ଛପା ହୋଇଗଲା । ଜୁନ୍ ୨୩ ତାରିଖ ୨୦୦୭, ମୁଁ ଖୁସିରେ ଆସି ମୋର ଶଯ୍ୟାଶାୟୀ ନନାଙ୍କୁ କୁଣ୍ଢାଇ ପକାଇଲି- ''ନନା, ତୁମ ପିତୃଋଣ ଶୁଝି ଗଲା । ୩୦ ଜୁନ୍‌ରେ ଉନ୍ମୋଚନ ହେବ । ନିମନ୍ତ୍ରଣ କାର୍ଡ଼ ବଣ୍ଟା ହେଲାଣି ।'' ରୋଗ ଜୀର୍ଣ୍ଣ ଶରୀର ମଧ୍ୟକୁ ଏତେ ଶକ୍ତି କୁଆଡୁ ଆସିଲା କେଜାଣି, ମୋତେ ଜାବୁଡ଼ି ଧରି କହିଲେ, ''good, very good'' ତା'ପରେ ନୀଳକଣ୍ଠଙ୍କ ଫଟୋକୁ ଚାହିଁ ଟିକିଏ ହସିଦେଲେ । ମୁଁ କିନ୍ତୁ ଜାଣି ନ ଥିଲି ଯେ ମୋର ଭୀଷ୍ମପ୍ରତୀମ ନନା ଋଣ ମୁକ୍ତ ହୋଇ ସେହି ରାତିରେ ଚାଲିଯିବେ ତାଙ୍କ ପିତା ଏବଂ ଭାଇନା, ଅଶୋକଙ୍କ ପାଖକୁ । ୨୪ ତାରିଖ ସକାଳୁ ଫୋନ୍ ପାଇଲି ମୋ ପିତା ଆଉ ନାହାନ୍ତି । କିଛି ଭାବିପାରିଲି ନାହିଁ । ଯେମିତି କାଠ ପାଲଟି ଗଲି । ଜୁନ୍ ୧୧ ତାରିଖ ଦିନ ସେ ତାଙ୍କ ଜୀବନର ଶେଷ ପଦକ ଲେଖିଥିଲେ- ''God is great and meriful'' ସେହି ଧାଡ଼ିଟି ଯେପରି ମୋର ଚାରିପଟେ ହେଲା । ଦୁଃଖରେ ଭାଙ୍ଗି ପଡୁ ପଡୁ କିଏ ଯେମିତି ମୋତେ ମନେ ପକାଇ ଦେଲା- ''ଏପରି ପିତାଙ୍କ ସନ୍ତାନ ହେବା ଅନେକ ଜନ୍ମର ପୁଣ୍ୟଫଳ ।''

ଉଦୟଶ୍ରୀ, ନାରାୟଣ ମିଶ୍ର ଲେନ୍,
ମହତାବ ରୋଡ଼, କଟକ

◆◆◆



*(ଅଧ୍ୟାପକ ଡକ୍ଟର ଶ୍ରୁତି ଦାସ ସାହିତ୍ୟ ସାଧକ ଡାକ୍ତର ବିକ୍ରମ ଦାସଙ୍କର ପୁତ୍ରୀ ତଥା ମନୀଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୌତ୍ରୀ)*

# ପ୍ରଫେସର ଡାକ୍ତର ବିକ୍ରମ ଦାସ ଏକ ଅମଳିନ ବ୍ୟକ୍ତିତ୍ୱ

ଡାକ୍ତର ପ୍ରସନ୍ନ କୁମାର ରାଠୋର

ପ୍ରଫେସର (ଡାକ୍ତର) ବିକ୍ରମ ଦାସ, ଏକାଧାରରେ ଜଣେ ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ, ଡାକ୍ତର, ମେଡ଼ିକାଲ କଲେଜ ପ୍ରଫେସର ଓ ସର୍ବୋପରି ଜଣେ ମଣିଷକୁ ଭଲ ପାଉଥିବା ମାନବବାଦୀ ଚରିତ୍ର । ସେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁତ୍ର ରୂପେ ଜନ୍ମ ନେଇଥିଲେ ସତ, କିନ୍ତୁ ଜୀବନର କେଉଁଠାରେ ହେଲେ ସେ ପିତୃ ପରିଚୟର ଚାପ ବା ଛାପର ସାହାରା ନେଇ ନାହାନ୍ତି । ତାଙ୍କର ଜୀବନ କାହାଣୀ ଉପକୂଳ ଓଡ଼ିଶାର ଜନଜୀବନର ପଞ୍ଚସ୍ତରୀ ବର୍ଷର ଜୀବନ୍ତ ଇତିହାସ ।

ସ୍ୱାଧୀନତା ସଂଗ୍ରାମର ଆଦ୍ୟାବସ୍ଥାରେ ଅର୍ଥାତ୍ ବଙ୍ଗଭଙ୍ଗ ଆନ୍ଦୋଳନର ପାଖାପାଖି ୧୬ ବର୍ଷ ପରେ ତାଙ୍କର ଜନ୍ମ । ସେ ସତ୍ୟବାଦୀର ଗୁରୁକୁଳଙ୍କଠାରୁ ଶିକ୍ଷାଲାଭ କରିଥିଲେ । ବିଂଶ ଶତାବ୍ଦୀର ତୃତୀୟ ଦଶକର ବହୁଳାଂଶ 'ପଞ୍ଚସଖା' ନାମରେ ନାମିତ ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ଓଡ଼ିଶାର ରାଜନୀତି ସାହିତ୍ୟ ଓ ସଂସ୍କୃତି ତଥା ଜୀବନଧାରା ଉପରେ କାଳଜୟୀ ପ୍ରଭାବ ପକାଇପାରିଥିଲେ ।

ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ ଓ ପ୍ରଚାରକ ଅନନ୍ତ ମିଶ୍ର ଦିନେ ଭାର୍ଗବୀ ନଦୀର ଜଳ ସ୍ପର୍ଶ କରି ଶପଥ କରିଥିଲେ ଯେ ସେମାନେ ସରକାରୀ ପଦ ଓ କ୍ଷମତାରେ ଯୋଗ ନ ଦେଇ ଦେଶମାତୃକାର ସେବା କରିବେ ଏବଂ ମରିବା ଆଗରୁ ଦେଶକୁ ଆହୁରି ଉନ୍ନତ ଅବସ୍ଥାରେ ଦେଖି ମରିବେ । ଅତଏବ ଦେଶପାଇଁ ପଣ୍ଡିତ ନୀଳକଣ୍ଠ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ତାଙ୍କର ଦ୍ୱିତୀୟ ସୁପୁତ୍ର ଡାକ୍ତର ବିକ୍ରମ ଦାସଙ୍କୁ ସେ କୌଣସି ଭାବେ ଆଜିକାଲିର ରୀତି (ପ୍ରିୟାପ୍ରୀତି ତୋଷଣ) ଅନୁଯାୟୀ ପ୍ରୋତ୍ସାହନ ଦେଇ ନ ଥିଲେ । ପ୍ରଚଣ୍ଡ ପ୍ରତିଭାଶାଳୀ ଯଶସ୍ୱୀ ବିକ୍ରମବାବୁ ଗ୍ରାମରୁ ବିଦ୍ୟାଳୟ ଶିକ୍ଷା ଲାଭ ପରେ ରେଭେନ୍ସା କଲିଜିଏଟ୍ ସ୍କୁଲରୁ ମାଟ୍ରିକ ପାସ୍ କଲେ । ତରୁଣ ବୟସରେ ୨୧.୦୪.୧୯୩୯ ତାରିଖରେ ରେଭେନ୍ସା କଲିଜିଏଟ୍ ସ୍କୁଲର ଛାତ୍ର ଥିବା ସମୟରେ ସେ କାରାବରଣ କରିଥିଲେ ।

ପରେ ପରେ ରେଭେନ୍ସା କଲେଜରେ I.Sc. ଶ୍ରେଣୀରେ ନାମ ଲେଖାଇଲେ । କିନ୍ତୁ ତତ୍କାଳୀନ ଇଂରେଜ ଶାସନର ଅଗଣତାନ୍ତ୍ରିକ ସ୍ୱେଚ୍ଛାଚାରୀ ଶାସନର ସେ ଅତ୍ୟନ୍ତ ଅସ୍ଥିର ଅନୁଭବ କରିଥିଲେ । ତାଙ୍କର ରକ୍ତରେ ତ ପିଲାବେଳୁ ସ୍ୱାଧୀନତା ସଂଗ୍ରାମର ବୀଜବପନ ହୋଇସାରିଥାଏ । ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ଇଂରେଜ ସରକାରଙ୍କ ବିରୋଧରେ ସେ ଭାଗ ନିଅନ୍ତି । ସେତେବେଳେ ଛାତ୍ରମାନଙ୍କ ଉପରେ ପୋଲିସ ଦମନଲୀଳା ଅତ୍ୟନ୍ତ କଠୋର ଥିଲା । ରେଭେନ୍ସା କଲେଜରୁ ତାଙ୍କୁ ଗିରଫ କରିବା ପାଇଁ ବ୍ରିଟିଶ୍ ପୋଲିସ ଖୋଜିବାକୁ ଲାଗିଲା । ସେ କୌଶଳକ୍ରମେ ସେଠାରୁ ଖସି ପଳାଇଲେ । ୧୯୪୪ ମସିହାରେ ସେ ରେଭେନ୍ସା କଲେଜରୁ ନିଷ୍କ୍ରମଣ ପତ୍ର ନେଇ କଲିକତାର ଜାତୀୟବାଦୀ ଅନୁଷ୍ଠାନ ବଙ୍ଗବାସୀ କଲେଜରୁ I.Sc. ପାସ୍ କଲେ । ୧୯୪୫ ମସିହା ବେଳକୁ ରାଜନୀତି ପରିବର୍ତ୍ତନ ହେତୁ ବ୍ରିଟିଶ୍ ସରକାର କୋହଳ ନୀତି ଧରିଲେ । ସେ ତତ୍କାଳୀନ ଓଡ଼ିଶା ମେଡ଼ିକାଲ କଲେଜର MBBS ଡିଗ୍ରୀ ପାଠରେ ନାମ ଲେଖାଇଲେ । ମେଡ଼ିକାଲ ପଢ଼ିବା ସମୟରେ ଗୋଟିଏ କଙ୍କାଳକୁ ଚାହିଁ ସେ ଗୋଟିଏ କବିତା ଲେଖିଥିଲେ । ତା'ର ନାମ ହେଉଛି 'ଶେଷ ରାଶିଫଳ' । xxx ୧୯୪୭ ଅଗଷ୍ଟ ୧୫ ରେ ଦେଶ ସ୍ୱାଧୀନ ହେବା ପରେ ରାଜନୀତିର ଗୁଣାତ୍ମକ ପରିବର୍ତ୍ତନ ଘଟିଲା । ନିଃସ୍ୱାର୍ଥପର ସେବା ଓ ତ୍ୟାଗ ଲୁଚି ଲୁଚି ଗଲା । ଭୋଗବିଳାସ ଓ ଜଗତ୍ ଦୁଃଖରେ ଥାଉ ପଛେ ମୁଁ ଓ ମୋର ପରିବାର ଭଲରେ ରହୁ ଏହା ଜନଚରିତ୍ରର ଅଂଶ ହୋଇଗଲା । ଏଥିରେ ମର୍ମାହତ ହୋଇ ବିକ୍ରମବାବୁ ଦୀର୍ଘଦିନରୁ ପିନ୍ଧି ଆସିଥିବା ଖଦଡ଼ ପୋଷାକ ପରିତ୍ୟାଗ କଲେ ଓ କ୍ଷମତା ରାଜନୀତିରୁ ସନ୍ନ୍ୟାସ ନେଲେ ।

ସେତେବେଳେ ମେଡ଼ିକାଲ କଲେଜରୁ ଜଣେ ଛାତ୍ର ଏମ୍.ବି.ବି.ଏସ୍. ପାସ୍ କଲେ, ଜଣେ ସମ୍ପୂର୍ଣ୍ଣ ସାଧାରଣ ଭେଷଜ ଓ ଶଲ୍ୟ ତଥା ସ୍ତ୍ରୀ ପ୍ରସୂତିଠାରୁ ଆରମ୍ଭ କରି ଦାନ୍ତ, ନାକ, କାନ, ଚର୍ମ ପ୍ରଭୃତିରେ ଚିକିତ୍ସା କରିପାରୁଥିଲେ । କାରଣ ସେତେବେଳେ ବିଶେଷଜ୍ଞ (Specialist) ଡ଼ାକ୍ତର ଶ୍ରେଣୀର ପରମ୍ପରା ଆରମ୍ଭ ହୋଇ

ନ ଥାଏ । ସେତେବେଳେ ଅନ୍ତଃଚିକିତ୍ସକ (Intern) ପ୍ରଥା ନ ଥାଏ । ୫ ବର୍ଷର ଏମ୍.ବି.ବି.ଏସ୍. ପାଠ ପାସ୍ ପରେ ପ୍ରାୟତଃ ଡାକ୍ତର ପଦ ପାଇଁ ଛାତ୍ରମାନେ ଯୋଗ୍ୟ ହେଉଥିଲେ । ଏମ୍.ବି.ବି.ଏସ୍. ଡାକ୍ତରଙ୍କ ମଧ୍ୟରୁ କୃତୀ ଛାତ୍ରମାନଙ୍କ ମଧ୍ୟରୁ କେତେଜଣ ବଛା ବଛା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ହାଉସ୍‌ଫିଜିସିୟାନ ରୂପେ ଯୋଗ ଦେଉଥିଲେ । ଅଧିକ ଜ୍ଞାନ ଓ ଅନୁଭୂତି ଆହରଣ ପାଇଁ ଭଲ ଛାତ୍ରମାନେ ୬ ମାସ ହାଉସ୍‌ଫିଜିସିୟାନ ରୂପେ କାର୍ଯ୍ୟ କରୁଥିଲେ । ବିକ୍ରମ ବାବୁ ହାଉସ୍ ଫିଜିସିୟାନ ରୂପେ କାର୍ଯ୍ୟ କରୁଥିବା ସମୟରେ କଠିନ ପରିଶ୍ରମ ଓ ଅଧ୍ୟବସାୟ ଦ୍ୱାରା ଡାକ୍ତରୀ ପାଠର ବ୍ୟବହାରିକ ଦିଗର ଅନେକ ତତ୍ତ୍ୱ ଆହରଣ କରିପାରିଥିଲେ । ତାଙ୍କର ପ୍ରଚଣ୍ଡ ସୌଭାଗ୍ୟ ଯେ ସେ ତତ୍କାଳୀନ ପ୍ରସିଦ୍ଧ ଭେଷଜ ବିଜ୍ଞାନୀ, ପ୍ରଫେସର ପିସାରୋଟିଙ୍କର ପ୍ରିୟ ଛାତ୍ର ଥିଲେ । ସେହି ଉତ୍କୃଷ୍ଟ ତାଲିମ ହେତୁ ପରବର୍ତ୍ତୀ ସମୟରେ କଲେରା ୱାର୍ଡ଼ର ତତ୍ତ୍ୱାବଧାରକ (ହାଉସ୍‌ଫିଜିସିୟାନ୍) ଥିବା ସମୟରେ ରନ୍ତ ଲେଇ (ଅନୁଗୁଳ ନିକଟ) ମହାମାରୀରେ ପୀଡ଼ିତ ଲୋକମାନଙ୍କର ଚିକିତ୍ସା ସୁଚାରୁରୂପେ ସମ୍ପାଦନ କରିଥିଲେ । ସେତେବେଳେ ଅଗଣିତ ରୋଗୀଙ୍କର ଚିହ୍ନଟ ପାଇଁ ସେ ଟୋକନ୍ ଆକାରରେ ନମ୍ବର ବ୍ୟବସ୍ଥା କରିଥିଲେ । ବିଭିନ୍ନ ରୋଗୀଙ୍କ ଚିହ୍ନଟ ପାଇଁ ଏହା ସେତେବେଳେ ଅତ୍ୟନ୍ତ ସହାୟକ ହୋଇଥିଲା ।

ପରେ ପରେ ସେ ଆମେରିକାରୁ ପାଥୋଲୋଜିରେ ସ୍ନାତକୋତ୍ତର ଡିଗ୍ରୀ ପ୍ରାପ୍ତ ହେଲେ । ଉଚ୍ଚଶିକ୍ଷା ଗ୍ରହଣ କରି ଆମେରିକାରୁ ଫେରି ସେ କ୍ଷମତା ରାଜନୀତିରେ ଯୋଗ ଦେବା ପାଇଁ ଆସିଥିବା ସୁଯୋଗକୁ ପାଦରେ ଦଳିଦେଇ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜରେ ଯୋଗ ଦେଇଥିଲେ । ସେତେବେଳକୁ ତାଙ୍କ ପିତା ପଣ୍ଡିତ ନୀଳକଣ୍ଠ ଦାସ ଅସୁସ୍ଥ ଥିଲେ । ତେଣୁ ପିତାଙ୍କ ସେବାଯତ୍ନରେ ସେ ସମୟ ଦେବା ସହ ଡାକ୍ତରୀଛାତ୍ରଙ୍କୁ ତାଲିମ ଦେବାରେ ମନ ଦେଇଥିଲେ । ଓଡ଼ିଶାରେ ପାଥୋଲୋଜି ବିଭାଗକୁ ଏକ ଉନ୍ନତ ସ୍ନାତକୋତ୍ତର ବିଭାଗରେ ପରିଣତ କରିବାରେ ତାଙ୍କର ଭୂମିକା ସର୍ବକାଳୀନ ସ୍ୱୀକୃତ । ଦକ୍ଷିଣ ଓଡ଼ିଶାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଭେଷଜ ମହାବିଦ୍ୟାଳୟର ପାଥୋଲୋଜି ବିଭାଗର ପ୍ରଫେସର ଭାବେ ସେ ବିଭାଗଟିକୁ ଯତ୍ନର ସହ ନିଜ ହାତରେ ଗଢ଼ି ତୋଳି ଏକ ପୂର୍ଣ୍ଣାଙ୍ଗ ବିଭାଗରେ ପରିଣତ କଲେ ।

୧୯୭୫ ମସିହାରେ ସରକାରୀ ଚାକିରିରୁ ଅବସର ପରେ ଏକ ପରିପକ୍ୱ ଅନୁଭବ ଓ ଅନୁଭୂତିର ବିସ୍ତୃତ କାନ୍‌ଭାସ୍‌ରେ ସେ ନିରାସକ୍ତ ଉଦାସୀନତାର ସ୍ୱର୍ଗୀୟ ଭାବ ନେଇ ସେ ଲେଖାଲେଖି ଆରମ୍ଭ କଲେ । ତାଙ୍କର ଅଭିଜ୍ଞତା ଥିଲା ଅସୀମ ଓ ରଚନା ଥିଲା ଅଜସ୍ରସ୍ରାବୀ । ସେ ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ହାତ ଦେଇଛନ୍ତି ଓ ସଫଳ ହୋଇଛନ୍ତି । ପ୍ରଖ୍ୟାତ ସାହିତ୍ୟିକ ହେମିଂୱେ କହିଥିଲେ ''ସଫଳତା ହେଉଛି ଏକ ଯାତ୍ରା, ଏହା ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳୀରେ ସୀମିତ ହୋଇ ନ ଥାଏ ।'' ପ୍ରଫେସର ବିକ୍ରମ ଦାସ ଥିଲେ ଜଣେ ସଫଳ ଯାତ୍ରୀ । ଏକଦା ସଂକ୍ରାନ୍ତି ପୁରୁଷ, ବ୍ୟାସକବି, ସରସ୍ୱତୀ ଫକୀରମୋହନ ତରୁଣ ଲେଖକ ଲକ୍ଷ୍ମୀକାନ୍ତଙ୍କୁ (ପରବର୍ତ୍ତୀ କାଳର ପ୍ରସିଦ୍ଧ 'କାନ୍ତକବି') ଉତ୍ସାହ ଦେଇ କହିଥିଲେ, ''ଥକିବୁ ନାହିଁ ବାପା ! ତୁ ଲେଖିଯିବୁ, ଭଲମନ୍ଦ ବିଚାର କରିବୁ ନାହିଁ । ସେ ବିଚାର କରିବ କାଳ । ଯାହା ଶୁଦ୍ଧସୁବର୍ଣ୍ଣ ତାହା କାଳ କାଳକୁ ଉଜ୍ଜ୍ୱଳ ରହିବ, ଯାହା ଖାଦ ତାହା କାଳର ନିଆଁରେ ଜଳିପୋଡ଼ି ଭସ୍ମ ହୋଇଯିବ ।'' ସେହି କଥା ବିକ୍ରମ ବାବୁଙ୍କ ପ୍ରତି ପ୍ରଯୁଜ୍ୟ । ସେ ପୁରସ୍କାର ପାଇବା ପାଇଁ କେବେ ବି ଲବି କରି ନାହାନ୍ତି କି ପୁରସ୍କାର ଯୋଗାଡ଼ରେ ମାତି ନାହାନ୍ତି । ସେ କେବଳ ଲେଖି ଚାଲିଛନ୍ତି । ଗଳ୍ପ, ଉପନ୍ୟାସ, ରମ୍ୟରଚନା, ଭ୍ରମଣ କାହାଣୀ, ଜୀବନୀ, କବିତା, ଶିଶୁ ଓ ପ୍ରୌଢ଼ ସାହିତ୍ୟ ପ୍ରଭୃତି ବିଭାଗରେ ସେ ରଚନା କରିଛନ୍ତି ଅନେକ କାଳଜୟୀ ପୁସ୍ତକାବଳୀ, ଇଂରେଜୀରେ ମଧ୍ୟ ସେ ଅନେକ ରଚନା ଲେଖି ଯାଇଛନ୍ତି ।

ଦୀର୍ଘ ୭୦ ବର୍ଷର ନିଜ ଜୀବନର ଅନୁଭୂତିକୁ ଅତି ସୁନ୍ଦର ଭାବେ ସେ ପରିବେଷଣ କରିଛନ୍ତି । ଜୀବନର ଛାପ ଅନୁଭୂତି ଓ ଅନ୍ୱେଷଣ ପୁସ୍ତକରେ । ଏଥିରେ ସମସାମୟିକ ଓଡ଼ିଶାର ସାମାଜିକ, ରାଜନୈତିକ ତଥା ସାଂସ୍କୃତିକ ଇତିହାସ ସହ ଓଡ଼ିଶାରେ ମେଡ଼ିକାଲ ଶିକ୍ଷାର ଅୟମାରମ୍ଭରୁ ମେଡ଼ିକାଲ କଲେଜ ଶିକ୍ଷାନ୍ତର ପର୍ଯ୍ୟନ୍ତ ଜାଣିହୁଏ । ଓଡ଼ିଶାରେ ଡାକ୍ତରଙ୍କର ସମସ୍ୟା ୧୯୪୧ ମସିହାରେ ଯାହା ଥିଲା, ଏବେ ମଧ୍ୟ ଊଣାଅଧିକେ ତାହା ହିଁ ରହିଛି । ଏବେ ମଧ୍ୟ ଓଡ଼ିଶାରେ ଡାକ୍ତର ସମାଜ ଉପଯୁକ୍ତ ସ୍ୱୀକୃତି ପାଇ ନାହାନ୍ତି ।

୧୩ ଫେବୃୟାରୀ ୧୯୨୧ ମସିହାରେ ତାଙ୍କର ଜୀବନର ସୃଷ୍ଟି । ଏହା ସୌଭାଗ୍ୟର ସର୍ବୋଚ୍ଚ ଶିଖର ଛୁଇଁଥିଲା । ୨୪ ଜୁନ୍ ୨୦୦୭ରେ ଏହି ମହାପୁରୁଷଙ୍କର ପାର୍ଥିବ ଶରୀର ପଞ୍ଚଭୂତରେ ବିଲୀନ ହୋଇଯାଇଥିଲା । ଆମ ଆଖି ଆଗରୁ ଅପସରି ଯାଇଥିଲା ଏକ ଆଭୂମନଭସ୍ପର୍ଶୀ ବିରାଟ ଜୀବନ କାହାଣୀର ଉଭା ହୋଇଥିବା ରୂପ । ଓଡ଼ିଆ ଭାଷା ସାହିତ୍ୟର ଆକାଶରେ ସେ ଏକ ଅମଳିନ ଜ୍ୟୋତିଷ୍କ । ''ଯଶୋଦେହେ ସେ ଚିର ଆୟୁଷ୍ମାନ୍'' ।



ଆସିଷ୍ଟାଣ୍ଟ ପ୍ରଫେସର, ମେଡ଼ିସିନ୍ ବିଭାଗ
ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜ, କଟକ-୭୫୩୦୦୭

# ଡାକ୍ତର ବିକ୍ରମ ଦାସଙ୍କ ସୃଷ୍ଟିରେ ଅନୁଭୂତି, ଅନ୍ୱେଷଣ ଓ ଅନୁରାଗ

ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ଡାକ୍ତର ବିକ୍ରମ ଦାସଙ୍କ 'ଆମ ଗଜପତି : ଆମ ଗାଁ' ପୁସ୍ତକର 'ପଦେ କଥା'ରେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ଲେଖିଛନ୍ତି, ''ଡାକ୍ତର ବିକ୍ରମ ଦାସ ଜଣେ ନିଦାନୀ । ଶରୀରର ବିଭିନ୍ନ ଉପାଦାନ ଓ ନର୍ଗତଗୁଡ଼ିକର ପରୀକ୍ଷା କରି ରୋଗ ନିର୍ଣ୍ଣୟ କରିବା ଥିଲା ତାଙ୍କ ବୃତ୍ତିଗତ କର୍ତ୍ତବ୍ୟ ।.... ରୋଗ ନିର୍ଣ୍ଣୟ କରିବା ଲାଗି ମଣିଷ ଶରୀରକୁ ଛାଡ଼ି ସେ ବର୍ତ୍ତମାନ ସମାଜର ଶରୀରର ରୋଗ ନିର୍ଣ୍ଣୟ କରିବାକୁ ଆରମ୍ଭ କରିଛନ୍ତି । ଏହି ପୁସ୍ତକଟି ସେହି ପ୍ରବୃତ୍ତିର ପରିଣାମ ।'' ଠିକ୍ ସେହିପରି ଡାକ୍ତର ବିକ୍ରମ ଦାସଙ୍କ ଆତ୍ମଜୀବନୀ ପୁସ୍ତକ 'ଜୀବନ ଛାପ'ର ମୁଖବନ୍ଧରେ ଡକ୍ଟର ହରିହର ପଟ୍ଟନାୟକ ଉଲ୍ଲେଖ କରିଛନ୍ତି, ''.... ଏହି ଆତ୍ମଜୀବନୀ ଘଟଣାବଳୀକୁ ସତୁରୀ ବର୍ଷର ଏକ ସୂଚନାତ୍ମକ ଇତିହାସ କୁହାଯାଇପାରେ । ବହୁ କଥା ଏଥିରୁ ଜାଣିହୁଏ । ଏହା ଏକ ଭିନ୍ନ ସ୍ୱାଦର ଆତ୍ମଜୀବନୀ ।'' ଏହି ଦୁଇ ପୁସ୍ତକରେ ଲେଖକୀୟ ଦୃଷ୍ଟିକୋଣକୁ ମଧ୍ୟ ବିଚାର କରିବାର କଥା । 'ଆମ ଗଜପତି : ଆମ ଗାଁ' ପୁସ୍ତକର 'ମୁଖବନ୍ଧ'ରେ ଶ୍ରୀ ଦାସ ପ୍ରକାଶ କରିଛନ୍ତି, ''ଭାରତ ପ୍ରାୟ ଅର୍ଦ୍ଧଶତାବ୍ଦୀ ହେଲା ସ୍ୱାଧୀନତା ଲାଭ କଲାଣି, କିନ୍ତୁ ବାସ୍ତବରେ ଆମ୍ଭେ ପଶ୍ଚିମୀ ପ୍ରଭାବରୁ ନିଜକୁ ଅଲଗା କରିପାରି ନାହୁଁ । ସେଥିପାଇଁ ବର୍ତ୍ତମାନ ଆଉ ପଶ୍ଚିମୀ ହାୱାରେ ଭାସି ନ ଯାଇ ଆମ ଘରକୁ ଆମେ ସଜାଡ଼ିବା । ଆମ ପୂର୍ବପୁରୁଷଙ୍କ ଗଢ଼ା ଶାସନ ପଦ୍ଧତି ଓ ବିଶେଷରେ ଏ ପର୍ଯ୍ୟନ୍ତ କେତେକାଂଶରେ ଜୀବନ ଥିବା ଗ୍ରାମୀୟ ସମାଜ ଶୃଙ୍ଖଳାକୁ ଆମେ ଆଖି ଖୋଲି ଦେଖିବା ଉଚିତ । 'ଆମ ଗଜପତି : ଆମ ଗାଁ'ରେ ଓଡ଼ିଶାର ନିର୍ଦ୍ଦିଷ୍ଟ ଗ୍ରାମୀଣ ଜୀବନର ଯେପରି ସ୍ୱଚ୍ଛ ଚିତ୍ରଟିଏ ସେ ବାଢ଼ିଛନ୍ତି, ଠିକ୍ ସେହିପରି 'ଜୀବନର ଛାପ'ରେ ଦୀର୍ଘ ସତୁରୀ ବର୍ଷର ସାମାଜିକ ସ୍ଥିତି, ଐତିହାସିକ ଭିତ୍ତିଭୂମି, ରାଜନୈତିକ ଆବହାୱା ଓ ସାଂସ୍କୃତିକ ରୂପଚିତ୍ର ବେଶ୍ ଉଜ୍ଜ୍ୱଳ ।

ସ୍ୱାଧୀନତା ଲାଭର ଅର୍ଦ୍ଧଶତାବ୍ଦୀ ସମୟ ଅତିବାହିତ ହେବା ପରେ ଆମର ଦୃଷ୍ଟିକୋଣ ଯେପରି ମାଟି ଛାଡ଼ିଛି, ସେଥିରେ ବ୍ୟଥିତ ହୋଇଛନ୍ତି ଡାକ୍ତର ଦାସ । ସମୃଦ୍ଧ ଐତିହ୍ୟ ହିଁ ତାଙ୍କ ସୃଷ୍ଟିରେ ସଜୀବ ହୋଇଉଠିଛି । ଜୀବନରେ ରହିଛି ଅନୁଭୂତିର ବର୍ଣ୍ଣିଳ ବର୍ଣ୍ଣବିଭା ଏବଂ ଅତୀତକୁ ଅନ୍ୱେଷଣ କରିବାର ନିଷ୍ଠାପର ପ୍ରୟାସ । ସେଥିପାଇଁ ତ ଅତୀତ କଥା କହିଛି, ଯେଉଁ କଥା ଓଡ଼ିଶା ମାଟିର ମହିମାକୁ ପ୍ରତିପାଦିତ କରିଛି, ଗୌରବମୟ ସମୟର ସଜଳ ସ୍ମୃତି ହୋଇଛି ଖୁବ୍ ହୃଦୟଗ୍ରାହୀ ।

'ମଣିମା ଡିହ'ଠାରୁ 'ନିର୍ବାସିତ ଗଜପତି', 'ଅଲିଭା ଇତିହାସ'ଠାରୁ 'ମୋ ନନାଙ୍କ ଦେଶ', 'ଚିତ୍ରେ ମହାମନୀଷୀ ନୀଳକଣ୍ଠ'ଠାରୁ 'ଆଦିଜ୍ୟୋତି ହରିହର'-ଏମିତି ଇତିହାସକୁ, ଇତିହାସ ଚରିତ୍ରଙ୍କୁ ନେଇ ଲିଖିତ ଉପନ୍ୟାସ, ଜୀବନୀ ଆଦିରେ କ'ଣ କହିବାକୁ ଚାହିଁଛନ୍ତି ଶ୍ରୀ ଦାସ ? କହିବାକୁ ଚାହିଁଛନ୍ତି ଆମେ ଭୁଲିଯାଉଥିବା ଆମ ଉତ୍ତରସୂରୀଙ୍କ ଅମଳିନ କର୍ମକୁ, କହିବାକୁ ଚାହିଁଛନ୍ତି ଇତିହାସର ବିସ୍ମୃତ ପୃଷ୍ଠାରେ ହଜି ହଜି ଯାଉଥିବା ଆମ ସମୃଦ୍ଧ ଐତିହ୍ୟକୁ । ଯାହାକୁ ନେଇ ଆମ୍ଭେ ଗର୍ବ କରିବାର କଥା, ସେଥିପାଇଁ ସାମାନ୍ୟ ଧ୍ୟାନ ଦେବାରେ ଯେତେବେଳେ ଆମେ ଅସମର୍ଥ; ସେତେବେଳେ କଥା କହିଛି ଡାକ୍ତର ଦାସଙ୍କ ଲେଖନୀ । ସେ କଥାରେ ନିଜ ଗାଁ ସମ୍ପର୍କରେ କହିବା ବେଳେ ଓଡ଼ିଶାର ସମୃଦ୍ଧମୟ ଅତୀତ, ନିଜ କଥା କହିବା ଭିତରେ ତତ୍‌କାଳୀନ ସାମାଜିକ ବିଧିବ୍ୟବସ୍ଥା ଓ ରାଜନୈତିକ ସ୍ଥିତି ଅଧିକରୁ ଅଧିକ ସ୍ପଷ୍ଟ ହୋଇଯାଏ ।

ମନୀଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦ୍ୱିତୀୟ ପୁତ୍ର ବିକ୍ରମ ଦାସଙ୍କ ପଛରେ ରହିଛି ପିତାଙ୍କ ପ୍ରଭାବ ଓ ପାରିବାରିକ ସଂସ୍କାର । ପରିବାରରୁ ଲେଖନୀ ଚାଳନା କରିବାର ପ୍ରେରଣା ଓ ଜାତୀୟତା ଭାବରେ ଉଦ୍‌ବୁଦ୍ଧ ହେବାର ଅବକାଶ । ଏ ସବୁର ଡାକ୍ତର ଦାସଙ୍କ ରଚନା ପରିଲକ୍ଷିତ ହେବା ସ୍ୱାଭାବିକ ତାହାହିଁ ଘଟିଛି ।

''ଆମ ଗଜପତି : ଆମ ଗାଁ' ଓ 'ଜୀବନର ଛାପ'କୁ ବିଚାର କଲେ ଏ ଦୁଇଟିକୁ ପରସ୍ପରଠାରୁ ଭିନ୍ନ କରିହେବ ନାହିଁ । ଯେପରି ଅନ୍ୟ ଚାରୋଟି ଜୀବନୀ ପୁସ୍ତକ 'ମୋ ନନାଙ୍କ ଦେଶ',

'ଚିତ୍ରେ ମହାମନୀଷୀ ନୀଳକଣ୍ଠ', 'ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ' ଓ 'ଆଦିଜ୍ୟୋତି ହରିହର' ଏହା ସହ ଗୋଟିଏ ସୂତ୍ରେ ବନ୍ଧା ବୋଲି ବୁଝିବାକୁ ହେବ । ସବୁଠି ନିଜସ୍ୱ ଅନୁଭୂତିକୁ ଦେଖିବାକୁ ମିଳିଛି, ସବୁଠି ଜୀବନ, ପରିବେଶ ଓ ସମୟକୁ ବୁଝିବାକୁ ପ୍ରଚେଷ୍ଟା କରାଯାଇଛି ।

ଇତିହାସମନସ୍କ ସ୍ରଷ୍ଟା ଡାକ୍ତର ବିକ୍ରମ ଦାସ । ଅତୀତର ପ୍ରେରଣା ବର୍ତ୍ତମାନକୁ ଗଢ଼ିବାରେ ସମର୍ଥ ଓ ଭବିଷ୍ୟତ୍ ପାଇଁ ଭାବଭୂମି ପ୍ରସ୍ତୁତ କରିବାରେ ସହାୟକ; ଏହାହିଁ ବୁଝିଥିଲେ ସ୍ରଷ୍ଟା । ସେଥିପାଇଁ ତାଙ୍କର ଅନ୍ୱେଷଣ ଓ ଏହି ଅନ୍ୱେଷଣରେ ତାଙ୍କୁ ସହାୟତା କରିଛି ତାଙ୍କ ଅନୁଭୂତି ବିଶେଷକରି ଏକ ପରିପୂର୍ଣ୍ଣ ଜୀବନ । ଯେଉଁ ଜୀବନ ହୋଇଛି ସ୍ୱାଧୀନତା ସଂଗ୍ରାମର ଅଂଶବିଶେଷ, ଯେଉଁ ଜୀବନ ମନ୍ଦ୍ରଗାନରେ ନିଜକୁ ନିମଜ୍ଜିତ କରିଛି, ଯେଉଁ ଜୀବନ ଅତୀତରୁ ସାର ସଂଗ୍ରହ କରି ଏକ ସମୃଦ୍ଧ ଭବିଷ୍ୟତ୍‌ର କାମନା କରିଆସିଛି ।

'ଆମ ଗଜପତି : ଆମ ଗାଁ' (ଗ୍ରନ୍ଥମନ୍ଦିର-ଜାନୁୟାରୀ, ୧୯୯୩)ରେ ଲେଖକଙ୍କ ଗାଁ, ଯେଉଁ ଗାଁ ପଣ୍ଡିତ ହରିହର ଦାସ ଶର୍ମା, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପ୍ରଚାରକ ଅନନ୍ତ ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର, ରାଧାମଣି ଦେବୀ, ଧାନମଣି ଦେବୀ ପ୍ରମୁଖଙ୍କ ଜନ୍ମମାଟି ଓ କର୍ମମୟ ଜୀବନର ଏକ୍ତିଆରଶାଳ ଥିଲା, ସେହି ମାଟିର ଇତିହାସକୁ ଖୋଜିଛନ୍ତି ଲେଖକ । ଖୋଜିଛନ୍ତି କିପରି ପ୍ରତିଷ୍ଠା ହୋଇଥିଲା ବୀର ରାମଚନ୍ଦ୍ରପୁର, ଶ୍ରୀରାମଚନ୍ଦ୍ରପୁର, ପ୍ରତାପ ରାମଚନ୍ଦ୍ରପୁର, ବିଜୟ ରାମଚନ୍ଦ୍ରପୁର, ଉଭୟମୁଖୀ ରାମଚନ୍ଦ୍ରପୁର, ବୀର ଗୋବିନ୍ଦପୁର ଓ ବୀର ପ୍ରତାପପୁର ପରି ୧୬ ଶାସନ କିପରି ଗଜପତି ରାମଚନ୍ଦ୍ର ଦେବ ବସାଇଥିଲେ ଏବଂ ଏହାର ପୃଷ୍ଠଭୂମିରେ ରହିଛି ସେତେବେଳର ଇତିହାସ, ସମାଜ ଜୀବନ ଓ ରାଜନୈତିକ ପରିବର୍ତ୍ତନ । ଗଜପତି ପ୍ରଥମ ରାମଚନ୍ଦ୍ର ଦେବଙ୍କ ଶାସନ ଓ କ୍ଷମତା ସମ୍ପର୍କରେ କରିଥିବା ଆଲୋଚନା ଅତୀତର ଅନେକ ତଥ୍ୟର ଉପସ୍ଥାପନ କରିଛି, ଯାହା ବର୍ତ୍ତମାନର ପିଢ଼ି ଜାଣିବାର ଅବକାଶ କ୍ଷୀଣ ହୋଇଯାଇଛି । ନିଜ ଗାଁ ସମ୍ପର୍କରେ ଲେଖନୀ ଚାଳନା କଲାବେଳେ ଏହା ପୃଷ୍ଠଭୂମିରେ ଓଡ଼ିଆ ସଂସ୍କୃତି ଓ ଐତିହ୍ୟ, ଶାସନ ଗ୍ରାମ, ସ୍ୱାଧୀନତାର ଶେଷ ଝଲକ ଗଜପତି ରାମଚନ୍ଦ୍ର, ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା, ମୁକ୍ତିମଣ୍ଡପ ଓ ସେଥିରେ ଷୋଳ ଶାସନର ପ୍ରତିନିଧି ଆଦି ସମ୍ପର୍କର ଆଲୋକପାତ କରିଛନ୍ତି ଲେଖକ । ଏଇଠି ଅନ୍ୱେଷଣ କରିବାର ଅବକାଶକୁ ସଠିକ୍ ଭାବେ ନିର୍ବାହ କରିଛନ୍ତି ଲେଖକ । ଏଥିପାଇଁ ମାଦଳା ପାଞ୍ଜିର ତଥ୍ୟକୁ ମଧ୍ୟ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ଶାସନଗୁଡ଼ିକ କିପରି ଥିଲା ସେ ସମ୍ପର୍କରେ ମଧ୍ୟ ଅବତାରଣା କରାଯାଇଛି ଏ ପୁସ୍ତକରେ । ଦୃଷ୍ଟାନ୍ତ ପାଇଁ ପୁରାଣ ଗ୍ରନ୍ଥ ଓ ପୁରାଣ ଚରିତ୍ରମାନଙ୍କ ଅବତାରଣା ଡାକ୍ତର ଦାସଙ୍କ ଧୀ-ଧୀଷଣାକୁ ପ୍ରତିପାଦିତ କରିଛି । ୧୫୯୦-୯୨ରେ ପ୍ରତିଷ୍ଠା ହୋଇଥିଲା ଲେଖକଙ୍କ ଗାଁ ଶ୍ରୀରାମଚନ୍ଦ୍ରପୁର ସମ୍ପର୍କରେ ସବିଶେଷ ତଥ୍ୟ ଉପସ୍ଥାପନ କରାଯାଇଛି । ଏହାକୁ ଉପସ୍ଥାପନ କଲାବେଳେ ଲେଖକ 'ଲଡୁଆ ଗ୍ରାମ ଯଶୀପୁର', 'ଆମ ଗ୍ରାମର ଗଠନ ଓ ଶାସନ', 'ଲୋକତନ୍ତ୍ର ଶାସନ ଓ ମହାଜନ ସଭା' ସମ୍ପର୍କରେ ଯାହା ଲେଖିଛନ୍ତି, ତାହା ପଢ଼ି ଓଡ଼ିଶାର ଇତିହାସ ଓ ଭୂଗୋଳକୁ ଜାଣିବା ଅବକାଶ ସୃଷ୍ଟି କରିଛି । 'ଗ୍ରାମ ଯୁଗମନୀଷୀ' ଶୀର୍ଷକ ଲେଖାରେ ଲେଖକ ଆଚାର୍ଯ୍ୟ ହରିହର ଦାସଙ୍କଠାରୁ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ପର୍ଯ୍ୟନ୍ତ ଏହି ଗ୍ରାମରେ ଜନ୍ମଗ୍ରହଣ କରିଥିବା ମନୀଷୀଙ୍କ ବିଷୟରେ ସବିଶେଷ ଉଲ୍ଲେଖ କରିଛନ୍ତି । ଏହି ଗାଁରେ ପର୍ବପର୍ବାଣି ସମ୍ପର୍କରେ ଉଲ୍ଲେଖ କଲାବେଳେ ଏହାର ବିଶେଷତ୍ୱକୁ ସେ ଦେଖାଇଛନ୍ତି । ଗୋଟିଏ ଗାଁକୁ ନେଇ ଏକଶତ ଛପନ ପୃଷ୍ଠାର ପୁସ୍ତକ 'ଆମ ଗଜପତି : ଆମ ଗାଆଁ', ପ୍ରକୃତରେ ମାଟିକୁ, ଗାଁକୁ ଭଲ ପାଉଥିବା ସ୍ରଷ୍ଟାଙ୍କ ମାଟିମନସ୍କ ଭାବଧାରାକୁ ଲକ୍ଷ୍ୟ କରିବାକୁ ହୁଏ । ପୁସ୍ତକରେ ସବୁଠି ଗାଁ ପ୍ରତି ଅନୁରାଗର ସ୍ପର୍ଶ ହିଁ ରହିଛି ।

'ଜୀବନର ଛାପ' ଆତ୍ମଜୀବନୀରେ ସ୍ରଷ୍ଟାଙ୍କ ମାଟିମନସ୍କ ଦୃଷ୍ଟିକୋଣ ହିଁ ପରିଲକ୍ଷିତ ହୁଏ । ଜୀବନାନୁଭୂତି ଓ ଅନ୍ୱେଷଣ ପୁସ୍ତକକୁ ସ୍ୱତନ୍ତ୍ର ଆସନ ଦେଇଛି । ସେଥିପାଇଁ ତ ଡକ୍ଟର ହରିହର ପଟ୍ଟନାୟକ ଯଥାର୍ଥରେ ଏହାକୁ ଭିନ୍ନସ୍ୱାଦ ବୋଲି କହିଛନ୍ତି । ପାରମ୍ପରିକ ରୀତିରେ ଲେଖାଯାଇଛି ଏହି ଆତ୍ମଜୀବନୀ । ଏଥିରେ ବାଲ୍ୟସ୍ମୃତି, ଛାତ୍ର ଅଶାନ୍ତି, ବିବାହ ଗହଳ, ବିଜ୍ଞବ୍ୟକ୍ତିଙ୍କ ସାନ୍ନିଧ୍ୟ ଓ ସାହିତ୍ୟ ସାଧନା, କାଳର ରୀତି ଓ ଗତି ଆଦି ଶୀର୍ଷରେ ଡାକ୍ତର ଦାସ ନିଜ କଥା କହିବା ଭିତରେ ଓଡ଼ିଶା, ଭାରତ ଓ ବିଦେଶ ସମ୍ପର୍କରେ ଭିନ୍ନ ଭିନ୍ନ ପ୍ରସଙ୍ଗରେ ତାଙ୍କ ମନୋଭାବ କ'ଣ, ତାହା ଉପସ୍ଥାପିତ କରିଛନ୍ତି । ଡାକ୍ତର ଦାସଙ୍କ ଜୀବନ-ଚିତ୍ର ଏକ ବିରାଟ କାନ୍‌ଭାସ ଉପରେ ହିଁ ଅଙ୍କିତ ହୋଇଛି । ସ୍ୱାଧୀନତା ସଂଗ୍ରାମର ଘନଘଟାଠାରୁ ଡାକ୍ତରୀ ଜୀବନ, ବିଦେଶର ଅନୁଭୂତିଠାରୁ ସମାଜକୈନ୍ଦ୍ରିକ ପ୍ରସଙ୍ଗରେ 'ଜୀବନର ଛାପ' କହିଛି ଅନେକ କଥା ।

ଚାଟଶାଳୀ ପଢ଼ା ହେଉ ବା ବନବିଦ୍ୟାଳୟ ଶିକ୍ଷା ହେଉ; ସେ ସମୟର ନିଚ୍ଛକ ଛବିଟିଏ ସ୍ଥାନ ପାଇଛି 'ବାଲ୍ୟସ୍ମୃତି', 'ମୋ ମାଇନର ପଢ଼ା', 'କଟକ ସ୍କୁଲ ପାଠପଢ଼ା' ଆଦି ଶୀର୍ଷକ ଅଧ୍ୟାୟରେ । ଅନୁଭୂତିକୁ ଯେତେବେଳେ ସେ ନିଜ ବିଚାର ନିକିତିରେ ତଉଲିଛନ୍ତି, ସେତେବେଳେ ଭିନ୍ନ ବିଚାରବୁଦ୍ଧିକୁ ଲକ୍ଷ୍ୟ କରିବାକୁ ହୁଏ । ''ବାଳକମାନଙ୍କଠାରୁ ବାଳିକାମାନଙ୍କ ଶିକ୍ଷା ବ୍ୟବସ୍ଥା ଆହୁରି ଶୋଚନୀୟ ଥିଲା । ଆମ ସଙ୍ଗେ ସାତଜଣ ବାଳିକା ନାମ ଲେଖାଇଥିଲେ । ସେଥିରୁ ୩ ଜଣ ମୋ ସଙ୍ଗେ ଉତ୍ତୀର୍ଣ୍ଣ ହୋଇଥିଲେ । ସେମାନେ ବିବାହ ପାଇଁ ପ୍ରସ୍ତୁତ ହୋଇ ପାଠପଢ଼ା ଛାଡ଼ିବାକୁ ବାଧ୍ୟ ହୋଇଛନ୍ତି ।''

ଶିକ୍ଷାର ଏପରି ଦୟନୀୟ ବ୍ୟବସ୍ଥା ପାଇଁ ବାଲ୍ୟବିବାହ ଲୋକଙ୍କ ଆର୍ଥିକ ଦୁରବସ୍ଥା, ଚାକିରି ଓ ପାଠ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାର ଆବହାଓ୍ୱା ପ୍ରଭୃତି ଥିଲା ।

ଡାକ୍ତର ବିକ୍ରମ ଦାସଙ୍କ ଜୀବନ ଅନେକ ଅଙ୍କାବଙ୍କା ରାସ୍ତା ଦେଇ ଆଗକୁ ବଢ଼ିଛି । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ଶିକ୍ଷାକୁ ଛାଡ଼ିଛନ୍ତି । ପରେ ପୁଣି ଶିକ୍ଷା ଆରମ୍ଭ ହୋଇଛି । ଗାନ୍ଧୀ ଓ ସୁଭାଷଙ୍କ ଆହ୍ୱାନ, ତାଙ୍କୁ ଜାତୀୟ ସ୍ରୋତରେ ସାମିଲ କରିଛି । ସେ ମାତୃଭୂମି ପ୍ରତି କର୍ତ୍ତବ୍ୟକୁ ଅଗ୍ରାଧିକାର ଦେଇଥିଲେ । ତତ୍କାଳୀନ ଶିକ୍ଷା ବ୍ୟବସ୍ଥାର ସୁନ୍ଦର ଚିତ୍ର ବି ଏଥିରେ ମିଳିଥାଏ । ଅବଧାନଙ୍କ ଶିକ୍ଷାପଦ୍ଧତି, ବନବିଦ୍ୟାଳୟ ଶିକ୍ଷା ଓ ସରକାରୀ ସ୍କୁଲରେ ଶିକ୍ଷା କିପରି ଥିଲା, ତାହା ଏଥିରେ ଅଙ୍କିତ ହୋଇଛି । କେବଳ ଏତିକି ନୁହେଁ ବଙ୍ଗବାସୀ କଲେଜ ସମ୍ପର୍କରେ ସର୍ବଶେଷ ବର୍ଣ୍ଣନା ମଧ୍ୟ ଏଥିରୁ ମିଳିଛି । ତେବେ ଛାତ୍ରଜୀବନରେ ଯେଉଁ ଅଭାବକୁ ସେ ସାମ୍ନା କରିଥିଲେ, ତାହାକୁ ନିଷ୍କପଟ ଭାବେ ଉପସ୍ଥାପନ କରିଛନ୍ତି ।

'ମେଡ଼ିକାଲ କଲେଜରେ ନାମଲେଖା', 'ମେଡ଼ିକାଲ କଲେଜ ବାତାବରଣ', 'ସ୍ୱାଧୀନତାର ଝଲକ ଓ ମେଡ଼ିକାଲ ଟ୍ରେନିଂ', 'ମେଡ଼ିକାଲ ଶିକ୍ଷାର ଶେଷ ପର୍ଯ୍ୟାୟ' ଆଦି ଶୀର୍ଷକରେ ଜଣେ ଡାକ୍ତରୀଛାତ୍ର ଭାବେ ସେ ଯେପରି ସ୍ଥିତିକୁ ସାମ୍ନା କରିଥିଲେ ଓ ସେ ସମୟର ମେଡ଼ିକାଲର ସ୍ୱରୂପ ଉଲ୍ଲେଖ ରହିଛି । ଉଚ୍ଚଶିକ୍ଷା ପାଇଁ ଆମେରିକା ଯିବାକୁ ପଡ଼ିଥିଲା ଲେଖକଙ୍କୁ । ସେଠାରେ ସେ ଆହରଣ କରିଥିବା ଅନୁଭୂତି ବେଶ୍ ଚମତ୍କାର ଢଙ୍ଗରେ ସ୍ଥାନିତ ହୋଇଛି ଏହି ପୁସ୍ତକରେ । 'ଆମେରିକାର ତତ୍କାଳୀନ ଲୋକଚରିତ୍ର', 'ସ୍ନାତକୋତ୍ତର ଡିଗ୍ରୀ ଓ ଘର ଲେଉଟାଣି' ଶୀର୍ଷକ ଲେଖା ଏହାହିଁ ପ୍ରମାଣ କରିଛି ।''.... ଅଳ୍ପ କେତେ ଶହ ବର୍ଷ ତଳେ ବିଦେଶ ବିଶେଷତଃ ୟୁରୋପର ବିଭିନ୍ନ ଅଞ୍ଚଳରୁ ଆସି ସେଠାରେ ମିଶାମିଶି ଜାତି ସୃଷ୍ଟି କରି ବସବାସ କରିଥିବାରୁ ସେମାନଙ୍କ ଧମନିରେ କେଉଁ ପୁରାତନ ଦେଶବାସୀଙ୍କ ରକ୍ତ ପ୍ରବାହିତ ହୁଏ, ତାହା ସେମାନେ ଜାଣନ୍ତି ନାହିଁ ।'' (ଆମେରିକାର ତତ୍କାଳୀନ ଲୋକଚରିତ୍ର - ପୃଷ୍ଠା - ୨୮୮)

'ଭେଷଜ ତାଲିମ ଓ ରନ୍ତଲେଇ' ଶୀର୍ଷକ ଅଧ୍ୟାୟଟିରେ ରନ୍ତଲେଇ ବିଭୀଷିକାର ଯେଉଁ ଆତ୍ମାନୁଭୂତିମୂଳକ ଆଲୋଚ୍ୟଟି ଦେଇଛନ୍ତି, ତାହା ସେ ସମୟର ଚର୍ଚ୍ଚିତ ଘଟଣା ଓ ସମାଜରେ କିପରି ଘୋର କୁ-ସଂସ୍କାରର ପ୍ରଭାବ ଥିଲା, ତାହା ସୁସ୍ପଷ୍ଟ ହୋଇଛି । ''ମେଡ଼ିକାଲ କଲେଜ ପରିସରଟା ତମ୍ବୁରେ ଭର୍ତ୍ତି ହୋଇ ଏକ ସୈନ୍ୟଛାଉଣୀ ପରି ଦେଖାଯାଉଥିଲା । ଶୃଙ୍ଖଳାରକ୍ଷା ପାଇଁ ଏକ ଅସ୍ଥାୟୀ ପୋଲିସ ଥାନା ଖୋଲିଥିଲା । ଓ୍ୱାରଲେସ୍ ସାହାଯ୍ୟରେ ଅନୁଗୁଳ ଆଡୁ ଭୟାବହ ଖବର ସବୁ ଆସି ପହଞ୍ଚୁଥିଲା । ଅନୁଗୁଳଠାରୁ କଟକ ପର୍ଯ୍ୟନ୍ତ ରାସ୍ତାର ସ୍ଥାନେ ସ୍ଥାନେ ରୋଗୀଙ୍କ ଶବସବୁ ପଡ଼ିରହି ଦୁର୍ଗନ୍ଧମୟ ପରିବେଶ ସୃଷ୍ଟି କରୁଥିଲା । (ପୃଷ୍ଠା - ୨୩୫)

କ୍ଷମତା ରାଜନୀତିଠାରୁ ଦୂରେଇ ରହି ଜନସେବାରେ ବ୍ରତୀ ଥିଲେ ଡାକ୍ତର ଦାସ । 'ଜନ୍ମ ନିରୋଧ ବିଭ୍ରାଟ', 'ଚିକିତ୍ସକ ଓ ରୋଗୀଙ୍କ ପୁଣ୍ୟ ସମ୍ପର୍କ' ଆଦିରେ ଡାକ୍ତରୀ ଜୀବନର କଥା ପ୍ରକାଶ ପାଇଛି । କ୍ଷମତା ରାଜନୀତିରୁ ଦୂରରେ ରହିଥିଲେ ମଧ୍ୟ ଏ ସମ୍ପର୍କରେ ସ୍ରଷ୍ଟା ଥିଲେ ସମ୍ପୂର୍ଣ୍ଣ ସଚେତନ । ପୁସ୍ତକରେ ମଧ୍ୟ ରହିଛି ନିଜ ସାହିତ୍ୟ ସାଧନା ସମ୍ପର୍କରେ ସୂଚନା । 'କାଳ ରୀତି ଓ ଗତିରେ', 'ସବାରି ଓ ବଳଦଗାଡ଼ିର ସ୍ମୃତି', 'ସେକାଳର ସାଇକେଲ ଓ ମୋଟର ଚଢ଼ା', 'ଘୋଡ଼ା ଓ ଘୋଡ଼ାଗାଡ଼ି'ରେ ଲେଖକଙ୍କ ତୁଳନାତ୍ମକ ବିଚାର ବେଶ୍ ପ୍ରଭାବଶାଳୀ ।

ଅନୁଭୂତି ଓ ଅନ୍ୱେଷଣକୁ ଆଧାର କରି ସ୍ରଷ୍ଟାଙ୍କ ସାରସ୍ୱତ ଜୟଯାତ୍ରା । ସାହିତ୍ୟ ପ୍ରତି ଗଭୀର ଅନୁରାଗ ହିଁ ଏହି ଜୟଯାତ୍ରାକୁ ଦେଇଛି ସଫଳତାର ସ୍ୱର୍ଣ୍ଣିମ ସ୍ପର୍ଶ ।



ସାଧାରଣ ସମ୍ପାଦକ
ଉତ୍କଳ ସାହିତ୍ୟ ସମାଜ, କଟକ

# ଓଡ଼ିଆ ଚଳଚ୍ଚିତ୍ର : ଶ୍ରୀଜଗନ୍ନାଥ

ଡକ୍ଟର ମନସା ଶ୍ରୀଚନ୍ଦନ

ଅତି ଆପଣାର ସାରା ଜଗତ୍‌ର ଅଲିଅଳ ଗେହ୍ଲାଠାକୁର ପ୍ରଭୁ ଶ୍ରୀଜଗନ୍ନାଥ । ତା'ପାଇଁ ଯେତେ ସବୁ ବିଶେଷଣ ତା'ର ପରିବ୍ୟାପ୍ତି ବିରାଟତା ଆଗରେ ଛୋଟ ଲାଗେ । ଯେତେ ସବୁ ଭଲ ଭଲ ଶବ୍ଦକୁ ସାଉଁଟି ତା' ପାଖରେ ଲଗେଇଦିଏ, ତା' ନାମ ପାଖରେ ଶବ୍ଦମାନେ କାହିଁକି କେଜାଣି ଫିକା ଫିକା ଦିଶନ୍ତି । ସେ କେଉଁଠି ନାହିଁ ଯେ, କେଉଁଠି ଥିବା କଥା କହିବି । ସେ କ'ଣ ଶୁଣୁ ନାହିଁ ଯେ ତାକୁ ଆଉ କ'ଣ ଶୁଣିବାକୁ କହିବି । ସେ କ'ଣ କରୁ ନାହିଁ ଯେ, ତାକୁ ଆଉ କରିବାକୁ କହିବି । ଆମ ଜୀବନତ ତା'ରି ଇଚ୍ଛା ଅନିଚ୍ଛାର ରଜ୍ଜୁରେ ବନ୍ଧା । ଯୁଗ ଯୁଗକୁ ତ ସେ ଏମିତି ବି ରହସ୍ୟମୟ । ଆକାର ଥାଇ ବି ସେ ନିରାକାର, ରୂପ ଥାଇ ବି ସେ ଅରୂପ । ଅଧାଗଢ଼ା ଠାକୁର ସେ, ଖଣ୍ଡିଆ ହାତରେ ତା'ର ଇଚ୍ଛା ଥିଲେ ବି ସେବା କେମିତି ଦେବ । କୋଉ କାନ ଅଛି ଯେ ଆମ କଥା ଶୁଣିପାରିବ । କିଛି ନ କଲା ନାହିଁ, କୋଉ ଗୋଡ଼ ଅଛି ଯେ ବିପଦରେ ପଡ଼ି ଡାକିଦେଲେ ସେ ପାଖକୁ ଚାଲିଆସିବ । ହଁ ଏମିତି ନାହିଁ ନାହିଁର ଠାକୁର ଭିତରେ ଗୋଟିଏ କଥା ଅଛି ଆଖି ପତା ନ ଥିବା ଯୋଡ଼ିଏ ବଡ଼ ବଡ଼ ଡୋଳା । ପତା ନ ଥିବାରୁ ତା'ର ପଲକ କେବେ ପଡ଼େ ନାହିଁ । କାଳେ ମୁହୂର୍ତ୍ତକ ପାଇଁ ପଲକ ପଡ଼ିଗଲେ ସେ ଏ ସାରା ସଂସାର ଗୋଟିଏ ମୁହୂର୍ତ୍ତରେ କରୁଥିବା କର୍ମ ଅକର୍ମକୁ ଦେଖିପାରିବେ ନାହିଁ । ତେଣୁ ପତାବିହୀନ ଦୁଇଟି ଡୋଳାରେ ସେ କେବଳ ଦେଖନ୍ତି ସାରା ସଂସାରରେ ଘଟୁଥିବା ପ୍ରତ୍ୟେକ ଘଟଣାକୁ ଆଉ ଆମ କର୍ମ ଅନୁସାରେ ସେ ଲେଖନ୍ତି ଆମରି ଭାଗ୍ୟ । ଭାଗ୍ୟ ଅନୁସାରେ ଆମେ ଭୋଗୁ ତା'ରି ଫଳ । କେତେ ବଡ଼ ସତ୍ୟ ସିଏ । କେତେ ବଡ଼ ଭାବ ତା' ପାଖରେ ଠୁଳ ସେଇଥି ପାଇଁ ସେ ଭାବର ଠାକୁର ।

ସେହି ଭାବର ଠାକୁରଠାରୁ ଆରମ୍ଭ ସବୁର ଆଉ ଶେଷ ବି । ତାଙ୍କରି ଇସାରାରେ ଚାଲେ ଏଠି ସବୁକିଛି । ଆମ ଜାତି, ଆମ ସଂସ୍କୃତି, ଆମ ସାହିତ୍ୟ, ଆମ ଚଳଣି, ରୀତି ନୀତିର ସେହି ହେଉଛନ୍ତି ମୂଳାଧାର, ପରିଚାଳକ ଓ ନିୟନ୍ତ୍ରକ । ସାହିତ୍ୟର ପ୍ରତି ପୃଷ୍ଠା ତାଙ୍କ ମାହାତ୍ମ୍ୟରେ ବିଜଡ଼ିତ । ଦୃଶ୍ୟ ସାହିତ୍ୟ ଓ ପାଠ୍ୟ ସାହିତ୍ୟ ଉଭୟରେ ତାଙ୍କ ଲୀଳାଖେଳା ଅନୁରଣିତ । ସେହି ଦୃଶ୍ୟ ସାହିତ୍ୟ ମଧ୍ୟରୁ ଅନ୍ୟତମ ଚଳଚ୍ଚିତ୍ର । ସେହି ଚଳଚ୍ଚିତ୍ରର ପ୍ରତ୍ୟକ୍ଷ ଓ ପରୋକ୍ଷରେ ମହାନାୟକ ପ୍ରଭୁ ଶ୍ରୀଜଗନ୍ନାଥ । ଆମ ସଭ୍ୟତା, ଆମ ସଂସ୍କୃତିର ଦ୍ରୁତ ପରିବାହକ ରୂପେ ଚଳଚ୍ଚିତ୍ର ପରିଗଣିତ । ଅବାରିତ ସମୟର ପ୍ରବାହରେ ସୃଷ୍ଟିର ଆଦିମ କାଳରୁ ଧରାବକ୍ଷରେ କେତେ ହସକାନ୍ଦ, କେତେ ଉଦ୍‌ବେଗ-ଉଚ୍ଛ୍ୱାସ, କେତେ ଆଶା-ଆକାଂକ୍ଷା ସୃଷ୍ଟି ହୋଇ ବିଲୀନ ହୋଇଯାଉଛି ତା'ର ଇୟତ୍ତା ନାହିଁ । ଦିନେ ଏ ମଣିଷ ତାକୁ ଧରି ରଖିବାକୁ କ୍ଷୀଣତମ ପ୍ରୟାସ କରି ନ ଥିଲା । ଆଜି କିନ୍ତୁ ମନୁଷ୍ୟର ଚିନ୍ତା ଓ କଳ୍ପନା ଫଳବତୀ ହୋଇଛି । ଧରାବକ୍ଷରେ ତରଙ୍ଗ ତୋଳି ଯେଉଁ ମନୋମୁଗ୍ଧକର ସ୍ୱର ନିମିଷେକ ମଧ୍ୟରେ କୁଆଡ଼େ ବିଲୀନ ହୋଇଯାଏ, ସଂସାର ଅନେକ ଲୋଭନୀୟ ଦୃଶ୍ୟ କ୍ଷଣକେ ଫୁଟି ପୁଣି କ୍ଷଣକରେ ଅଦୃଶ୍ୟ ହୋଇଯାଏ । ତାକୁ ଚଳଚ୍ଚିତ୍ର ମାଧ୍ୟମରେ ସାଇତି ରଖିବା ଆଜି ତା' ପକ୍ଷେ ସମ୍ଭବ ହୋଇଛି । ଚଳଚ୍ଚିତ୍ର ସାହିତ୍ୟର ଅନ୍ୟ ଏକ ବିଭାଗ ହେତୁ ସମସାମୟିକ ସମାଜର ରୀତିନୀତି, ପରମ୍ପରା, ସଂସ୍କୃତି ଆଜିର ଚଳମାନଚିତ୍ରକୁ ଉପଜୀବ୍ୟ କରେ । ସେଇଥିପାଇଁ ଉତ୍କଳ ସମାଜର ଆରାଧ୍ୟଦେବତା ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସଂସ୍କୃତି ଓତପ୍ରୋତ ଉତ୍କଳର ଜନଜୀବନ ସହିତ ଜଡ଼ିତ । ସେହି ଜଗନ୍ନାଥଙ୍କର ବହୁମୁଖୀ ଚେତନା ଚଳଚ୍ଚିତ୍ରରେ ସ୍ଥାନ ପାଇବା ଏକ ସ୍ୱାଭାବିକ କଥା ।

ଓଡ଼ିଶାରେ ଏପରି ଚଳଚ୍ଚିତ୍ର ନାହିଁ ଯେଉଁ ଚଳଚ୍ଚିତ୍ରରେ ଜଗନ୍ନାଥଙ୍କୁ ପ୍ରାରମ୍ଭରେ ଦେଖାଯାଏ ନାହିଁ । ଓଡ଼ିଶାରେ ଜଗନ୍ନାଥଙ୍କର ଲୀଳାଖେଳାକୁ ନେଇ ଅନେକ ପୌରାଣିକ ଚଳଚ୍ଚିତ୍ର ନିର୍ମିତ ହୋଇଛି ଏବଂ ଆହୁରି ଅନେକ ବ୍ୟବସାୟଭିତ୍ତିକ ସାମାଜିକ

ଚଳଚ୍ଚିତ୍ରରେ ପ୍ରଭୁ ଜଗନ୍ନାଥଙ୍କର କରୁଣା, ଦୟାଭାବ ଏବଂ ଭକ୍ତର ଭକ୍ତିଭାବ ପ୍ରଦର୍ଶିତ ହୋଇଛି । ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥ ଚେତନା ସମ୍ବଳିତ ଅନେକ ଦୃଶ୍ୟକୁ ଚଳଚ୍ଚିତ୍ରକାର ବା ଲେଖକ ପ୍ରକାଶ କରିଥାନ୍ତି । ଅନେକ ଚଳଚ୍ଚିତ୍ରରେ ପ୍ରତ୍ୟକ୍ଷ ଭାବରେ ପ୍ରଭୁ ଜଗନ୍ନାଥଙ୍କର କରୁଣାକୁ ପାଇବାର ଦୃଶ୍ୟ ସହ ପରୋକ୍ଷ ଭାବରେ ଭକ୍ତ ପାଉଥିବା କରୁଣାର ଦୃଶ୍ୟକୁ ମଧ୍ୟ ଚିତ୍ରାୟିତ କରିଥାଏ । କେତେକ ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥଙ୍କ ନାମରେ ଭଜନ, ଜଣାଣର ଦୃଶ୍ୟ ପ୍ରଭୁଙ୍କ ମାହାତ୍ମ୍ୟ ପରିପ୍ରକାଶ ହୁଏ । ପୁରୁଣାରୁ ନୂଆ ପର୍ଯ୍ୟନ୍ତ ସମସ୍ତ ଚଳଚ୍ଚିତ୍ରରେ ପ୍ରଭୁଙ୍କ ମାହାତ୍ମ୍ୟ ପ୍ରକାଶଲାଭ କରିଛି ।

ଓଡ଼ିଆ ଚଳଚ୍ଚିତ୍ରର ଦୀର୍ଘଯାତ୍ରା ଆରମ୍ଭ ହୁଏ ୧୯୩୪ ମସିହାରେ । ଶ୍ରୀକ୍ଷେତ୍ରରେ ଓଡ଼ିଆ ଭାଷାରେ ଚଳଚ୍ଚିତ୍ର ନିର୍ମାଣର ପ୍ରଥମ ପଥ ପ୍ରଦର୍ଶକ ହେଲେ ଦିବଂଗତ ପ୍ରଭୁପାଦ ମୋହନ ସୁନ୍ଦର ଦେବଗୋସ୍ୱାମୀ । ତାଙ୍କ ପ୍ରପିତାମହ ନଦିଆ ଜିଲ୍ଲାର କୃଷ୍ଣନଗରର ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମିତ୍ତ ପୁରୀରେ ରହିବା ସମରେ ଧର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥ ସଂସ୍କୃତିରେ ବିମୋହିତ ହୋଇ ପଡ଼ିଥିଲେ । ଶ୍ରୀକ୍ଷେତ୍ରରେ ସ୍ଥାୟୀ ହୋଇ ରହିବା ପାଇଁ ମନ ବଳାଇବା ପରେ ତାଙ୍କ ପରିବାରକୁ ସେବା ମଧ୍ୟ ମିଳିଥିଲା । ଏହି ପରମ୍ପରାପ୍ରେମୀ ପରିବାରରେ ଜନ୍ମ ମୋହନ ସୁନ୍ଦର ଦେବଗୋସ୍ୱାମୀ ଭଜନ, ଜଣାଣ ପ୍ରତି ଆକୃଷ୍ଟ ହୋଇଥିଲେ । ନାଟକଠାରୁ ଆରମ୍ଭ କରି ପ୍ରତ୍ୟେକ ଗାନ୍ଧର୍ବ ବିଦ୍ୟାରେ ସେ ପାରଦର୍ଶିତା ଅର୍ଜନ କରିଥିଲେ । ସେହି ସମୟରେ ଅନ୍ୟ ଆଞ୍ଚଳିକ ଭାଷାରେ ଚଳଚ୍ଚିତ୍ର ନିର୍ମାଣକୁ ଦେଖି ମୋହନ ସୁନ୍ଦର ଦେବଗୋସ୍ୱାମୀ ଚଳଚ୍ଚିତ୍ର ନିର୍ମାଣ ପ୍ରତି ଆଗ୍ରହ ପ୍ରକାଶ କରି ୧୯୩୪ ମସିହାରେ 'ସୀତାବିବାହ' ନାମକ ଚଳଚ୍ଚିତ୍ର ନିର୍ମାଣ ଆରମ୍ଭ କରିଥିଲେ । ୧୯୩୬ ମସିହା ଏପ୍ରିଲ ୨୮ ତାରିଖରେ ପୁରୀର ଲକ୍ଷ୍ମୀ ଟକିଜ୍‌ରେ ଏହି ଚଳଚ୍ଚିତ୍ର ମୁକ୍ତିଲାଭ କରିଥିଲା । 'ରାମାୟଣ'ର କଥାବସ୍ତୁକୁ ନେଇ ଏହି ଚଳଚ୍ଚିତ୍ରର ବିଷୟବସ୍ତୁ ଗ୍ରହଣ କରାଯାଇଥିଲେ ମଧ୍ୟ ଶ୍ରୀରାମଚନ୍ଦ୍ରଙ୍କ ପାଖରେ କାହାଣୀକାର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅବତାରକୁ ଅନେକ ସ୍ଥାନରେ ଦର୍ଶକର ଅନୁଭବରେ ଆଣିଛନ୍ତି । ତେବେ ମୋହନ ସୁନ୍ଦର ଦେବ ଗୋସ୍ୱାମୀ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିବାବେଳେ ଶ୍ରୀରାମଚନ୍ଦ୍ରଙ୍କର କାହାଣୀକୁ ନେଇ କାହିଁକି ଚଳଚ୍ଚିତ୍ର ନିର୍ମାଣ କଲେ । ପ୍ରଶ୍ନର ଉତ୍ତରରେ କୁହାଯାଇପାରେ ଯେ, ପ୍ରଭୁ ଜଗନ୍ନାଥ ହେଉଛନ୍ତି ଅବତାରୀ ପ୍ରଭୁ ରାମଚନ୍ଦ୍ର ହେଉଛନ୍ତି ତାଙ୍କର ଅବତାର । ଅବତାର ସମୟର ଲୀଳାଖେଳା ଶୁଣିବା ପାଇଁ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଭଲ ଲାଗେ । ତେଣୁ ପ୍ରାଚୀନ କାଳରେ ରଥଯାତ୍ରାବେଳେ ସିଂହଦ୍ୱାର ସମ୍ମୁଖ ଏମାରମଠ ଚକଡ଼ା ଉପରେ ନାଟକଗୁଡ଼ିକ ପରିବେଷିତ ହେଉଥିଲା ତାହା ରାମାୟଣର କଥାବସ୍ତୁ ଉପରେ ଆଧାରିତ ଥିବା କଥା ଜଣାଯାଏ । ତେଣୁ ଚଳଚ୍ଚିତ୍ରକାର ତାଙ୍କ ଚଳଚ୍ଚିତ୍ରର ପ୍ରଥମ ଅର୍ଘ୍ୟ ସେ ରାମାୟଣର କଥାବସ୍ତୁକୁ ନେଇ ଚଳଚ୍ଚିତ୍ର ନିର୍ମାଣ କରାଇ ପ୍ରଭୁଙ୍କର ଚେତନାକୁ ପରୋକ୍ଷ ଭାବରେ ପ୍ରଦର୍ଶିତ କରାଇଛନ୍ତି । ଓଡ଼ିଆ ଚଳଚ୍ଚିତ୍ର ମଧ୍ୟରୁ ଯେତେଗୁଡ଼ିଏ ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥଙ୍କୁ ପ୍ରତ୍ୟକ୍ଷ ଚରିତ୍ର ରୂପେ ଚଳଚ୍ଚିତ୍ରଗୁଡ଼ିକ ନିର୍ମାଣ ହୋଇଛି, ସେଥିରୁ ପ୍ରଭୁ ଶ୍ରୀଜଗନ୍ନାଥ ପ୍ରମୁଖ ପ୍ରାଣମୟ ଉପାଦାନ ଏଥିରେ ସନ୍ଦେହ ନାହିଁ । ଚଳଚ୍ଚିତ୍ରର କଠିନ ଭିତ୍ତିଭୂମି ତଳେ ଶ୍ରୀଜଗନ୍ନାଥ ଚେତନାର ସୂକ୍ଷ୍ମ ଭାବ ତରଙ୍ଗିତ ହୋଇଛି । ଏହି ସବୁ ଚଳଚ୍ଚିତ୍ରର ପରମ ଆମୃଷ୍ଟ ଦାରୁଦେବତା ପ୍ରଭୁ ଶ୍ରୀଜଗନ୍ନାଥ । ପ୍ରତ୍ୟେକ ଚଳଚ୍ଚିତ୍ରରେ ତାଙ୍କୁ ଯିଏ ଯେଉଁ ରୂପରେ ଚିତ୍ରିତ କରିଥିଲେ ମଧ୍ୟ ଆଧ୍ୟାତ୍ମିକ ବିଶ୍ୱାସର ସେ ହେଉଛନ୍ତି କେନ୍ଦ୍ରବିନ୍ଦୁ ।

ପ୍ରଥମ ଚଳଚ୍ଚିତ୍ର 'ସୀତାବିବାହ'ର ୧୫ ବର୍ଷ ପରେ ୧୯୪୯ ମସିହାରେ ଢେଙ୍କାନାଳର ରାଜା ମହେନ୍ଦ୍ର ବାହାଦୁରଙ୍କ ପଞ୍ଚମ ପୁତ୍ର ଗୌରାଙ୍ଗ ପ୍ରତାପ ସିଂହଦେଓଙ୍କ ଉଦ୍ୟମରେ ଗ୍ରେଟ୍ ଇଷ୍ଟର୍ଣ୍ଣ ମୁଭିଟେନ୍ ନାମକ ଏକ ପ୍ରାଇଭେଟ୍ ଲିମିଟେଡ୍ କମ୍ପାନୀର ବ୍ୟାନରରେ ଶ୍ରୀଜଗନ୍ନାଥଙ୍କର କାହାଣୀକୁ ଅବଲମ୍ବନ କରି 'ଲଳିତା' ନାମକ ଚଳଚ୍ଚିତ୍ର ମୁକ୍ତିଲାଭ କରିଥିଲା । କଲ୍ୟାଣଗୁପ୍ତଙ୍କ ନିର୍ଦ୍ଦେଶନାରେ ଶ୍ରେଷ୍ଠାଂଶରେ ଥିଲେ ଲୋକନାଥ ମିଶ୍ର, ଉମା ଗୋଏଙ୍କା, ପଙ୍କଜ ନନ୍ଦ, ବୀଣାଦେବୀ ପ୍ରମୁଖ ଅଭିନେତା ଅଭିନେତ୍ରୀ । 'ଲଳିତା' ଚଳଚ୍ଚିତ୍ରର ବିଷୟବସ୍ତୁ ନୀଳମାଧବଙ୍କ କିମ୍ବଦନ୍ତୀ ଏବଂ ଇନ୍ଦ୍ରଦ୍ୟୁମ୍ନଙ୍କ ଆଖ୍ୟାୟିକା ଉପରେ ଆଧାରିତ । ଲଳିତା, ବିଶ୍ୱାବସୁ, ବିଦ୍ୟାପତି ମଧ୍ୟରେ ଯୋଗସୂତ୍ର ସ୍ଥାପନ କରାଯାଇ ବିଦ୍ୟାପତିଙ୍କୁ ନୀଳମାଧବ ଦର୍ଶନରେ ଲଳିତାର ଭୂମିକାକୁ ଗୁରୁତ୍ୱପୂର୍ଣ୍ଣ କରାଯାଇଛି । ଚଳଚ୍ଚିତ୍ରର ଅନ୍ୟ ପ୍ରସଙ୍ଗରେ ଇନ୍ଦ୍ରଦ୍ୟୁମ୍ନଙ୍କର ମୂର୍ତ୍ତି ଅନ୍ୱେଷଣ ଦାରୁମୂର୍ତ୍ତି ପୂଜନ ଆଦି ଆଖ୍ୟାନ ଦେଖିବାକୁ ମିଳେ । ଏଥିରେ ଶ୍ରୀଜଗନ୍ନାଥ ପ୍ରତ୍ୟକ୍ଷ ଚରିତ୍ର ଭାବରେ ଚିତ୍ରିତ ହେବା ଦେଖିବାକୁ ମିଳେ ।

୧୯୫୦ ମସିହା ଫେବୃୟାରୀ ୨ ତାରିଖରେ ଜଗନ୍ନାଥ ଚେତନା ସମ୍ବଳିତ ଦ୍ୱିତୀୟ ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀଜଗନ୍ନାଥ' ରୂପଭାରତୀ ପ୍ରାଇଭେଟ୍ ଲିମିଟେଡ୍ ବ୍ୟାନରରେ ନିର୍ମିତ ତଥା ସୁରେନ୍ଦ୍ର କୁମାର ଦାସ ପ୍ରଯୋଜିତ ଓ ଚିତ୍ତରଞ୍ଜନ ମିତ୍ରଙ୍କର ନିର୍ଦ୍ଦେଶନାରେ ନିର୍ମିତ ହୋଇଥିଲା । ବିଭିନ୍ନ ଭୂମିକାରେ ଗୋପାଳ ଘୋଷ, ଲୋରିଆ ରାଉତ, ଖଗେନ୍ ମିତ୍ର, ରାମଚନ୍ଦ୍ର ମାଣିଆ, ସୀତାଦେବୀ, ସାମୁଏଲ୍ ସାହୁ ଅଭିନୟ କରିଥିଲେ । ଏହି ଚଳଚ୍ଚିତ୍ରର କଥାବସ୍ତୁ ସମ୍ପୂର୍ଣ୍ଣରୂପେ ଜଗନ୍ନାଥଭିତ୍ତିକ ପୌରାଣିକ କିମ୍ବଦନ୍ତୀ ଶ୍ରୀଜଗନ୍ନାଥ ସମ୍ବନ୍ଧୀୟ ତତ୍ତ୍ୱ ଉପରେ ଆଧାରିତ ।

ଏଥିରେ ଇନ୍ଦ୍ରଦ୍ୟୁମ୍ନ ଓ ରାଣୀ ଗୁଣ୍ଡିଚାଙ୍କର ବିଷ୍ଣୁଭକ୍ତି, ବିଦ୍ୟାପତିଙ୍କର ନୀଳମାଧବ ବିଷ୍ଣୁମୂର୍ତ୍ତି ସନ୍ଧାନ, ବିଦ୍ୟାପତି ଓ ଲଳିତାଙ୍କର ସହ ପ୍ରେମସମ୍ପର୍କ ସ୍ଥାପନ ଓ ବିବାହ, ବିଶ୍ୱାବସୁଙ୍କର ନୀଳମାଧବ ଦର୍ଶନ ପରେ ଲଳିତା ସାହାଯ୍ୟରେ ନୀଳମାଧବଙ୍କର ଆସ୍ଥାନ ଦର୍ଶନ ଏବଂ ମାଳବକୁ ଫେରି ସମସ୍ତ ତଥ୍ୟ ପ୍ରଦାନ କରିବା ପରେ ଶ୍ରୀକ୍ଷେତ୍ରରେ ଶ୍ରୀମନ୍ଦିର ନିର୍ମାଣ ଏବଂ ଶ୍ରୀଜଗନ୍ନାଥଙ୍କର ଚତୁର୍ଦ୍ଧା ମୂର୍ତ୍ତି ନିର୍ମାଣ, ପ୍ରତିଷ୍ଠା ଆଦି ଚଳଚ୍ଚିତ୍ରର ମୁଖ୍ୟ କଥାବସ୍ତୁ ଅଟେ । ଏହି ଚଳଚ୍ଚିତ୍ରରେ ଗୋପାଳ ଛୋଟରାୟ ନାଟକୀୟ ଶୈଳୀ ପରିବର୍ତ୍ତେ ଚଳଚ୍ଚିତ୍ର ଶୈଳୀ ବ୍ୟବହାର ଲୋକପ୍ରିୟତାର କାରଣ ବୋଲି କୁହାଯାଏ । ସର୍ବମୋଟ ପାଞ୍ଚୋଟି ଗୀତ ମଧ୍ୟରୁ 'ନୀଳସିନ୍ଧୁ ତୀରେ', 'ନୀଳ ଅଚଳ', 'ନୀଳ ବନରାଜେ ଘେରା ଦେଉଳ' ଶ୍ରୁତିମଧୁର ଗୀତ ମଧ୍ୟରେ ଶ୍ରୀଜଗନ୍ନାଥଙ୍କର ମାହାତ୍ମ୍ୟ ସହ ଶ୍ରୀକ୍ଷେତ୍ର, ମହୋଦଧିର ମାହାତ୍ମ୍ୟ ଦେଖିବାକୁ ମିଳେ । ଏହି ବ୍ୟୟବହୁଳ ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥଙ୍କ ବିଷୟବସ୍ତୁକୁ ଏତେ ସ୍ପଷ୍ଟ ଭାବରେ ଚିତ୍ରିତ କରାଯାଇଥିଲା ଯେ, ପ୍ରଯୋଜକ ମିଶ୍ର, ଭି.ଏସ୍. ରାକୁ ତେଲୁଗୁରେ ଭାଷାନ୍ତର (ଡବିଂ) କରାଇଥିଲେ ପରେ ବଙ୍ଗଳାରେ ମଧ୍ୟ ଡବିଂ ହୋଇଥିଲା । ଏହି ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥଙ୍କର କଥାବସ୍ତୁକୁ ଏପରି ଉପସ୍ଥାପନ କରାଯାଇଥିଲା, ତାହା କେବଳ ଓଡ଼ିଆ ଜାତିର ଆରାଧ୍ୟ ଦେବତା ଭାବରେ ପ୍ରତିଭାତ ହେଉ ନ ଥିଲେ ବରଂ ସାରା ବିଶ୍ୱର ଦେବତା ଭାବରେ ଗ୍ରହଣୀୟ ଥିଲେ ତାହାର ସୂଚନା ଏହି ଚଳଚ୍ଚିତ୍ରର ଭାଷାନ୍ତର ପ୍ରମାଣ ଦିଏ ।

୧୯୫୮ ମସିହାରେ ଗଂଜାମ ଜିଲ୍ଲାର ଆସ୍କାରେ ଉତ୍କଳ ଚଳଚ୍ଚିତ୍ର ବ୍ୟାନରରେ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମାଙ୍କ ପ୍ରଯୋଜନାରେ ଶ୍ରୀଜଗନ୍ନାଥ ଚେତନା ସମ୍ପର୍କିତ ତୃତୀୟ ଚଳଚ୍ଚିତ୍ର ବିଶ୍ୱନାଥ ନାୟକଙ୍କ ନିର୍ଦ୍ଦେଶନାରେ ନିର୍ମିତ ହୋଇଥିଲା । ଏଥିରେ ଶରତ ପୂଜାରୀ, ଶେଫାଳି, ଅନୁଭା, ଶ୍ରୀକାନ୍ତ ଆଦି କଳାକାରମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ପଞ୍ଚସଖାଯୁଗୀୟ କବି ବଳରାମ ଦାସଙ୍କ ରଚିତ 'ଲକ୍ଷ୍ମୀପୁରାଣ'ରେ ବର୍ଣ୍ଣିତ ଶ୍ରୀୟାଚଣ୍ଡାଳୁଣୀ ଉପାଖ୍ୟାନକୁ ନେଇ 'ମହାଲକ୍ଷ୍ମୀପୂଜା' ନିର୍ମିତ । ଏହି ଚଳଚ୍ଚିତ୍ରରେ ମୁଖ୍ୟ କଥାବସ୍ତୁ ସହ ବହୁ ଆଖ୍ୟାନ ଉପାଖ୍ୟାନକୁ ଦର୍ଶକଙ୍କ ଆକର୍ଷଣ ନିମନ୍ତେ ଯୋଡ଼ି ଦିଆଯାଇଛି । ଶ୍ରୀୟାଚଣ୍ଡାଳୁଣୀର ଲକ୍ଷ୍ମୀ ଜଗନ୍ନାଥଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରିବା, ମହାଲକ୍ଷ୍ମୀ ଜାତିଭେଦକୁ ନ ମାନି ପ୍ରତ୍ୟେକ ଘରକୁ ଯାଇ ପୂଜା ପାଇବା, ଶ୍ରୀୟାଚଣ୍ଡାଳୁଣୀଙ୍କର ନୈବେଦ୍ୟକୁ ଗ୍ରହଣ କରି ସ୍ୱାମୀ ଶ୍ରୀଜଗନ୍ନାଥ ଦେଢ଼ଶୁର ବଳଭଦ୍ରଙ୍କର ଚକ୍ଷୁଶୀଳ ହେବା, ବଳଭଦ୍ରଙ୍କର ନିର୍ଦ୍ଦେଶରେ ମହାଲକ୍ଷ୍ମୀଙ୍କୁ ମନ୍ଦିର ପ୍ରବେଶ ନିଷେଧ କରିବା ପରେ ସମୁଦ୍ରକୂଳସ୍ଥ ସମୁଦ୍ର କୂଳରେ ବିଶ୍ୱକର୍ମାଙ୍କ ଦ୍ୱାରା ପ୍ରାସାଦନିର୍ମାଣ କରିବା । ଲକ୍ଷ୍ମୀଙ୍କ ପ୍ରେରିତ ତାଳବେତାଳଙ୍କ ଦ୍ୱାରା ଶ୍ରୀମନ୍ଦିରକୁ ଶ୍ରୀହୀନ କରାଇବା । ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କୁ ଭିକ୍ଷାବୃତ୍ତି କରାଇବା ପରେ ଲକ୍ଷ୍ମୀଙ୍କ ପାଖରେ ନିଜ ଦୋଷ ସ୍ୱୀକାର କରି ଲକ୍ଷ୍ମୀଙ୍କର ପ୍ରତ୍ୟାବର୍ତ୍ତନ ଚାହିଁଥିଲେ । ଲକ୍ଷ୍ମୀଙ୍କର ସର୍ତ୍ତ ଥିଲା ଯେ ଛୁଆଁ ଅଛୁଆଁ ଭେଦଭାବ ଦୂର କରି ଆଚାଣ୍ଡାଳ ବ୍ରାହ୍ମଣ ହାତରୁ ହାତକୁ ମହାପ୍ରସାଦ ପାଇବେ । ଏହି ସର୍ତ୍ତରେ ଶ୍ରୀଜଗନ୍ନାଥ ଶ୍ରୀବଳଭଦ୍ର ରାଜି ହେବା ପରେ ମହାଲକ୍ଷ୍ମୀ ଶ୍ରୀମନ୍ଦିରକୁ ଆସିଥିଲେ । ଏହି ଚଳଚ୍ଚିତ୍ରରେ କାର୍ଲମାର୍କସଙ୍କର ପ୍ରଗତିବାଦୀ ଚେତନା ବା ସାମ୍ୟବାଦୀ ଚେତନାର ସ୍ୱର ଶ୍ରୀଜଗନ୍ନାଥଙ୍କର ଚେତନା ଅନ୍ତର୍ଗତ ସାମ୍ୟବାଦୀ ଚେତନା ମାଧ୍ୟମରେ ପ୍ରକଟିତ ହୋଇଛି ।

୧୯୬୨ ମସିହାରେ କେ.ଜି. ପ୍ରଡ଼କ୍ସନ୍ ବ୍ୟାନରରେ ନିର୍ମିତ ଏହି ଚଳଚ୍ଚିତ୍ରରେ କାହାଣୀ ଓ ସଂଳାପ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ପ୍ରଦାନ କରିବାବେଳେ ଚିତ୍ରନାଟ୍ୟ ନିର୍ଦ୍ଦେଶନା ଦେଇଥିଲେ କଲ୍ୟାଣ ଗୁପ୍ତା, ଗୀତ ରଚନା କରିଥିଲେ ମାୟାଧର ମାନସିଂହ, ଗୋଦାବରୀଶ ମହାପାତ୍ର, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଇତ୍ୟାଦିଙ୍କର ସଂଗୀତବହୁଳ ଚଳଚ୍ଚିତ୍ରରେ ଅଭିନୟ କରିଥିଲେ ବ୍ୟୋମକେଶ, ଶ୍ରୀକାନ୍ତ, ଭୋଳେଶ୍ୱର, ନରେନ୍ଦ୍ର, ଶେଫାଳୀ, ନିହାର ପ୍ରଭୃତି କଳାକାରମାନେ । ଏହାର କଥାବସ୍ତୁରେ ଗୀତଗୋବିନ୍ଦ ରଚୟିତା ଜୟଦେବ ନୃତ୍ୟଶିଳ୍ପୀ ଦେବଶର୍ମାଙ୍କ କନ୍ୟା ପଦ୍ମାବତୀଙ୍କର ପ୍ରେମ ସହ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ସେମାନଙ୍କର ଭକ୍ତିର କାହାଣୀ ଓ ଜୟଦେବଙ୍କ ଭକ୍ତିଗୀତ ରଚନା

ଉପରେ ଆଧାରିତ ଅଟେ । ପ୍ରଭୁ ଶ୍ରୀଜଗନ୍ନାଥ ଭକ୍ତର ଭାବରେ ବନ୍ଧା, କ୍ଷମତା, ଐଶ୍ୱର୍ଯ୍ୟ ବଳରେ କେହି କାହାକୁ ବଶୀଭୂତ କରିପାରିବ ନାହିଁ । ବଡ଼ପଣ୍ଡା ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଦେଶ ପାଳକ ଭାବରେ ଜୟଦେବଙ୍କୁ କନ୍ୟାଦାନ କ୍ଷେତ୍ରରେ ସହାୟକ ହୋଇଛନ୍ତି । ରହସ୍ୟମୟ ପ୍ରଭୁ ଶ୍ରୀଜଗନ୍ନାଥ ଛଦ୍ମବେଶରେ ଆସି ପଦ୍ମାବତୀଙ୍କଠାରୁ ଗୀତଗୋବିନ୍ଦ ପୋଥି ନେଇ ଜୟଦେବ ଅପୂର୍ଣ୍ଣ ପଦକୁ ପୂରଣ କରି 'ଦେହୀ ପଦ ପଲ୍ଲବ ମୁଦାରମ୍' ବୋଲି ଲେଖି ଦେଇଥିଲେ । ଥରେ ଜୟଦେବ ଚନ୍ଦନ ଅର୍ଗଳୀ ପାଖରେ ଠିଆ ହୋଇ ଗୀତଗୋବିନ୍ଦ ଗାନ କରିବାରୁ ଶ୍ରୀଜଗନ୍ନାଥ ରତ୍ନ ସିଂହାସନ ଛାଡ଼ି ଚାଲିଆସିଛନ୍ତି । ଫଳସ୍ୱରୂପ ବଡ଼ପଣ୍ଡାଙ୍କ ଚକ୍ଷୁରେ ଶ୍ରୀଜଗନ୍ନାଥ ଦେଖା ଦେଇ ନାହାନ୍ତି । ତେଣୁ ଧୂପ ଉଠିବାରେ ବିଳମ୍ବ ହେବାରୁ ମହାରାଜା ବଡ଼ପଣ୍ଡାଙ୍କ ଉପରେ କ୍ରୋଧ ପ୍ରକାଶ କରିଛନ୍ତି; କିନ୍ତୁ ଶ୍ରୀଜଗନ୍ନାଥ ସ୍ୱପ୍ନରେ ମହାରାଜାଙ୍କ ଭ୍ରମ ଦୂର କରିଛନ୍ତି । କେବଳ ସେତିକି ନୁହେଁ, ଏକଦା ବାଇଗଣବାଲୀ ବୁଢ଼ୀର କଣ୍ଠରୁ ସୁଲିଳତ କଣ୍ଠରେ ଗୀତଗୋବିନ୍ଦର କେତେକ ଅଂଶକୁ ଶୁଣି ତା'ର ପଛେ ପଛେ ଆସିଥିବାରୁ ବାଇଗଣ ବାଡ଼ିରେ ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗ ପରିହିତ ବସ୍ତ୍ର ଚିରିଯାଇଛି ଏବଂ ଜଗନ୍ନାଥଙ୍କର ସ୍ୱପ୍ନାଦେଶ ପାଇ ରାଜା ବୁଢ଼ୀକୁ ସନନ୍ଦ ପ୍ରଦାନ କରିଛନ୍ତି । ଏହିପରି ଭାବରେ ଚଳଚ୍ଚିତ୍ରର ନିର୍ଦ୍ଦେଶକ ଶିବ ଭଟ୍ଟାଚାର୍ଯ୍ୟ କାହାଣୀର ନିର୍ଦ୍ଦେଶନା ଦେଇ ଶ୍ରୀଜଗନ୍ନାଥଙ୍କ ଚେତନାକୁ ପ୍ରଭୁଙ୍କର ପ୍ରତ୍ୟକ୍ଷ ଚରିତ୍ର ମାଧ୍ୟମରେ ଉପସ୍ଥାପନ କରିଛନ୍ତି ।

୧୯୭୭ ମସିହାରେ ପ୍ରିୟଦର୍ଶିନୀ ଫିଲ୍ମସ୍ ସଂସ୍ଥାର ବ୍ୟାନରରେ ନିର୍ମିତ ଧୀରେନ୍ ପଟ୍ଟନାୟକ ପ୍ରଯୋଜିତ ଅଭିନୟରେ ଥିଲେ ଗୋବିନ୍ଦ ତେଜ, ଧୀରବିଶ୍ୱାଳ, ଶାନ୍ତିସ୍ୱରୂପ ମିଶ୍ର, ବନଜା ମହାନ୍ତି, ବୀରେନ୍ ରାଉତରାୟ ଓ ଅନୀତା ଦାସ ପ୍ରମୁଖ ଅଭିନୟ କରିଥିଲେ । ଏହା ଶ୍ରୀଜଗନ୍ନାଥ ଚେତନା ସମ୍ପର୍କିତ ପଞ୍ଚମ ଚଳଚ୍ଚିତ୍ର ଥିଲା । କବି ରାମଦାସଙ୍କ ବିରଚିତ ଭକ୍ତି ରସାମୃତ କାବ୍ୟ 'ଦାର୍ଢ୍ୟତା ଭକ୍ତି'ରେ ସଂକଳିତ ପଚାଶଜଣ ଭକ୍ତଙ୍କ କାହାଣୀ ମଧ୍ୟରୁ ଏହା ଅନ୍ୟତମ । ଏଥିରେ ଶ୍ରୀଜଗନ୍ନାଥଙ୍କ ଉପରେ ବନ୍ଧୁ ମହାନ୍ତିଙ୍କର ଅଚଳା ଭକ୍ତି, ଭକ୍ତିରେ ପ୍ରଭୁଙ୍କୁ ଏକମାତ୍ର ସାହାଯ୍ୟକାରୀ ବନ୍ଧୁ ମନେକରିବା ଘଟଣାକ୍ରମରେ ଯାଜପୁର ଛାଡ଼ି ପୁରୀ ଆସିବା ଏବଂ ପ୍ରଭୁ ନିଜର ବନ୍ଧୁ ମହାନ୍ତିଙ୍କୁ ନିଜ ହସ୍ତରେ ରତ୍ନଥାଳିରେ ମହାପ୍ରସାଦ ଆଣି ଦେବା ପରଦିନ ଶ୍ରୀମନ୍ଦିରରେ ରତ୍ନଥାଳି ଖୋଜାପଡ଼ିବା ଏବଂ ବନ୍ଧୁ ମହାନ୍ତିଙ୍କଠାରୁ ତାହା ପାଇ ତାକୁ ଚୋର ବୋଲି ରାଜସଭାରେ ଉପସ୍ଥିତ କରାଇବା ପରେ ସେ ରାଜାଙ୍କ ଆଗରେ ଚମତ୍କାର ଉତ୍ତର ପ୍ରଦାନ କରିଅଛି ଯେ, ତାଙ୍କ ବନ୍ଧୁଙ୍କ ନାମ ଜଗବନ୍ଧୁ ଓ ଘର ଶ୍ରୀମନ୍ଦିର । ପୂର୍ବରାତ୍ରିରେ ଜଣେ ସେବକ ତାଙ୍କରି ନାମ ଧରି ସୁବର୍ଣ୍ଣ ଥାଳିରେ ଭୋଗ ଦେଇଥିଲେ ପରେ ସେବକଙ୍କୁ ଥାଳି ଫେରାଇବାକୁ ଗଲାବେଳେ ସେ ତାଙ୍କୁ ପାଇ ନ ଥିଲେ । ରାଜା ଏ ଉତ୍ତରରେ ଆଶ୍ଚର୍ଯ୍ୟ ହୋଇଛନ୍ତି ଚଳଚ୍ଚିତ୍ରର ପରବର୍ତ୍ତୀ ଦୃଶ୍ୟରେ ରାଜାଙ୍କର ଶୟନ କରିବାର ଦୃଶ୍ୟରେ ସେ ଦେଖିଛନ୍ତି । ଶ୍ରୀଜଗନ୍ନାଥଙ୍କ ଚିତ୍ର ପାଖରେ ମାଧୋଇଙ୍କ ଚିତ୍ର ଯିଏ ବନ୍ଧୁ ମହାନ୍ତିଙ୍କୁ ନିଜର ପରମ ବନ୍ଧୁ ବୋଲି ସ୍ୱୀକାର କରିଛନ୍ତି । ସ୍ୱପ୍ନ ଭଙ୍ଗ ପରେ ବନ୍ଧୁ ମହାନ୍ତିଙ୍କୁ ଦୋଷମୁକ୍ତ କରାଯାଇଛି । କେବଳ ସେତିକି ନୁହେଁ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅପାର କରୁଣାରୁ ଯୁବକ ଜମିଦାର ନାରାୟଣ ଶ୍ରୀକ୍ଷେତ୍ରକୁ ଆସିଛନ୍ତି ଏବଂ ଗଜପତିଙ୍କ ନିର୍ଦ୍ଦେଶରେ ବନ୍ଧୁ ମହାନ୍ତିଙ୍କ କନ୍ୟା ସହ ବିବାହ ସମ୍ପନ୍ନ ହୋଇଛି । ଏହି ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥ ଦାସଙ୍କ ଭାଗବତରୁ ଗୃହୀତ ''ନମସ୍ତେ ପ୍ରଭୁ ଜଗନ୍ନାଥ ଅନାଥ ନାଥଙ୍କର ନାଥ ସଂଗୀତକୁ ନିର୍ଦ୍ଦେଶକ ପ୍ରଫୁଲ୍ଲ କର କଣ୍ଠଦାନ କରିଥିଲେ ।

୧୯୭୯ ମସିହାରେ ମାନ୍ଦ୍ରାଜର ବିଶିଷ୍ଟ ପ୍ରଯୋଜକ କ୍ରାନ୍ତିକୁମାରଙ୍କ ରଙ୍ଗିନ୍ ଚଳଚ୍ଚିତ୍ର ଶ୍ରୀଜଗନ୍ନାଥ ଗୋଟିଏ ନାମରେ ଦ୍ୱିତୀୟ ଚଳଚ୍ଚିତ୍ର ଅଟେ । ଶ୍ରୀଜଗନ୍ନାଥ ଚେତନା ସମ୍ପର୍କିତ ଏହା ଷଷ୍ଠ ଚଳଚ୍ଚିତ୍ର ଅଟେ । କ୍ରାନ୍ତି ଏଣ୍ଟରପ୍ରାଇଜେସ୍ ମାନ୍ଦ୍ରାଜର ବ୍ୟାନରରେ ନିର୍ମିତ ଏହି ଚଳଚ୍ଚିତ୍ରରେ ମାନ୍ଦ୍ରାଜର ଶ୍ରୀ ବିଜୟ ଭାସ୍କର ସଂଗୀତ ନିର୍ଦ୍ଦେଶନା ଦେଇଥିଲେ । ଚଳଚ୍ଚିତ୍ରର ଆଲୋଚକ କୁହନ୍ତି ଯେ, 'ଝିଲିମିଲି' ଚଳଚ୍ଚିତ୍ରର ନିର୍ମାଣ ସମୟରେ କ୍ରାନ୍ତିକୁମାର ଓଡ଼ିଶା ଆସିବା ପରେ ଅନେକଥର ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଛନ୍ତି । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉପରେ ତାଙ୍କର ଐକାନ୍ତିକ ଭକ୍ତି ଓ ଗଭୀର ବିଶ୍ୱାସ ହିଁ ଗୋଟିଏ ନାମରେ ଦ୍ୱିତୀୟ ଚଳଚ୍ଚିତ୍ର 'ଶ୍ରୀଜଗନ୍ନାଥ' କରିବାକୁ ପ୍ରେରିତ ହୋଇଥିଲେ । ନିର୍ଦ୍ଦେଶକ କ୍ରାନ୍ତିକୁମାର ଶ୍ରୀଜଗନ୍ନାଥଙ୍କ ମହିମାକୁ ଅଣଓଡ଼ିଆଙ୍କ ମଧ୍ୟରେ ପ୍ରଚାର ଓ ପ୍ରସାର କରିବାର ଉଦ୍ଦେଶ୍ୟ ମଧ୍ୟ ଏପରି ଏକ ଚଳଚ୍ଚିତ୍ର ନିର୍ମାଣର କାରଣ ବୋଲି ଧରାଯାଏ । ମୁଖ୍ୟ କଥାବସ୍ତୁ ପୂଜିତ ନୀଳମାଧବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଭକ୍ତି ବଳରେ ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିଲେ । ଏହି ମୌଳିକ କାହାଣୀ ଶ୍ରୀଜଗନ୍ନାଥ ନାମକ ଦୁଇଟି ଚଳଚ୍ଚିତ୍ରରେ ଭିନ୍ନ ଭିନ୍ନ ଭାବେ ପ୍ରକାଶ

ଲାଭ କରିଛି । ଏହି ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥଙ୍କ ଦାରୁ ମହୋଦଧିରେ ଭାସିଭାସି ବାଙ୍କିମୁହାଣରେ ଲାଗିବା ଦୃଶ୍ୟର ସୁଟିଂରେ ଶ୍ରୀଜଗନ୍ନାଥଙ୍କ ଅପାର କରୁଣାର ନିଦର୍ଶନର ସ୍ୱରୂପ ଏକ ଅଲୌକିକ ଘଟଣା ଘଟିଥିବା ଜଣାଯାଏ । (ଓଡ଼ିଆ ଚଳଚ୍ଚିତ୍ରର ଅଜ୍ଞାତ ଅଧ୍ୟାୟ ଭୀମସିଂହ) ଚଳଚ୍ଚିତ୍ରର ଶେଷରେ ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ବେଶ ମାହାତ୍ମ୍ୟ ସମ୍ପର୍କରେ ଯେଉଁ ବିବରଣୀ ପ୍ରଦର୍ଶନ କରାଯାଇଛି ତାହା ବେଶ୍ ଆକର୍ଷିତ ଥିଲା । ଏହି ଚଳଚ୍ଚିତ୍ରର ଦୁଇଟି ପ୍ରସିଦ୍ଧ ସଂଗୀତ ହେଉଛି -''କାଳିଆ ଆସିଲା କାଳିଆ ଆସିଲା ଭାଇ...'' ଏବଂ ''ସେତ ଭକତ ଭାବରେ ବନ୍ଧା- ସେତ ଭକତ ଜୀବନର ଧନ'' ଆଜି ମଧ୍ୟ ଲୋକମୁଖରେ ଗୁଞ୍ଜରିତ ହେଉଛି ।

୧୯୭୯ ମସିହାରେ ଶ୍ରୀଜଗନ୍ନାଥ ମହିମା ସମ୍ବଳିତ ସପ୍ତମ ଅନ୍ୟ ଏକ ଚଳଚ୍ଚିତ୍ର ଶ୍ରୀଜଗନ୍ନାଥ ପ୍ରସାଦ ଭଗତଙ୍କ ନିର୍ଦ୍ଦେଶନାରେ ଶ୍ରୀପତି ଫିଲ୍ମସ୍ ବ୍ୟାନରରେ ତାଙ୍କର ଧର୍ମପତ୍ନୀ ଶ୍ରୀମତୀ ରାଜକୁମାରୀ ଦେବୀଙ୍କ ପ୍ରଯୋଜନାରେ ଚଳଚ୍ଚିତ୍ର ନିର୍ମିତ ହୋଇଥିଲା । ଶ୍ରୀଭଗତ ଚଳଚ୍ଚିତ୍ରର ମୁଖ୍ୟ କଥାବସ୍ତୁ ଓ ଶ୍ରୀଜଗନ୍ନାଥଙ୍କ ସମ୍ପର୍କକୁ ଯୋଡ଼ି ଚିତ୍ରନାଟ୍ୟ ରଚନା କରିଥିଲେ । ଭୂମିକାରେ ରଘୁମିଶ୍ର, ରାମଚନ୍ଦ୍ର ପ୍ରତିହାରୀ, ଜୟୀ, ଗଡ଼ି, ମମତା ରାଉତରାୟ, ଜୟା ପ୍ରମୁଖ ଅଭିନୟ କରୁଥିଲେ । ନୀଳମାଧବରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ମାହାତ୍ମ୍ୟ ଏବଂ କରୁଣାର ଅବାରିତ ଧାରା ଦର୍ଶକଙ୍କୁ ବିମୋହିତ କରିଥିଲା ।

ଜୟ ଜଗନ୍ନାଥ ଫିଲ୍ମସ୍ ପ୍ରାଇଭେଟ୍ ଲିମିଟେଡ୍ ବ୍ୟାନରରେ ସୂର୍ଯ୍ୟନାରାୟଣଙ୍କ ପ୍ରଯୋଜନାରେ ଶ୍ରୀଜଗନ୍ନାଥଙ୍କ ଭକ୍ତି ରସାମୃତରେ ଆଧାରିତ 'ଭକ୍ତ ସାଲବେଗ' ଶ୍ରୀଜଗନ୍ନାଥ ଚେତନା ଭିତ୍ତିକ ଅଷ୍ଟମ ଚଳଚ୍ଚିତ୍ର ଅଟେ । ଏହା ୧୯୮୩ ମସିହାରେ କଟକ ଦେବୀ ସିନେମା ହଲ୍‌ରେ ମୁକ୍ତିଲାଭ କରିଥିଲା । ଶ୍ରୀରାଧା ପଣ୍ଡାଙ୍କ ନିର୍ଦ୍ଦେଶନାରେ ନିର୍ମିତ ଏହି ଚଳଚ୍ଚିତ୍ରରେ ଭୁବନେଶ୍ୱରୀ ମିଶ୍ର ସଂଗୀତ ନିର୍ଦ୍ଦେଶନା ଦେଇଥିଲେ । ଶ୍ରେଷ୍ଠାଂଶରେ ଉତ୍ତମ ମହାନ୍ତି, ଅପରାଜିତା, ବୀରେନ୍ ରାଉତରାୟ, ଅନୀତା ଦାସ, ଶରତ ପୂଜାରୀ, ଦୁଃଖିରାମ ସ୍ୱାଇଁ, ବ୍ୟୋମକେଶ ତ୍ରିପାଠୀ, ଜୟୀରାମ ସାମଲ ପ୍ରମୁଖ ଅଭିନୟ କରିଥିଲେ । ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ସାଲବେଗଙ୍କ ଜୀବନକୁ ନେଇ କାହାଣୀ ରଚିତ । ଚଳଚ୍ଚିତ୍ରରେ ବିଧବା ବ୍ରାହ୍ମଣୀ ଲଳିତା (ଅନୀତା ଦାସ) ମୁସଲମାନ ସୈନ୍ୟବିଭାଗର ଉଚ୍ଚପଦସ୍ଥ କର୍ମଚାରୀ ଲାଲବେଗ ଜାହାଙ୍ଗୀର କୁଲିଖାଁ (ବୀରେନ୍ ରାଉତରାୟ) ପ୍ରଥମେ ଧର୍ଷିତା ହୋଇ ଓ ପରେ ତାଙ୍କୁ ବିବାହ କରିଛନ୍ତି । ପରେ ତାଙ୍କ ଗର୍ଭରୁ ସାଲବେଗ (ଉତ୍ତମ ମହାନ୍ତି) ଜନ୍ମଲାଭ କରିଛନ୍ତି । ମୁସଲମାନ ପତ୍ନୀ ହେଲେ ମଧ୍ୟ ଆରାଧ୍ୟ ଦେବତା ବୃନ୍ଦାବନ ଚନ୍ଦ୍ର ଶ୍ରୀକୃଷ୍ଣଙ୍କୁ ପୂଜା କରିଛନ୍ତି । ଯଦିଓ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ସେ କୌଣସି ପ୍ରଭେଦ ଦେଖି ନାହାନ୍ତି ସାଲବେଗଙ୍କ ଜନ୍ମ ପରେ କିଛି ବର୍ଷ ପାଇଁ ଲାଲବେଗ ଓଡ଼ିଶା ଛାଡ଼ି ଚାଲିଯାଇଛନ୍ତି । ସାଲବେଗ ବଡ଼ ହେବା ପରେ ହିନ୍ଦୁମାନଙ୍କଦ୍ୱାରା ତାଙ୍କର ମା' ଅପମାନିତ ହେଉଥିବାର ଦେଖି 'ସେ ହିନ୍ଦୁଧର୍ମ ପ୍ରତି ବିଚଳିତ ହୋଇଛନ୍ତି ଏବଂ ପିତାଙ୍କ ସହ ଯୁଦ୍ଧ ବିଶାରଦ ହେବାପାଇଁ ଯାଇଥିବାବେଳେ ବଙ୍ଗଳାରେ ଆଫଗାନମାନଙ୍କ ସହିତ ଯୁଦ୍ଧ କରି ସାଂଘାତିକ ଆହତ ହେବା ସହ ଶରୀରରେ ବ୍ରଣବ୍ୟାଧି ଭୋଗ କରିଛନ୍ତି । ମା'ଙ୍କ ଉପଦେଶକ୍ରମେ ବୃନ୍ଦାବନର ଶ୍ରୀକୃଷ୍ଣଙ୍କ ଚରଣରେ ମନପ୍ରାଣ ଢାଳି ଦେଇଛନ୍ତି । ମା' ତାଙ୍କର ବିକଳରେ ପ୍ରଭୁଙ୍କ ପାଖରେ ଗାଇଛନ୍ତି ଯେ, - ''ତାରିବା ଶକତି ଅଛି ତୋର, ତୁହି ହେଲୁ ଜଗତର ନାଥ''- ଏଥିରେ ବିକଳ ପ୍ରାର୍ଥନା ସହ ପ୍ରଭୁଙ୍କ ମାହାତ୍ମ୍ୟ ମଧ୍ୟ ପରିଲକ୍ଷିତ । ରୋଗମୁକ୍ତ ହେଲା ପରେ ସାଲବେଗ ପ୍ରଭୁ ଜଗନ୍ନାଥଙ୍କ ପ୍ରତି ଅନାବିଳ ଭକ୍ତି ଭାବରେ ଉଦ୍‌ବୁଦ୍ଧ ହୋଇ ଶ୍ରୀକ୍ଷେତ୍ର ଯାତ୍ରା କରିଛନ୍ତି । ଶ୍ରୀମନ୍ଦିର ଭିତରକୁ ପ୍ରବେଶ କରିବାର ଅଧିକାର ନ ପାଇ ଭଜନ ଜଣାଣ ମାଧ୍ୟମରେ ଆକୁଳ ପ୍ରାର୍ଥନା କରିଛନ୍ତି ଯେ- ''ଆହେ ନୀଳଶଇଳ ପ୍ରବଳ ମତ୍ତବାରଣ, ମୋ ଆରତ ନଳିନୀ ବନକୁ କର ଦଳନ'' । ତାଙ୍କର ଭକ୍ତି ଜଣାଣରେ ମୁଗ୍ଧ ହୋଇ ଗଜପତି ନରସିଂହ ଦେବ ବଳଗଣ୍ଡିଠାରେ ତାଙ୍କ ପାଇଁ ଛତାମଠ ସ୍ଥାପନ କରିଥିଲେ । ସେହିଠାରେ ଅବସ୍ଥାନ ସମୟରେ ମା' ଅନ୍ତିମ ଇଚ୍ଛାକୁ ରକ୍ଷା କରି ସେ ମା'ଙ୍କ ଶବକୁ ସ୍ୱର୍ଗଦ୍ୱାରରେ ସଂସ୍କାର କରିଥିଲେ । ପରେ ପୁରୀର ପଣ୍ଡାମାନେ ଏହାକୁ ଗ୍ରହଣ ନ କରି ମଠ ଉପରେ ଆକ୍ରମଣ କରିଥିଲେ । ସେଠାରୁ ସେ ବୃନ୍ଦାବନ ପଳାୟନ କରିବାକୁ ବାଧ୍ୟ ହୋଇଥିଲେ । ସେଠାରେ ରଥଯାତ୍ରା ଦେଖିବାକୁ ମନ ବଳିବାରୁ ବାଟରେ ଜ୍ୱରପୀଡ଼ାରେ ପଡ଼ି ମଧ୍ୟ ସେ ରଥଯାତ୍ରା ଦିନ ଶ୍ରୀକ୍ଷେତ୍ରରେ ପହଞ୍ଚିପାରି ନ ଥିଲେ । ତେଣୁ ବଡ଼ଦାଣ୍ଡରେ ରଥ ଅଟକିବାକୁ ଶ୍ରୀଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରିଥିଲେ ଯେ, ''ଜଗବନ୍ଧୁ ହେ ଗୋସାଇଁ... ତୁମ ଶ୍ରୀଚରଣ ବିନା ଅନ୍ୟ ଗତି ନାହିଁ....(୨) ସାତଶ ପଚାଶ କୋଶ ଚାଲି ନ ପାରଇ

ମୋହ ଯିବା ଯାଏଁ ନନ୍ଦିଘୋଷ ଥିବ ରହି.... । ଏହି ଗୀତଟି ଚଳଚ୍ଚିତ୍ରର ସବୁଠାରୁ ଲୋକପ୍ରିୟ ଗୀତ ଅଟେ । ପ୍ରଭୁ ଶ୍ରୀଜଗନ୍ନାଥ, ଭକ୍ତର ମନକଥା ବୁଝି ବଳଗଣ୍ଡିଠାରେ ଅଟକି ରହିଥିଲେ । ସାଲବେଗ ପହଞ୍ଚିବା ପରେ ରଥ ଗଡ଼ିବାକୁ ଆରମ୍ଭ କରିଥିଲା । ଏହି ଘଟଣା ଜାଣିବା ପରେ ଗଜପତି ଅଦ୍ୱିତୀୟ ଭାବେ ତାଙ୍କୁ ଗ୍ରହଣ କରିଥିଲେ । ଏହି ଚଳଚ୍ଚିତ୍ରର ଅନ୍ୟ ଏକ ଲୋକପ୍ରିୟ ସଂଗୀତ ହେଉଛି 'ଚାଲ ସଖି ଆମେ ଦର୍ଶନ କରିବା ନୀଳଗିରି କାଳିଆକୁ....' ପରିଶେଷରେ ସାଲବେଗଙ୍କର ଶେଷ ନିଶ୍ୱାସର ଦୃଶ୍ୟ ଦର୍ଶକଙ୍କୁ ଅଧିକ ଅଶ୍ରୁସିକ୍ତ କରିଛି । ପ୍ରତ୍ୟେକ ଦର୍ଶକ ଅଶ୍ରୁସିକ୍ତ ନୟନରେ ପ୍ରେକ୍ଷାଳୟରୁ ଫେରିବାର ଦୃଶ୍ୟ ହିଁ ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତିଭାବର ଅନ୍ୟ ଏକ ନିଦର୍ଶନ ।

ରୂପ ଇଣ୍ଟରନ୍ୟାସନାଲ, କେନ୍ଦୁଝର ବ୍ୟାନରରେ ପ୍ରେମାନନ୍ଦ ମହାନ୍ତିଙ୍କ ନିର୍ଦ୍ଦେଶନାରେ ଉପେନ୍ଦ୍ର କୁମାରଙ୍କ ସଂଗୀତ, ଯଯାତି ସାମନ୍ତରାୟଙ୍କ ସଂଳାପ ରଚନାରେ ଶ୍ରୀଜଗନ୍ନାଥ ମହିମା ସମ୍ବନ୍ଧିତ ନବମ ଚଳଚ୍ଚିତ୍ର 'ମାଣିକ' ୧୯୮୭ ମସିହାରେ ମୁକ୍ତିଲାଭ କରିଥିଲା । ଏହି ଚଳଚ୍ଚିତ୍ରର ମୁଖ୍ୟାଂଶରେ ତନ୍ଦ୍ରା ରାୟ, ବିଜୟ ମହାନ୍ତି, ଧୀର ବିଶ୍ୱାଳଙ୍କ ଅଭିନୟରେ ଏହା ନିର୍ମିତ ହୋଇଥିଲା । ମାଣିକ ଗଉଡୁଣୀର ଜୀବନ କାହାଣୀକୁ ନେଇ ଚଳଚ୍ଚିତ୍ରଟି ନିର୍ମିତ । ଯେଉଁ ମାଣିକ ଗଉଡୁଣୀ ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କ କରିଥିବା କାଞ୍ଚି ଅଭିଯାନରେ କଳାଘୋଡ଼ା ଧଳାଘୋଡ଼ା ଚଢ଼ି ପ୍ରଭୁ ଶ୍ରୀ ଜଗନ୍ନାଥ ଓ ବଳଭଦ୍ର ରାଜା ପୁରୁଷୋତ୍ତମ ଦେବଙ୍କୁ ସାହାଯ୍ୟ କରିବାକୁ ଯାଉଥିବା ସମୟର ପରମଭକ୍ତ ମାଣିକଠାରୁ ଦହିପାନ କରିଥିଲେ । ଏବଂ ମାଣିକ ଗଉଡୁଣୀ ପାଉଣା ମାଗିବାରୁ ତାଙ୍କୁ ରତ୍ନମୁଦି ଦେଇଥିଲେ । ପଛରେ ଯିଏ ଆସୁଛନ୍ତି ତାଙ୍କୁ ରତ୍ନମୁଦି ଦେଖାଇଲେ ସେ ପାଉଣା ଦେବେ ବୋଲି କହି ଚାଲିଯାଇଥିଲେ । ପଛରେ ଆସୁଥିବା ରାଜା ମାଣିକଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଶ୍ରୀଜଗନ୍ନାଥଙ୍କ ମହିମାକୁ ଉପଲବ୍ଧି କରିଥିଲେ ଏବଂ ସେହି ସ୍ଥାନର ନାମ ପ୍ରଭୁଙ୍କ ଭକ୍ତ ମାଣିକ ନାମାନୁସାରେ ମାଣିକପାଟଣା ରଖାଯାଇଥିଲା । ରାଜା ହେଉ କି ପ୍ରଜା ହେଉ ପ୍ରଭୁ ସମସ୍ତଙ୍କ ପାଖରେ ଆବଶ୍ୟକ ସମୟରେ ଠିଆ ହୁଅନ୍ତି ତା'ର ସୂଚନା ଏଠାରେ ପ୍ରଦାନ କରାଯାଇଛି । ଏହି ଚଳଚ୍ଚିତ୍ରରେ ''କାଳିଆ ଆସିଲା କାଳିଆ ଆସିଲା... ଦହି ନବ ଦହି'' ଗୀତଟି ଆଜି ବି ଲୋକପ୍ରିୟ ଅଟେ ।

'ଶ୍ରୀଜଗନ୍ନାଥ' ଦୀର୍ଘଦିନର ବ୍ୟବଧାନ ପରେ ୨୦୦୭ ମସିହା ଜୁଲାଇ ୧୦ ତାରିଖରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପବିତ୍ର ଘୋଷଯାତ୍ରା ଅବସରରେ ୧୪ଟି ଭାଷାରେ ନିର୍ମିତ ଏହି ଚଳଚ୍ଚିତ୍ର ୭ଟି ଦେଶରେ ଏକ ସଙ୍ଗେ ମୁକ୍ତିଲାଭ କରିଥିଲା । ମ୍ୟାଜିକ୍ ପ୍ରାଇଭେଟ୍ ଲିମିଟେଡ୍‌ର ବ୍ୟାନରରେ ସବ୍ୟସାଚୀ ମହାପାତ୍ରଙ୍କ ଚିତ୍ରନାଟ୍ୟ ଓ ନିର୍ଦ୍ଦେଶନାରେ ଏବଂ ଅକ୍ଷୟ ମହାନ୍ତିଙ୍କ ସଂଗୀତରେ ଏହି ଚଳଚ୍ଚିତ୍ରକୁ ସଜା ଯାଇଥିଲା । ଏଠାରେ ବିଭିନ୍ନ ଭୂମିକାରେ ଦେବାଶିଷ ମହାପାତ୍ର, ଶ୍ରୀତମ୍ ଦାସ, ପିଣ୍ଟୁ ନନ୍ଦ, ଜ୍ୟୋତି ମିଶ୍ର (ଲକ୍ଷ୍ମୀ), ଶିଳାଲିପି ପରିଡ଼ା (ଚଣ୍ଡାଳୁଣୀ) ପ୍ରଦ୍ୟୁମ୍ନ ଲେଙ୍କା, ହର ପଟ୍ଟନାୟକ, ମୋନାଲିସା କାନୁନ୍‌ଗୋ ଆଦି ଅଭିନୟ କରିଛନ୍ତି । ଏହି ଚଳଚ୍ଚିତ୍ରର କାହାଣୀ ଶ୍ରୀୟାର କାହାଣୀକୁ ନେଇ ନିର୍ମିତ ହେଲେ ମଧ୍ୟ ଏହାର ନାମକରଣ 'ଶ୍ରୀଜଗନ୍ନାଥ' ରଖାଯାଇଥିଲା । ଶ୍ରୀୟା ଗାଇଥିବା ଗୀତରେ ଶ୍ରୀଜଗନ୍ନାଥଙ୍କ ପ୍ରତି ତା'ର ଐକାନ୍ତିକ ଭକ୍ତିକୁ ପ୍ରକଟ କରାଯାଇଛି । – ''ଛାର ଫୁଲ ହୋଇ ଲାଗୁଛି ମଥାରେ / ପାଖରୁ ଦରଶନ ନାହିଁ ମୋ କପାଳେ/ଶଙ୍ଖ ଯେ ସାଗରୁ ଜାତ ଶବଦେ ତା ଜାତ ଶୁଭ/ମୟୂରଚନ୍ଦ୍ରିକା ଶୋହେ ସିଏ କି ଅଛୁଆଁ ନୁହେଁ ମୁହିଁ ଯେ ବଡ଼ଦାଣ୍ଡ ଖରିକିଲି ଚୋର/ ପାଖରୁ ଦରଶନ ନାହିଁ ମୋତେ କି ମନାରେ... ।'' ଏହି ଚଳଚ୍ଚିତ୍ରର ପ୍ରସଙ୍ଗକ୍ରମେ ନାରଦଙ୍କ ଦ୍ୱାରା ଯେଉଁ ଗୀତ ବୋଲା ଯାଇଛି, ସେଥିରେ ମଧ୍ୟ ଶ୍ରୀଜଗନ୍ନାଥ ମାହାତ୍ମ୍ୟ ପ୍ରତିପାଦିତ ହୋଇଛି । କଳିଯୁଗର ନାରାୟଣ ପ୍ରଭୁ ଜଗନ୍ନାଥ ହେ / ନାରାୟଣୀ ତୁମେ ଦେବୀ ମହାଲକ୍ଷ୍ମୀ/ଇସାରାରେ ମାତ ପାଳନ୍ତି ଜଗତ ।'' ନାମକରଣ ଦୃଷ୍ଟିରୁ ସଫଳତା ଲାଭ କରି ନ ଥିବା ଏହି ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥ ପ୍ରତ୍ୟକ୍ଷ ଚରିତ୍ରରୂପେ ଅଭିନୀତ ହୋଇଛି । ଚଳଚ୍ଚିତ୍ରର ଅୟମାରମ୍ଭରୁ ଶ୍ରୀଜଗନ୍ନାଥଙ୍କର ପ୍ରତ୍ୟକ୍ଷ କାହାଣୀ ଓ ପ୍ରତ୍ୟକ୍ଷ ଚରିତ୍ର ୨୦୦୭ ମସିହା ପର୍ଯ୍ୟନ୍ତ ଦେଖିବାକୁ ମିଳେ । ଚଳଚ୍ଚିତ୍ରର ନିର୍ମାଣଗତ ଦୃଷ୍ଟିରୁ ପରିବର୍ତ୍ତନ ହୋଇଥିଲେ କାହାଣୀରେ ସେପରି କିଛି ପରିବର୍ତ୍ତନ ଲକ୍ଷ୍ୟ କରାଯାଏ ନାହିଁ । ଚଳଚ୍ଚିତ୍ରର ବୈପ୍ଳବିକ ପରିବର୍ତ୍ତନରେ ଆଉ ପୁରାଣ, କିମ୍ବଦନ୍ତୀକୁ ନେଇ ଚଳଚ୍ଚିତ୍ର ନିର୍ମାଣ କରାଯାଉ ନାହିଁ । ସାମାଜିକ କଥାବସ୍ତୁକୁ ନେଇ ଅନେକ ଚଳଚ୍ଚିତ୍ର ଦେଖାଯାଇଛି । ସମୟ ଓ ସମାଜର ପରିବର୍ତ୍ତନ ସତ୍ତ୍ୱେ ଶ୍ରୀଜଗନ୍ନାଥ ଧର୍ମ ଓ ଚେତନା ଅକ୍ଷୁଣ୍ଣ ରହିଛି । ଆଜିବି ମଣିଷ ନିଜର କ୍ରିୟା ପ୍ରତିକ୍ରିୟା, ଭାବ ଅଭାବରେ, ସହାୟ ଅସହାୟ ସମୟରେ ପ୍ରଭୁଙ୍କ ପାଖରେ ନିଜକୁ ଆତ୍ମସମର୍ପଣ କରିଛି । ତେଣୁ

ଅନେକ ସାମାଜିକ କାହାଣୀରେ ନାମକରଣ ପ୍ରଭୁଙ୍କ ନାମାନୁସାରେ ସଂଯୋଜିତ କରଯାଇଛି । ଏହି ସବୁ ଚଳଚ୍ଚିତ୍ରରେ ପ୍ରଭୁଙ୍କର ମହିମାକୁ ଭକ୍ତ କିପରି ପ୍ରତ୍ୟକ୍ଷ ଭାବରେ ପାଏ ତାହା ଦର୍ଶାଯାଇଛି । ମାତ୍ର ଶ୍ରୀଜଗନ୍ନାଥ ପ୍ରତ୍ୟକ୍ଷ ଚରିତ୍ର ଭାବରେ ଉପସ୍ଥିତ ନ ହୋଇ ଘଟଣାବଳୀର ପ୍ରସଙ୍ଗକ୍ରମେ ଶ୍ରୀଜଗନ୍ନାଥ ନିଜ କରୁଣା ଓ ଦୟାର ବାରିଧାରାକୁ କିପରି ସିଞ୍ଚନ କରନ୍ତି ତାହା ଦେଖିବାକୁ ମିଳେ । ଯାହା ଆମର ବ୍ୟକ୍ତିଗତ ଅନୁଭୂତିକୁ କିଛି ସୂଚାଇଦିଏ ସେହି ସବୁ ଚଳଚ୍ଚିତ୍ରଗୁଡ଼ିକ ହେଉଛି– 'ଶ୍ରୀପତିତପାବନ', 'ଜଗାବଳିଆ', 'ଜଗା ହାତରେ ପଘା', 'ପୁଅ ମୋର କଳା ଠାକୁର', 'ଚକା ଆଖି ସବୁ ଦେଖୁଛି', 'ଆସୁଛି ମୋ କାଳିଆସୁନା', 'ଚକାଡୋଳା କରୁଛି ଲୀଳା', 'ପଥର ଖସୁଛି ବଡ଼ଦେଉଳୁ', 'ଠାକୁର ଅଛନ୍ତି ଚଉବାହାକୁ', 'କାଳିଆ ଭରସା', 'କୋଟିଏ ମଣିଷ ଗୋଟିଏ ଜଗା', 'ଏଇ ଆଖି ଆମ ସାକ୍ଷୀ', 'ହିସାବ କରିବ କାଳିଆ', 'ସାକ୍ଷୀ ରହିଲା ଏ ସିଂହ ଦୁଆର', 'ବାହୁଡ଼ିବେ ମୋ ଜଗାବଳିଆ' ଆଦି ବ୍ୟବସାୟଭିତ୍ତିକ ଚଳଚ୍ଚିତ୍ରରେ ଶ୍ରୀଜଗନ୍ନାଥଙ୍କ ପ୍ରତି ଆନ୍ତରିକ ଦୁର୍ବଳ ମନୋଭାବସମ୍ପନ୍ନ ଦର୍ଶକଙ୍କୁ ଅଧିକ ଆକର୍ଷିତ କରିବା ପାଇଁ ଶ୍ରୀମନ୍ଦିର, ଶ୍ରୀଜଗନ୍ନାଥ, ସିଂହଦ୍ୱାର ଆଦିକୁ ନେଇ ନାମକରଣ କରାଯାଇଛି । ଏଥିରୁ ମନେହୁଏ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ଚଳଚ୍ଚିତ୍ରର କାରଣ ହେଉ ଅବା ଦର୍ଶକର ସୂକ୍ଷ୍ମାତିସୂକ୍ଷ୍ମ ଧାରଣା ଭିତରେ ଆତ୍ମନିଷ୍ଠ ହୋଇଛି । ଏତଦ୍‌ବ୍ୟତୀତ ଅନେକ ଚଳଚ୍ଚିତ୍ର ଅଛି ଯେଉଁଥିରେ ପ୍ରଭୁଙ୍କ ମାହାତ୍ମ୍ୟ ଭଜନ ହେଉ ଜଣାଣ ହେଉ କି ପ୍ରସଙ୍ଗକ୍ରମେ ପ୍ରକଟିତ ହୋଇଛି ।

କଳାରଠାକୁର ପ୍ରଭୁ ଶ୍ରୀଜଗନ୍ନାଥ ପ୍ରତ୍ୟେକ ଚଳଚ୍ଚିତ୍ରର ନିଜେ ନିର୍ଦ୍ଦେଶକ, ପ୍ରଯୋଜକ, କାହାଣୀକାର ଅଟନ୍ତି । ତାଙ୍କରି ନିର୍ଦ୍ଦେଶରେ ଚଳଚ୍ଚିତ୍ର ପ୍ରାରମ୍ଭ ଏବଂ ସମାପ୍ତ ହୁଏ । ମହୁରତଠାରୁ ଆରମ୍ଭ କରି ପ୍ରେକ୍ଷାଳୟରେ ଚଳଚ୍ଚିତ୍ରର ରିଲିଜ୍ ପର୍ଯ୍ୟନ୍ତ ସେହି ଏକମାତ୍ର ସାହାଭରସା । ସାହିତ୍ୟ ପୃଷ୍ଠାରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ଯେତିକି ଲୋକମାନଙ୍କ ଉପରେ ପ୍ରଭାବ ପକାଏ ନାହିଁ ଚଳମାନଚିତ୍ର ସେତିକି ପ୍ରଭାବ ପକାଏ । ଓଡ଼ିଆ ଚଳଚ୍ଚିତ୍ରରେ ପ୍ରଭୁଙ୍କ ପ୍ରତି ବିଶ୍ୱାସ, ଅଭିମାନ ସମର୍ପଣକୁ ରୂପାୟନ କରାଯାଇ ଦର୍ଶକଙ୍କୁ ପ୍ରଭୁଙ୍କ ଭାବଡୋରି ଏମିତି ସବୁବେଳେ ବନ୍ଧାଯାଉ ପ୍ରଭୁଙ୍କ ପାଖରେ ଏତିକି କାମନା ।



ନରେନ୍ଦ୍ରକୋଣ, ପୁରୀ

# ରତ୍ନା ନାୟକ : ବିପ୍ଳବୀରୁ ଶହୀଦ

ଜୟଶଙ୍କର ନାୟକ

ରାଜତନ୍ତ୍ର ଓ ଇଂରେଜ ସରକାରଙ୍କ ବିରୋଧରେ ବିଦ୍ରୋହ ସଂଗଠିତ କରି ଭାରତ ତଥା ଓଡ଼ିଶାର ଇତିହାସକୁ ମହିମାନ୍ୱିତ ଓ ଗୌରବାନ୍ୱିତ କରିଥିବା ଅସାଧାରଣ ପ୍ରତିଭାସମ୍ପନ୍ନ ଓ ମହନୀୟ କୃତିତ୍ୱଦ୍ୱାରା ବରେଣ୍ୟ ବ୍ୟକ୍ତିମାନଙ୍କ ମଧ୍ୟରୁ ଶହୀଦ ରତ୍ନା ନାୟକ ଥିଲେ ଅନ୍ୟତମ । ସେ ଥିଲେ ଜଣେ ଯୁଗଜନ୍ମା ପୁରୁଷ । ସେ ଆହୁରି ମଧ୍ୟ ଥିଲେ ଭୂୟାଁ ସ୍ୱାଭିମାନର ପ୍ରଥମ ଜାଗ୍ରତ ପ୍ରହରୀ । ବେଠି ବେଗାରି ତଥା କୁଶାସନ ବିରୋଧରେ ଉତ୍‌କ୍ଷିପ୍ତ ହୋଇ ସେମାନଙ୍କର ନ୍ୟାଯ୍ୟ ଦାବି ହାସଲ କରିବା ପାଇଁ ଏକ ଗଣ ଆନ୍ଦୋଳନ କରିଥିଲେ । ଏହି ଗଣଆନ୍ଦୋଳନ କେନ୍ଦୁଝର ଜିଲ୍ଲା କାହିଁକି ସମଗ୍ର ଭାରତ ବର୍ଷରେ ମୁକ୍ତି ସଂଗ୍ରାମର ବିଦ୍ରୋହ ସୂତ୍ରପାତ କରିଥିଲା । ଏହି ବିଦ୍ରୋହର ପୁରୋଧା ଥିଲେ ଶହୀଦ ରତ୍ନା ନାୟକ । ବିର୍ସା ମୁଣ୍ଡା, ଦୋରା ବିଶୋଇ, ଚକ୍ର ବିଶୋଇ, ବିପ୍ଳବୀ ଧରଣୀଧର ନାୟକ, ବିପ୍ଳବୀ ମାଦ୍ରି କାଲୋ, ନିର୍ମଳ ମୁଣ୍ଡା ପ୍ରମୁଖ ସୁଖ୍ୟାତ ଆଦିବାସୀ ମୁକ୍ତି ଯୋଦ୍ଧାଙ୍କର ସେ ଜଣେ ସମକକ୍ଷ ବିପ୍ଳବୀ । ତାଙ୍କର ବିପ୍ଳବଟି ସାଧାରଣରେ ରତ୍ନା ମେଳି ନାମରେ ପରିଚିତ ।

ଜନଶ୍ରୁତି ଅନୁସାରେ ୧୮୨୦ ମସିହା ମଇ ମାସ ୧୩ ତାରିଖରେ କେନ୍ଦୁଝର ଜିଲ୍ଲାର ଭୂୟାଁ ପିଢ଼ିର ପ୍ରାଣକେନ୍ଦ୍ର ବାଂଶପାଳଠାରେ ରତ୍ନା ନାୟକ ଜନ୍ମଗ୍ରହଣ କରିଥିଲେ । ଭୂୟାଁ ପିଢ଼ିର ସର୍ଦ୍ଦାର ବଂଶର କୁଳ ଉଜ୍ଜ୍ୱଳ କରି ଜନ୍ମିଥିବା ଶହୀଦ ରତ୍ନା ନାୟକ ଅରଣ୍ୟବାସୀମାନଙ୍କ ହୃଦୟରେ ସ୍ପନ୍ଦନ ସୃଷ୍ଟି କରି ପାରିଥିଲେ । ଘରକୁ ଉଜ୍ଜ୍ୱଳ କରି ରତ୍ନଟି ଆସିଲା ବୋଲି ଶ୍ରଦ୍ଧାରେ ରତ୍ନା ନାମକରଣ କରାଯାଇଥିଲା । ଭୂୟାଁ ପିଢ଼ିର ସର୍ଦ୍ଦାର ହିସାବରେ ପରମ୍ପରାନୁସାରେ ରତ୍ନା ନାୟକଙ୍କ ପରିବାରର ଖ୍ୟାତି ଥିଲା । ରତ୍ନା ନାୟକଙ୍କ ସର୍ଦ୍ଦାରପଣିଆ ତାଙ୍କ ବ୍ୟକ୍ତିତ୍ୱକୁ ଆହୁରି ବହୁଗୁଣିତ କରିଥିଲା । ପ୍ରଜା-ରାଜାର ସମ୍ପର୍କକୁ ସେ ସମ୍ମାନ ଦେବା ସହ ପ୍ରଜାମାନଙ୍କର ଉନ୍ନତିକକ୍ଷେ ଧ୍ୟାନ ଦେଉଥିଲେ । ରାଜା ନ ଥାଇ ପ୍ରଜା ନାହିଁ । ତେଣୁ ରାଜାଙ୍କ ସୁରକ୍ଷାରେ ରାଜ୍ୟର ସୁରକ୍ଷା । ରତ୍ନା ନାୟକଙ୍କର ଏକମାତ୍ର ଚିନ୍ତା ପ୍ରଜାକୁଳର ହିତ ସାଧନ । କେନ୍ଦୁଝରର ମାଟିରେ ଫସଲ ଉତ୍ପାଦନ କରିପାରିଲେ ସିନା ରାଜାଙ୍କୁ ଖଜଣା ଦେବେ । ସର୍ଦ୍ଦାର ହିସାବରେ ରତ୍ନା ନାୟକ ତାହା ହିଁ ଦେଖୁଥିଲେ ଏବଂ ନିଜକୁ ମଧ୍ୟ ଜଣେ ସଫଳ କୃଷକ ହିସାବରେ ପ୍ରତିଷ୍ଠିତ କରିପାରିଥିଲେ । କୃଷି ହିଁ ଜୀବନ ଏହି ଚିନ୍ତାଧାରାରେ ରଖି ଭୂୟାଁମାନଙ୍କୁ ସଫଳ କୃଷକ ହେବାର ଦୀକ୍ଷା ଦେଉଥିଲେ । ଖଜଣା ବୃଦ୍ଧି ଏବଂ ପ୍ରଜାମାନଙ୍କ ଉପରେ ଅନ୍ୟାୟ-ଅତ୍ୟାଚାର ବିରୋଧରେ ଅତିଷ୍ଠ ପ୍ରଜାକୁଳ ରତ୍ନା ନାୟକଙ୍କ ନିକଟରେ ଆପତ୍ତି ଅଭିଯୋଗ କରୁଥିଲେ । ରତ୍ନା ନାୟକ ମଧ୍ୟ ଗାଁକୁ ଗାଁ ପରିବାରକୁ ପରିବାର ବୁଲି ସାଧାରଣ ଜନତାର ଦୁଃଖ ବୁଝୁଥିଲେ ଏବଂ ପ୍ରତିକାର କଥା ମଧ୍ୟ ଚିନ୍ତା କରୁଥିଲେ । ଏହି ଅତ୍ୟାଚାର ବିରୋଧରେ ଦାନା ବାନ୍ଧୁଥିବା ଜନ ଅସନ୍ତୋଷର ପ୍ରତିକାର ପାଇଁ ଏବଂ ପ୍ରଜାମାନଙ୍କର ନ୍ୟାୟୋଚିତ ଉଦ୍ଦେଶ୍ୟରେ ରତ୍ନା ନାୟକ ସମସ୍ତ ଆଦିବାସୀ ତଥା ଭୂୟାଁ ସମାଜକୁ ସଚେତନ କରି ଏକଜୁଟ କଲେ । ତାଙ୍କ ଡାକରାରେ ବା ଆହ୍ୱାନରେ ଭୂୟାଁ, ବାଥୁଡ଼ି, ସାଉଁତି, ଗୋଣ୍ଡ, କୋହ୍ଲ, ମୁଣ୍ଡା, ହୋ, ସାନ୍ତାଳ, ଜୁଆଙ୍ଗ ଇତ୍ୟାଦି ବହୁ ଜନଜାତିର ଆଦିବାସୀମାନେ ଚାରିଦିଗରୁ ଏକତ୍ରିତ ହେଉଥିଲେ । ରତ୍ନା ନାୟକଙ୍କର ନିଷ୍ଠାପରତା, ସ୍ୱାର୍ଥପରହୀନତା ପ୍ରଜାଶୋଷଣଭାବ, ଦାୟିତ୍ୱବୋଧ ଓ କର୍ତ୍ତବ୍ୟ ସଚେତନତାର ଉଦ୍‌ବୁଦ୍ଧ ସାଧାରଣ ଜନତା ତାଙ୍କର ନେତୃତ୍ୱକୁ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରୁଥିଲେ ।

୧୮୪୮ ମସିହାରେ ଗଦାଧର ନାରାୟଣ ଭଞ୍ଜଙ୍କ ଶାସନ କାଳରେ ଅନ୍ୟାୟ, ଅତ୍ୟାଚାର, ବେଠି-ବେଗାରି, ଭେଟି ଆଦି ବିରୋଧରେ ଜନଜାଗରଣ ସୃଷ୍ଟି ହୋଇଥିଲା । ଏପରିକି ରତ୍ନା ନାୟକ ରାଜାଙ୍କ କୁଶାସନ ବିରୋଧରେ ସ୍ୱର ଉତ୍ତୋଳନ କରି ୧୮୪୯ ମସିହାରେ ତିନିଦିନ ପାଇଁ କାରାରୁଦ୍ଧ ହୋଇଥିଲେ ।

ରାଜ୍ୟ ଶାସନ କ୍ଷେତ୍ର ଭୂୟାଁ ପିଢ଼ିର ସର୍ଦ୍ଦାରମାନେ ନିଯୁକ୍ତି ପାଆନ୍ତି ଏବଂ ସେମାନଙ୍କର ସର୍ବପ୍ରଧାନ କାମ ହେଲା ରାଜସ୍ୱ ସଂଗ୍ରହ । ରାଜାଙ୍କର ଅଭିଷେକ ପାଇଁ ଗୋଟିଏ ଦିନ ସ୍ଥିର ହୋଇଥାଏ । ରାଜାଙ୍କୁ ସିଂହାସନରେ ବସାଇ ଅଭିଷେକ କରାଇବା ଥିଲା ସେମାନଙ୍କର କାର୍ଯ୍ୟ । ମାତ୍ର ସାମାନ୍ୟ କେତେକ କାରଣରୁ ଭୂୟାଁପିଢ଼ିର ସର୍ଦ୍ଦାରମାନଙ୍କ ପ୍ରତି ରାଜାଙ୍କ ଦୃଷ୍ଟି ଏବଂ ବିଶ୍ୱାସରେ ପରିବର୍ତ୍ତନ ଦେଖାଦେଲା । ପରବର୍ତ୍ତୀ କାଳରେ ସ୍ୱାଭିମାନ ଭୂୟାଁମାନଙ୍କର ଧୈର୍ଯ୍ୟ ଏବଂ ସହନଶୀଳତାକୁ ଅତିକ୍ରମ କଲା । ଅନ୍ୟାୟ–ଅତ୍ୟାଚାର, ବେଠି ବେଗାରି, ଭେଟି ଆଦି ବିରୋଧରେ ଜନଜାଗରଣ ସୃଷ୍ଟି ହେବା ସଙ୍ଗେ ଟିକସ ଇତ୍ୟାଦି ଲାଗୁ କରାଯାଇ ଶସ୍ୟ ବଦଳରେ ଅର୍ଥ ଆକାରରେ ଆଦାୟ କରାଯିବା ଫଳରେ ଜନଅସନ୍ତୋଷ ବୃଦ୍ଧି ପାଇଲା । ପାଇକାଳୀ ବ୍ୟବସ୍ଥା ପ୍ରଚଳନ ଦରିଦ୍ର ପ୍ରଜାମାନଙ୍କର ବେଢ଼ି ଉପରେ କୋରଡ଼ା ମାଡ଼ ସଦୃଶ ହେଲା । ଅମଲାତନ୍ତ୍ର ପ୍ରତାରଣା, ଶସ୍ୟ ପରିବର୍ତ୍ତେ ଟଙ୍କା ଆକାରରେ ରାଜସ୍ୱ ସଂଗ୍ରହ ପ୍ରଜାମାନଙ୍କ ମେରୁଦଣ୍ଡ ଦୋହଲାଇ ଦେଲା । ବେବର୍ତ୍ତା ଗଣି ପଟ୍ଟନାୟକ ଅନ୍ୟାୟ ଟିକସ ବସାଇବା ଫଳରେ ପ୍ରଜାମାନେ ଅସନ୍ତୁଷ୍ଟ ହେଲେ । ଇଂରେଜ ସରକାରଙ୍କର କୂଟ ଉପନିବେଶବାଦ ନୀତି, ରାଜଦରବାର ଏବଂ ଅମଲାତନ୍ତ୍ରର ବୀଭତ୍ସ ପ୍ରଜା ପୀଡ଼ନ, ଅମାନବୀୟ ଶାରୀରିକ ପୀଡ଼ା ଦ୍ୱାରା ବ୍ୟକ୍ତିଗତ ଜୀବନରେ ପ୍ରତ୍ୟେକ ପ୍ରଜା ଅତିଷ୍ଠ ହୋଇ ଉଠିଥିଲେ । ୧୮୫୭ ମସିହାର ଭାରତୀୟ ସିପାହି ଅସନ୍ତୋଷ ସମୟରେ ଗଦାଧର ଭଂଜ ଇଂରେଜୀ ଶାସକମାନଙ୍କର ପ୍ରରୋଚନା ଓ ପ୍ରଲୋଭନରେ ଆସି ନିଜ ମାମୁ ପୋଡ଼ାହାଟର ରାଜା ଅର୍ଜୁନ ସିଂହଙ୍କୁ ବିଶ୍ୱାସଘାତକତା ମାଧ୍ୟମରେ ଇଂରେଜମାନଙ୍କୁ ଧରାଇ ଦେଇଥିଲେ ।

୧୮୬୧ ମସିହା ମାର୍ଚ୍ଚ ୨୨ ତାରିଖରେ କେନ୍ଦୁଝର ମହାରାଜା ଗଦାଧର ଭଞ୍ଜଙ୍କ ସହିତ ମହାରାଣୀ ବିଷ୍ଣୁପ୍ରିୟା କୋଲକତା ନିକଟସ୍ଥ ତ୍ରିବେଣୀକୁ ତୀର୍ଥଭ୍ରମଣ କରିବାକୁ ଯାଇଥିବା ସମୟରେ ସେଠାରେ ରାଜାଙ୍କ ହଠାତ୍ ମୃତ୍ୟୁ ହୋଇଥିଲା । ମହାରାଣୀ ବିଷ୍ଣୁପ୍ରିୟା ଦେବୀଙ୍କ ଗର୍ଭରୁ କୌଣସି ସନ୍ତାନ ନ ଥିଲେ । ମହାରାଣୀ ଅପୁତ୍ରିକ ଥିଲେ । ମହାରାଣୀ ବିଷ୍ଣୁପ୍ରିୟା ଘୋଷଣା କରି କହିଲେ ତାଙ୍କର ପୋଷ୍ୟପୁତ୍ର ମୟୂରଭଞ୍ଜ ମହାରାଜା ଯଦୁନାଥ ଭଂଜଙ୍କର ନାତି ରାଜପୁତ୍ର ବୃନ୍ଦାବନ ଭଂଜକୁ କେନ୍ଦୁଝର ରାଜ୍ୟର ରାଜଗାଦିରେ ଅଧିଷ୍ଠିତ କରାଇବାକୁ ମନସ୍ଥ କରିଥିଲେ । ରାଜାମାନେ ବିବାହ ସମୟରେ ରାଣୀଙ୍କଠାରୁ ବୟସରେ ସାନ ଅନ୍ୟ ଯୁବତୀ ଗଳାରେ ଫୁଲମାଳ ଦେଇ ଅନ୍ତଃପୁରକୁ ନେଇ ଯାଉଥିଲେ । ରାଜ ଅନ୍ତଃପୁରରେ ପରିଚାରିକା ଭାବରେ କାର୍ଯ୍ୟ କରୁଥିଲେ । ଏହିପରି ଫୁଲବିବାହୀ (ଅବିବାହିତା) ପରିଚାରିକାଙ୍କ ଦୁଇ ଦାସୀ ପୁତ୍ର ଥିଲେ ଧନୁର୍ଜ୍ଜୟ ଓ ଚନ୍ଦ୍ରଶେଖର । ମାତ୍ର କେନ୍ଦୁଝର ରାଜ୍ୟର ଦେବାନ୍ ନନ୍ଦଧଳଙ୍କ ନେତୃତ୍ୱରେ ଓ ଦରବାରରେ କେତେଜଣ ଅମଲାଙ୍କର ସହାୟତାରେ ୧୮୬୫ ମସିହା ଏପ୍ରିଲ ୩ ତାରିଖ ଦିନ ମହାରାଜାଙ୍କର ଫୁଲବିବାହୀ ରାଣୀ ନାବାଳକ ସନ୍ତାନ ଧନୁର୍ଜ୍ଜୟଙ୍କୁ ଉତ୍ତରାଧିକାରୀ ବୋଲି ଦାବି କରି ସିଂହାସନରେ ଅଭିଷିକ୍ତ କରାଇଲେ । ଏହିଠାରୁ ବିବାଦର ସୂତ୍ରପାତ ଆରମ୍ଭ ହେଲା । ଇଂରେଜ ସରକାର ମଧ୍ୟ ପଚିଶ୍ ସଓ୍ୱାଲ୍ (Twenty Five Questions) ନୀତି ଅନୁସରଣ କରି ନାବାଳକ ଧନୁର୍ଜ୍ଜୟଙ୍କୁ ରାଜା ବୋଲି ଘୋଷଣା କଲେ । ଏହାର ପ୍ରତିବାଦ କରି ବିଷ୍ଣୁପ୍ରିୟା ୧୮୬୧ ମସିହା ଅପ୍ରେଲ ୯ ତାରିଖ ଦିନ ଓଡ଼ିଶାର ତତ୍କାଳୀନ କମିଶନର ଟମାସ ଏଡ଼ୱାର୍ଡ଼ ରେଭେନସାଙ୍କ ନିକଟରେ ଦରଖାସ୍ତ ଦାଖଲ କଲେ । ଧନୁର୍ଜ୍ଜୟଙ୍କ ସ୍ଥାନରେ ବୃନ୍ଦାବନଙ୍କୁ କେନ୍ଦୁଝରର ରାଜା ବୋଲି ଘୋଷଣା ଦାବି ଉପସ୍ଥାପନ କଲେ । ମାତ୍ର କମିଶନର ବିଷ୍ଣୁପ୍ରିୟାଙ୍କ ଦାବିକୁ ଖାରଜ କରିଦେବା ପରେ କୋଲକାତାସ୍ଥ ହାଇକୋର୍ଟରେ ଅପିଲ କରିଥିଲେ । ସେଠାରେ ମଧ୍ୟ ତାଙ୍କ ଦାବି ନାକଚ ବା ଖାରଜ ହୋଇଯିବାରୁ ଲଣ୍ଡନସ୍ଥିତ ପ୍ରିଭିକାଉନସିଲରେ ଆବେଦନ କଲେ । ତାହା ମଧ୍ୟ ଖାରଜ ହେଲା । ପରେ ତତ୍କାଳୀନ କମିଶନର ଟମାସ୍ ଏଡ଼ୱାଡ଼ ରେଭେନ୍ସା ୧୮୬୭ ମସିହା ଡିସେମ୍ବର ମାସ ୭ ତାରିଖ ଦିନ କଟକରୁ ଶିକ୍ଷା ଲାଭ କରି ଆସିଥିବା ସାବାଳକ ଧନୁର୍ଜ୍ଜୟଙ୍କର ରାଜଗାଦିରେ ପୁନରାଭିଷେକ କରାଇଲେ । ଏହି ଉତ୍ସବରେ ଭୂୟାଁମାନେ ଯୋଗ ଦେଇ ନ ଥିଲେ । ପାଟରାଣୀ ବିଷ୍ଣୁପ୍ରିୟା ମଧ୍ୟ ଜଣେ ସାଧାରଣ ଦାସୀପୁତ୍ର ଫୁଲବିବାହୀ ଗର୍ଭରୁ ଜାତ ଧନୁର୍ଜ୍ଜୟଙ୍କୁ ରାଜା ବୋଲି ସ୍ୱୀକାର କରି ନ ଥିଲେ । ଶେଷରେ ମହାରାଣୀ ବିଷ୍ଣୁପ୍ରିୟା ପୁରୀ ଅଭିମୁଖେ ତୀର୍ଥଭ୍ରମଣ କରିବା ଉଦ୍ଦେଶ୍ୟ ରଖି ଯାତ୍ରାରମ୍ଭ କଲେ । ମାତ୍ର ପୁରୀ ନ ଯାଇ କେନ୍ଦୁଝର ଗଡ଼ ନିକଟସ୍ଥ ଅନତିଦୂରରେ ବସନ୍ତପୁରଠାରେ ରହିଲେ ।

୧୮୨୮ ମସିହାରେ ଇଂରେଜ ସରକାର ସମୟରେ ଗଡ଼ଜାତ ରାଜ୍ୟର ଶାସନ କ୍ଷେତ୍ରରେ ଏକ ନିୟମ ପ୍ରଣୟନ କରିଥିଲେ । ଏହାକୁ ପଚିଶ ସଓ୍ୱାଲ କୁହାଯାଏ । ଏହାର ଦଶମ ଧାରା ଅନୁସାରେ ରାଜାଙ୍କ ଫୁଲବିବାହୀର ସନ୍ତାନ (ଦାସୀପୁତ୍ର) ରାଜ ସିଂହାସନ ଲାଭ କରିପାରିବେ ନାହିଁ । ୧୮୫୮ ମସିହାରେ ଇଂଲଣ୍ଡର ମହାରାଣୀ ଭିକ୍ଟୋରିଆ ଭାରତୀୟ ରାଜାମାନେ ନିଃସନ୍ତାନ ଥିଲେ ପୋଷ୍ୟପୁତ୍ର ଗ୍ରହଣ କରିପାରିବେ ବୋଲି ତାଙ୍କ ଘୋଷଣାନାମାରେ ଉଲ୍ଲେଖ କରିଥିଲେ । ମାତ୍ର ଇଂରେଜ ସରକାର ସେହି ନିୟମର ଉଲ୍ଲଙ୍ଘନ କରି ଧନୁର୍ଜୟ ନାରାୟଣ ଭଞ୍ଜଙ୍କୁ ଗାଦିନସିନ କରାଇଥିବାରୁ ସାଧାରଣ ଜନତାଙ୍କ ଭିତରେ ବିଶେଷ କରି ଭୂୟାଁ ଜନଜାତି ମଧ୍ୟରେ ତୀବ୍ର ଅସନ୍ତୋଷ ଦେଖା ଦେଇଥିଲା । କେନ୍ଦୁଝରର ରାଜପରମ୍ପରା ଓ ରାଜଶାସନ ସହ ଭୂୟାଁମାନେ ବହୁ ପ୍ରାଚୀନ କାଳରୁ ଘନିଷ୍ଠ ଭାବେ ସମ୍ପୃକ୍ତ ଥିଲେ । ରାଜାଙ୍କ ଅଭିଷେକ ସମୟରେ ଭୂୟାଁମାନେ ତାଙ୍କର ନେତା ବା ମହାନାୟକ  ନିଜର ଦୁଇ ଆଣ୍ଠୁ ଓ ଦୁଇ ହାତର ଭରା ଦେଇ ଘୋଡ଼ା ପରି ଆଣ୍ଠେଇ ରାଜା ତାଙ୍କ ପିଠିରେ ବସି ପ୍ରଥମେ ଅଭିଷିକ୍ତ ହେଉଥିଲେ । ଏହି ପରମ୍ପରା କେନ୍ଦୁଝରର ପ୍ରଥମ ରାଜା ଜ୍ୟୋତିଭଞ୍ଜଙ୍କ ସମୟରୁ ପ୍ରଚଳିତ ହୋଇ ଆସୁଥିଲା । ଏଥିରୁ ରାଜପରମ୍ପରା ସହ ଭୂୟାଁମାନଙ୍କର ଘନିଷ୍ଠତା ସହଜେ ଅନୁମାନ କରାଯାଇଥାଏ । କେନ୍ଦୁଝରର ପ୍ରଥମ ରାଜା ଜ୍ୟୋତି ଭଞ୍ଜଙ୍କ ସମୟରୁ ଭୂୟାଁମାନେ ପାଇଆସୁଥିବା ସୁବିଧା ସୁଯୋଗ କ୍ରମେ ଅମଲାମାନଙ୍କ ଚକ୍ରାନ୍ତରେ ଏମାନେ ବହୁତ କିଛି ହରାଇ ବସିଲେ । ରାଜା ଧନୁର୍ଜୟଙ୍କ ସମୟରେ ଏହା ଚରମ ସୀମାରେ ପହଞ୍ଚିଥିଲା । ତେଣୁ ଭୂୟାଁମାନେ ରାଜାଙ୍କ କୁଶାସନରେ ଅତିଷ୍ଠ ହୋଇ ରହିଥିଲେ । ବ୍ରିଟିଶ ସରକାରଙ୍କ ସ୍ୱେଚ୍ଛାଚାରୀ ନିଷ୍ପତ୍ତି ସେମାନଙ୍କୁ ଅଧିକ ଆଘାତ ଦେଇଥିଲା । ସେମାନେ ବସନ୍ତପୁରରେ ମହାରାଣୀଙ୍କୁ ସାକ୍ଷାତ୍ କରି ତାଙ୍କ ପ୍ରତି ସମର୍ଥନ ଜ୍ଞାପନ କରିଥିଲେ । ରାଣୀ ମର୍ମାହତ ହୋଇ ରହିଥିବା ସମୟରେ କିପରି ଧନୁର୍ଜୟଙ୍କୁ ବିତାଡ଼ିତ କରି ବୃନ୍ଦାବନ ଭଞ୍ଜଙ୍କୁ ରାଜା କରାଯିବ ତାହା ତାଙ୍କର ଏକମାତ୍ର ଚିନ୍ତା ଥିଲା । ଏଥିରେ ସହାୟତା ଦେବା ପାଇଁ ମୟୂରଭଞ୍ଜ ରାଜା କୃଷ୍ଣଚନ୍ଦ୍ର ଭଞ୍ଜ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ରାଣୀ ଉପଲବ୍ଧି କରିଥିଲେ ଯେ ଇଂରେଜ ସରକାର ବିରୋଧରେ ସଂଗ୍ରାମ କରିବା ପାଇଁ ହେଲେ ଭୂୟାଁ ପ୍ରଜାମାନଙ୍କର ସହାୟତା ଦରକାର । ତେଣୁ ରାଣୀ ଗୋପନୀୟ ଭାବେ ଭୂୟାଁମାନଙ୍କ ସର୍ଦ୍ଦାର ରତ୍ନା ନାୟକ ସହିତ ଯୋଗସୂତ୍ର ସ୍ଥାପନ କରିଥିଲେ ।

ଭଞ୍ଜ ବଂଶର ଚିରାଚରିତ ପ୍ରଥା ଅନୁସାରେ ଭୂୟାଁମାନେ ନୂତନ ରାଜାଙ୍କୁ ଅଭିଷେକ କରାଇ ରାଜଗାଦିରେ ବସାଇବା କଥା ମାତ୍ର ଧନୁର୍ଜୟ ନାରାୟଣ ଭଞ୍ଜଦେଓ ରାଜଗାଦିରେ ବସିବା ସମୟରେ ସେପରି ପରମ୍ପରାକୁ ବନ୍ଦ କରାଗଲା । ଫଳରେ ଭୂୟାଁମାନେ ଉତ୍ୟକ୍ତ ହୋଇ ରାଜତନ୍ତ୍ର ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ । ବିଶ୍ୱାସଘାତକ ଚନ୍ଦ୍ରଶେଖର ଧଳ ଦେଶଦ୍ରୋହୀ ସାଜି ସିପାହି ବିଦ୍ରୋହ ସମୟରେ ବ୍ରିଟିଶ୍ ସରକାରଙ୍କୁ ସମର୍ଥନ କରି ରାୟବାହାଦୁର ଉପାଧି ସହ ମାସିକ ଅଧିକ ୨୦୦ ଟଙ୍କା ଭତ୍ତା ପାଇଲେ । ଏହାଛଡ଼ା ୧୮୫୮ରେ ଜମି ବନ୍ଦୋବସ୍ତ ପ୍ରଜାଙ୍କର ହିତକର ନ ଥିଲା । ଯାହା ଫଳରେ ପ୍ରଜା ଅସନ୍ତୋଷ ବୃଦ୍ଧିର କାରଣ ହେଲା । ଭୂୟାଁ ପିଢ଼ିରେ ଅଣଭୂୟାଁ ସର୍ଦ୍ଦାର ଏବଂ ରାଜସ୍ୱ ସଂଗ୍ରହ ନିମନ୍ତେ ଅଣଭୂୟାଁମାନଙ୍କୁ ନିଯୁକ୍ତି ଫଳରେ ଆନ୍ଦୋଳନର ରୂପ ନେଇଥିଲା । ଭୂୟାଁମାନେ ରାଜଦରବାରରେ ଯେଉଁ କାମଧନ୍ଦା କରୁଥିଲେ ସେ ସବୁ ଧୀରେ ଧୀରେ ତାଙ୍କ ହାତରୁ ଛଡ଼ାଇ ନେଇ କ୍ଷମତା ଉଠାଇ ଦିଆଗଲା । ତାଙ୍କ ବଦଳରେ ଅଣ ଆଦିବାସୀ ନିଯୁକ୍ତି ପାଇଲେ । ଏହି ସବୁ କାରଣରୁ ରାଜାଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ଭୂୟାଁ ପ୍ରଜାମାନେ ଅଗ୍ରସର ହେଲେ ।

ଧନୁର୍ଜୟଙ୍କ ପୁନରାଭିଷେକର ଅଳ୍ପ ଦିନ ପରେ ୧୮୬୮ ମସିହା ଜାନୁୟାରୀ ୧୬ ତାରିଖରେ ଭୂୟାଁ, ଜୁଆଙ୍ଗ, କୋହ୍ଲ, ମୁଣ୍ଡା, ହୋ, ବାଥୁଡ଼ି, ସାଉଁତି, ସାନ୍ତାଳ, ଗଣ୍ଡ ଇତ୍ୟାଦି ସର୍ଦ୍ଦାରମାନେ ଏକତ୍ର ହୋଇ ଇଂରେଜ ସରକାରଙ୍କ ନୀତିର ଦୃଢ଼ ମୁକାବିଲା କରିବାକୁ ବଜ୍ର ଶପଥ ନେଲେ । ଏଥିରେ ରତ୍ନା ନାୟକଙ୍କ ଉପରେ ସମସ୍ତ ନେତୃତ୍ୱ ନ୍ୟସ୍ତ କରାଗଲା । ରେଭେନ୍‌ସା ସାହେବଙ୍କୁ ଏହା ଅଛପା ରହିଲା ନାହିଁ । ସେ ବିଦ୍ରୋହକୁ ଭଣ୍ଡୁର କରିବା ପାଇଁ ଯୋଜନା କଲେ । ମହାରାଣୀ ବିଷ୍ଣୁପ୍ରିୟା ଥିଲେ ଷଢ଼େଇକଳା ରାଜାଙ୍କ ନିକଟ ସମ୍ପର୍କୀୟ । ଷଢ଼େଇକଳା ରାଜା ବିଷ୍ଣୁପ୍ରିୟାଙ୍କୁ ପ୍ରଭାବିତ କରିବାକୁ ଛୋଟନାଗପୁରର କମିଶନଙ୍କୁ ରେଭେନ୍‌ସା ପରାମର୍ଶ ଦେଲେ । ଛୋଟନାଗପୁର କମିଶନରଙ୍କ ଚାପରେ ଷଢ଼େଇକଳା ରାଜା ବିଷ୍ଣୁପ୍ରିୟାଙ୍କୁ ପ୍ରଭାବିତ କରିବାରେ ସଫଳ ହେଲେ । ଅର୍ଥ ଓ କ୍ଷମତାର ମୋହରେ ସମ୍ଭବତଃ ବିଷ୍ଣୁପ୍ରିୟା

ପ୍ରଲୋଭିତ ହୋଇଥିଲେ । ୧୮୬୮ ମସିହା ଫେବୃୟାରୀ ୧୭ ତାରିଖରେ ପୁଣି ଥରେ ଧନୁର୍ଜୟଙ୍କ ଅଭିଷେକ ହେଲା । ବିଷ୍ଣୁପ୍ରିୟା ପୁରସ୍କାରସ୍ୱରୂପ ମାସିକ ୫୫୦ ଟଙ୍କା ଭତ୍ତା ଓ ଗ୍ରାମଟିଏ ପାଇଲେ । ଗ୍ରାମରୁ କରସ୍ୱରୂପ ମାସିକ ୫୦ ଟଙ୍କା ପାଇବା ପାଇଁ ବ୍ୟବସ୍ଥା ହେଲା ।

ରାଣୀଙ୍କ ବିଶ୍ୱାସଘାତକତା ରତ୍ନା ଓ ତାଙ୍କ ବିପ୍ଳବୀ ବନ୍ଧୁମାନଙ୍କୁ ଅଧିକ ଉତ୍‌କ୍ଷିପ୍ତ କରିଥିଲା । ପରିଣାମ ପ୍ରତି ଭ୍ରୂକ୍ଷେପ ନ କରି ମହାରାଣୀଙ୍କ ବିଶ୍ୱାସଘାତକତା ଓ ଇଂରେଜ ସରକାରଙ୍କ ସ୍ୱେଚ୍ଛାଚାରିତା ବିରୋଧରେ ସଂଗ୍ରାମ କରିବାକୁ ଶପଥ ନେଲେ । ରତ୍ନା ନାୟକ ସହ ନନ୍ଦ ନାୟକ, ନନ୍ଦ ପ୍ରଧାନ, ବାବୁ ନାୟକ, ଦାଶରଥି କୁଅଁର, ଟୁନା ନାୟକ ଓ ପଦୁ ନାୟକ ପ୍ରମୁଖ ସ୍ୱାଧୀନଚେତା ନେତା ଭୂୟାଁ ସର୍ଦ୍ଦାର ଯୋଗ ଦେଲେ । ୧୮୬୮ ମସିହା ଅପ୍ରେଲ ୨୧ ତାରିଖରେ ଇଂରେଜ ସରକାରଙ୍କ ବିରୋଧରେ ଏମାନେ ଖୋଲାଖୋଲି ବିଦ୍ରୋହ କଲେ । ସେହି ବର୍ଷ ସେହି ମାସ ଅପ୍ରେଲ ୨୮ ତାରିଖରେ ବିଦ୍ରୋହୀମାନେ ଧନୁ, ତୀର, ଟାଙ୍ଗିଆ, କୁରାଢ଼ି ଓ ବର୍ଚ୍ଛା ପ୍ରଭୃତି ତୀକ୍ଷ୍ଣ ଅସ୍ତ୍ର ଶସ୍ତ୍ର ଧରି କେନ୍ଦୁଝର ଗଡ଼ରେ ପହଞ୍ଚିଲେ । ଭୂୟାଁଙ୍କ ସହ ସମସ୍ତ ଆଦି ସମ୍ପ୍ରଦାୟର ଲୋକମାନେ ଯୋଗ ଦେଇଥିଲେ । ବିଦ୍ରୋହୀଙ୍କ ସଂଖ୍ୟା ଥିଲା ପ୍ରାୟ ୨୦,୦୦୦ । ସେମାନେ ଦେୱାନ ନନ୍ଦ ଧଳଙ୍କୁ ହତ୍ୟା କରି ବୃନ୍ଦାବନ ଭଞ୍ଜଙ୍କୁ ରାଜଗାଦିରେ ବସାଇଥିଲେ । ରାଜା ଧନୁର୍ଜୟଙ୍କୁ ବନ୍ଦୀ କରିବା ସହ ରାଜନଅରରୁ ପ୍ରାୟ ୧୦୦ ଜଣ ଅମଲାକୁ ମଧ୍ୟ ବନ୍ଦୀକରି ଜଙ୍ଗଲକୁ ନେଇଗଲେ ।

ବିଦ୍ରୋହୀଙ୍କ ସାହସ ଓ ପରାକ୍ରମ ଦେଖି ସମ୍ଭବତଃ ରାଣୀ ବିଷ୍ଣୁପ୍ରିୟା ପ୍ରଲୋଭିତ ହୋଇ ବିଦ୍ରୋହୀଙ୍କ ପକ୍ଷ ସମର୍ଥନ କରିଥିଲେ । ବିଷ୍ଣୁପ୍ରିୟାଙ୍କ ସମର୍ଥନ ପାଇ ବିଦ୍ରୋହୀମାନେ ଅଧିକ ଉତ୍ସାହିତ ହୋଇପଡ଼ିଥିଲେ । ଏହି ବିଦ୍ରୋହରେ ମୟୂରଭଞ୍ଜର ମହାରାଜା ଓ ମହାରାଣୀ ବିଷ୍ଣୁପ୍ରିୟାଙ୍କ ପ୍ରଚ୍ଛନ୍ନ ହାତ ଥିବାର ସନ୍ଦେହ କରି ରେଭେନ୍‌ସା ସାହେବ ସେମାନଙ୍କୁ ବିଦ୍ରୋହୀଙ୍କୁ ସାହାଯ୍ୟ ନ କରିବାକୁ ନିର୍ଦ୍ଦେଶ ଦେଲେ । ବିଦ୍ରୋହ ଦମନ ପାଇଁ ୧୮୬୮ ମେ ମାସ ୭ ତାରିଖରେ ସିଂହଭୂମିର ଡେପୁଟି କମିଶନର ହେଡ୍ କେନ୍ଦୁଝରକୁ ଆସି ବନ୍ଦୀ ମହାରାଜା ଧନୁର୍ଜୟ ଓ ଅମଲାଙ୍କୁ ମୁକ୍ତ କରିଥିଲେ । ତା'ପରେ ରତ୍ନାକୁ ଗିରଫ କରିବାକୁ ତାଙ୍କ ଗ୍ରାମକୁ ଯାଇଥିଲେ ଏବଂ ତାଙ୍କ ଗ୍ରାମରେ ରତ୍ନାକୁ ନ ପାଇ ନିରାଶ ହୋଇ ଫେରିଥିଲେ । ସିଂହଭୂମିର ଡେପୁଟି କମିଶନର ହେଡ୍ ଘୋଷଣା କରିଥିଲେ ଯେ ବିଦ୍ରୋହୀମାନେ ଆତ୍ମସମର୍ପଣ କଲେ ରାଜକ୍ଷମା ଦିଆଯିବାର ପ୍ରଲୋଭନ ଦେଖାଇଥିଲେ । ମାତ୍ର ବିଦ୍ରୋହୀମାନେ ତାଙ୍କ କଥାକୁ ଭ୍ରୂକ୍ଷେପ ନ କରି ଇଂରେଜ ସରକାରଙ୍କ ବିରୋଧରେ ସଂଗ୍ରାମ ଅବ୍ୟାହତ ରଖିଥିଲେ । ସେମାନେ ବହୁ ବ୍ରିଟିଶ ଫୌଜଙ୍କୁ ବନ୍ଦୀ କରିବା ସହ କଟକରୁ ଚାଇଁବସା ମଧ୍ୟରେ ଡାକ ସଂଯୋଗ ଛିନ୍ନ କରି ଦେଇଥିଲେ । ଶେଷରେ ରେଭେନ୍‌ସା ବଙ୍ଗଳାର ଲେଫ୍ଟନାଣ୍ଟ ଜେନେରାଲଙ୍କୁ ମୟୂରଭଞ୍ଜର ମହାରାଜାଙ୍କୁ ବିଦ୍ରୋହୀମାନଙ୍କୁ ସାହାଯ୍ୟରୁ ନିବୃତ୍ତ ରହିବାକୁ ନିର୍ଦ୍ଦେଶ ଦେବାକୁ ଅନୁରୋଧ କଲେ । ଶେଷରେ ମୟୂରଭଞ୍ଜ ମହାରାଜା ବିରୁଦ୍ଧାଚରଣ ନ କରି ବିଦ୍ରୋହୀଙ୍କୁ ସହାୟତା ପ୍ରଦାନ କଲେ ନାହିଁ । ବରଂ ବିଦ୍ରୋହ ଦମନ ପାଇଁ ଇଂରେଜମାନଙ୍କୁ ସହାୟତା କରିଥିଲେ ଏବଂ ବୃନ୍ଦାବନ ଭଞ୍ଜଙ୍କୁ ବାଲେଶ୍ୱରଠାର ନଜରବନ୍ଦୀ କରି ରଖାଗଲା ।

ଏହାସତ୍ତ୍ୱେ ବିଦ୍ରୋହୀଙ୍କ ଅଗ୍ନି ପ୍ରଶମିତ ହେଲା ନାହିଁ । ସିଂହଭୂମିର ପୋଲିସ୍ ତତ୍ତ୍ୱାବଧାରକ ରିଚିଡ଼ି କେତେକ ସୈନ୍ୟ ଧରି ଆସୁଥିବାବେଳେ ଆନନ୍ଦପୁରଠାରେ ବିଦ୍ରୋହୀଙ୍କ ସମ୍ମୁଖୀନ ହୋଇ ନ ପାରି ଆଗକୁ ଅଗ୍ରସର ହୋଇପାରିଲେ ନାହିଁ । ମାତ୍ର ଚାଇଁବସାରୁ ମେଜର ଗାଗାହମ ଓ ଛୋଟନାଗପୁରର ଲେଫ୍ଟନାଣ୍ଟ ହଣ୍ଟର କେତେକ ସୈନ୍ୟ ଧରି କେନ୍ଦୁଝରରେ ପହଞ୍ଚିଲେ । ଛୋଟନାଗପୁରର କମିଶନର କର୍ଣ୍ଣେଲ ଡାଲଟନ ଓ ମାନ୍ଦ୍ରାଜୀ ସୈନ୍ୟ ଧରି କମିଶନର ରେଭେନ୍‌ସା କେନ୍ଦୁଝରରେ ପହଞ୍ଚିଲେ । ଜୁନ ଓ ଜୁଲାଇ ମାସ ବେଳକୁ କେନ୍ଦୁଝରଗଡ଼ ସେନାଛାଉଣୀରେ ପରିଣତ ହୋଇଗଲା । ବିଦ୍ରୋହୀଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷରେ ସାହାଯ୍ୟ କଲେ କଠୋର ଦଣ୍ଡରେ ଦଣ୍ଡିତ କରାଯିବ ବୋଲି ସରକାର ୧୮୬୮ ମେ ମାସ ୨୭ ତାରିଖରେ ବିଜ୍ଞପ୍ତି ଜାରି କରି ଲୋକଙ୍କୁ ସତର୍କ କରିଦେଇଥିଲେ । ବ୍ରିଟିଶ୍ ସୈନ୍ୟମାନେ ବିଦ୍ରୋହୀଙ୍କ ଉପରେ ଅକଥ୍ୟ ଦମନଲୀଳା ଆରମ୍ଭ କରିଦେଲେ । ସେମାନଙ୍କ ଘରେ ନିଆଁ ଲଗାଇ ଦେଲେ । ଦୀର୍ଘଦିନ ଧରି ସଂଗ୍ରାମରତ ବିଦ୍ରୋହୀମାନେ କ୍ଳାନ୍ତ, ଶ୍ରାନ୍ତ ହୋଇ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଇଂରେଜ ସୈନ୍ୟଙ୍କ ସମ୍ମୁଖୀନ ହୋଇ ନ ପାରି ଆତ୍ମ ସମର୍ପଣ କଲେ । ମାତ୍ର ରତ୍ନା ନାୟକ ଓ ନନ୍ଦ ନାୟକ ଆତ୍ମସମର୍ପଣ ନ କରି ଲୁଚିଛପି ଇଂରେଜଙ୍କ ବିରୋଧରେ ସଂଗ୍ରାମ ଜାରି ରଖିଲେ । କିନ୍ତୁ ୧୮୬୮ ମସିହା ଅଗଷ୍ଟ ମାସ ୧୫ ତାରିଖରେ ପାଲଲହଡ଼ାର ଜମିଦାର ମୁନିପାଳ ରତ୍ନାଙ୍କୁ

ଇଂରେଜ ସରକାରଙ୍କୁ ଧରାଇ ଦେଇଥିଲେ । ବଣାଇ ରାଜାଙ୍କ ଦେବାନଙ୍କ ଦ୍ୱାରା ନନ୍ଦ ନାୟକ ଧରା ପଡ଼ିଥିଲେ । ଅଗଷ୍ଟମାସ ଶେଷ ଆଡ଼କୁ ସମସ୍ତ ବିଦ୍ରୋହୀ ଧରା ପଡ଼ି ସାରିଥିଲେ । ରତ୍ନା ନାୟକଙ୍କୁ ଧରାଇ ଦେଇ ପାଲଲହଡ଼ାର ଜମିଦାର ମନିପାଳ ରାୟ ବାହାଦୁର ଉପାଧି ଲାଭ କରିଥିଲେ । ରାଣୀ ବିଷ୍ଣୁପ୍ରିୟାଙ୍କୁ କଟକକୁ ପଠାଗଲା । ଟି.ଇ. ରେଭେନ୍‌ସା ସାହେବ ୧୮୩ ଜଣ ବିଦ୍ରୋହୀ ବନ୍ଦୀଙ୍କର ବିଚାର କରି ରତ୍ନା ନାୟକ, ନନ୍ଦ ନାୟକ, ପଦୁ ନାୟକ, ଦଶରଥ କୁଅଁର, ଟୁନି ପ୍ରଧାନ, ବୈରାଗୀ କୋହ୍ଲ, ବୈକୁଣ୍ଠ କୋହ୍ଲ, ମାର୍ଗଶିର କୋହ୍ଲ ପ୍ରଭୃତିଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରିବା ସଙ୍ଗେ ସଙ୍ଗେ ୨୭ ଜଣ ବିଦ୍ରୋହୀଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର (କଳାପାଣି) ପଠାଗଲା ଏବଂ ନନ୍ଦ ପ୍ରଧାନ ଓ ଅନ୍ୟମାନଙ୍କୁ ବିଭିନ୍ନ କାରାଦଣ୍ଡରେ ଦଣ୍ଡିତ କରିଥିଲେ । ମହାରାଣୀ ବିଷ୍ଣୁପ୍ରିୟା ପେନ୍‌ସନ୍ ପାଇ ପୁରୀରେ ଜୀବନ କଟାଇଲେ । ଯଦି ମୟୂରଭଞ୍ଜ ରାଜା ମତ ପରିବର୍ତ୍ତନ କରି ନ ଥାଆନ୍ତେ କିମ୍ବା ପଡ଼ୋଶୀ ରାଜ୍ୟର ରାଜାମାନେ ଇଂରେଜମାନଙ୍କୁ ସହାୟତା ଦେଇ ନ ଥାଆନ୍ତେ ତେବେ ରତ୍ନା ନାୟକ ଯେ ଓଡ଼ିଶାରେ ଇଂରେଜ ଶାସନର ଭିତ୍ତିକୁ ଦୋହଲାଇ ଦେଇଥାଆନ୍ତେ ଏଥିରେ ସନ୍ଦେହ ନାହିଁ ।

ଇଂରେଜ ସରକାର ଲେଫ୍ଟନାଣ୍ଟ ଜନଷ୍ଟୋନ୍‌ଙ୍କୁ ଧନୁର୍ଜୟଙ୍କ ପକ୍ଷରୁ ରାଜ୍ୟ ଶାସନ କରିବାକୁ ନିଯୁକ୍ତି ଦିଆଗଲା । ବିଦ୍ରୋହ ଦମନ ପାଇଁ ଇଂରେଜ ସରକାରଙ୍କୁ ୧, ୩୦,୩୭୭ ଟଙ୍କା ୨୦ ପଇସା କ୍ଷତି ପୂରଣ ଦେବାକୁ ଧାର୍ଯ୍ୟ ହୋଇଥିଲା । ଧାର୍ଯ୍ୟ ଅର୍ଥର ଅର୍ଦ୍ଧେକ ମୟୂରଭଞ୍ଜ ମହାରାଜା ଏକଚତୁର୍ଥାଂଶ କର୍ତ୍ତୃପକ୍ଷ ଓ ଅବଶିଷ୍ଟ ଏକ ଚତୁର୍ଥାଂଶ ସାଲିଆନା କର ବସାଇ କେନ୍ଦୁଝର ଜନସାଧାରଣଙ୍କଠାରୁ ଆଦାୟ କରାଯିବାର ସ୍ଥିରୀକୃତ ହୋଇଥିଲା । ଇଣ୍ଡିଆନ୍ ଡେଲି ନ୍ୟୁଜ୍ ଭଳି ପତ୍ରିକା ତତ୍‌କାଳୀନ ଇଂରେଜ ସରକାରଙ୍କ ଭୁଲ୍ ନିଷ୍ପତ୍ତି ବିରୋଧରେ କେନ୍ଦୁଝରର ରାଜାଙ୍କୁ ହାଇକୋର୍ଟ ଯଥାଯଥ ଉତ୍ତରାଧିକାରୀ ସ୍ଥିର କରିଥିଲେ ହେଁ ନ୍ୟାଯ୍ୟ ପୁତ୍ର ନୁହନ୍ତି । ରୟତମାନେ କୁହନ୍ତି ତାଙ୍କୁ ରାଜା ବୋଲି ମାନିବେ ନାହିଁ ଏବଂ ପ୍ରଥମ ରାଜା ଅନ୍ୟ କାହାରିକୁ ରାଜା ନିଯୁକ୍ତି କରନ୍ତି ବୋଲି ପ୍ରକାଶ କରିବା ସହ ଅଯଥା ରକ୍ତପାତ ଧନହାନିରୁ ନିବୃତ୍ତ ରହିବାକୁ ପରାମର୍ଶ ଦେଇଥିଲେ । ମାତ୍ର ୪୮ ବର୍ଷ ବୟସରେ ୧୮୬୮ ମସିହା ନଭେମ୍ବର ୨୮ ତାରିଖ ସୋମବାର ଦିନ କଟକ ଜେଲ୍‌ରେ ସର୍ଦ୍ଦାର ରତ୍ନା ନାୟକ ଓ ଅନ୍ୟମାନଙ୍କୁ ଫାଶୀ ଦିଆଗଲା । ଫାଶୀ ପାଇ ନିର୍ବାସିତ ହେଲା ଜଣେ ମହାନ୍ ବିପ୍ଲବୀ ଶହୀଦ ରତ୍ନା ନାୟକଙ୍କ ଜୀବନ ପ୍ରଦୀପ; ମାତ୍ର ତାଙ୍କ ସ୍ମୃତିର ଅନିର୍ବାଣ ଶିଖା ଜନତା ପ୍ରାଣରୁ କେବେହେଲେ ନିର୍ବାସିତ ହୋଇ ନାହିଁ ଶହୀଦ ରତ୍ନା ନାୟକଙ୍କର ।

ସେ ୪୮ ବର୍ଷ ବୟସରେ ଶହୀଦ ହୋଇ ଭୂୟାଁ ଜାତି ଓ ପରମ୍ପରାର ଆଦର୍ଶ ହୋଇ ରହିବେ । ରତ୍ନା ନାୟକ ଫାଶୀ ପାଇବା ପରେ ମଧ୍ୟ ତାଙ୍କର ଆଦର୍ଶ, ତାଙ୍କ ତ୍ୟାଗ, ତାଙ୍କ ବାଣୀ, ତାଙ୍କ ସ୍ୱାଭିମାନ ଭୂୟାଁ ଜାତିକୁ ପଥ ପ୍ରଦର୍ଶନ ଦେଇଆସିଛି ।

ଏହିଭଳି ମହାନ୍ ବିପ୍ଳବୀରୁ ଶହୀଦ ହୋଇଥିବା ରତ୍ନା ନାୟକ ଭଞ୍ଜବଂଶର ଚିରାଚରିତ ପ୍ରଥାର ବ୍ୟତିକ୍ରମ ବିରୋଧରେ ସ୍ୱର ଉତ୍ତୋଳନ କରି ଭୂୟାଁ ଆଦିବାସୀମାନଙ୍କ ଉପରେ ଅତ୍ୟାଚାର ବିରୋଧରେ ବିଦ୍ରୋହ କରି ଇଂରେଜ ଶାସନର ମନୋମୁଖୀ କାର୍ଯ୍ୟକୁ ବିରୋଧ କରି ଫାଶୀ ପାଇଛନ୍ତି । ଆଜି ରତ୍ନା ନାୟକ ଜଣେ ଶହୀଦ ହୋଇ ତାଙ୍କର ଆଦର୍ଶ କେବଳ ଭୂୟାଁ ସମାଜକୁ ନୁହେଁ ଅନ୍ୟମାନଙ୍କ ପ୍ରତି ଆଦର୍ଶ ହୋଇ ରହିବେ ଏଥିରେ ସନ୍ଦେହ ନାହିଁ ।



ପୂର୍ବତନ ସଭାପତି
ମୟୂରଭଞ୍ଜ ଜିଲ୍ଲା ଖାଉଟି ବିବାଦ ପ୍ରତିକାର ଅଦାଲତ,
ଗ୍ରାମ/ପୋଅ : ଖୁଚିଂ, ବାରିପଦା,
ମୟୂରଭଞ୍ଜ-୭୫୭୦୩୯

# ଅନନ୍ୟ ସଂଗ୍ରାମୀ ବୈଦ୍ୟନାଥ

**କୃଷ୍ଣଚନ୍ଦ୍ର ସୁଆର**

ମୁକ୍ତି ସଂଗ୍ରାମୀ ଭାବରେ ଯେ ପେନ୍‌ସନ୍ ଗ୍ରହଣର ଘୋର ବିରୋଧୀ ଥିଲେ ଏବଂ ଦେଶ ପାଇଁ କିଛି ଜାତୀୟ କର୍ତ୍ତବ୍ୟ ଓ ତ୍ୟାଗ ବିନିମୟରେ ଦେଶପାଣ୍ଠିରୁ କିଛି ଭତ୍ତା ଗ୍ରହଣ କରିବାକୁ ଯାହାଙ୍କ ବିବେକ ବାଧା ଦେଇଥିଲା ଏବଂ ଏଥିପାଇଁ ଆବେଦନ କରିବାରୁ ଯେ ନିବୃତ୍ତ ରହି ବିରଳ ଦୃଷ୍ଟାନ୍ତ ରଖିଯାଇଛନ୍ତି ସେ ହେଉଛନ୍ତି ପ୍ରଥିତଯଶା ସଂଗ୍ରାମୀ ବୈଦ୍ୟନାଥ ପାଣିଗ୍ରାହୀ ।

ଜଣେ ସ୍ୱାଧୀନଚେତା, ନୀତିନିଷ୍ଠ ଓ ଗାନ୍ଧିବାଦୀ ମଣିଷ ଭାବରେ ସେ ଥିଲେ ସବୁରି ପ୍ରିୟ ଓ ପରିଚିତ । ତାଙ୍କ ଆଦର୍ଶ ବ୍ୟକ୍ତିତ୍ୱ, ସାରସ୍ୱତ ସାଧନା ଓ ତ୍ୟାଗ ଜାତିସ୍ମର ।

୧୯୪୦ ମସିହାରେ ମାତ୍ର ୧୬ ବର୍ଷ ବୟସରେ ସେ ରସୁଲକୁଣ୍ଡା ବିଦ୍ୟାଳୟରେ ନବମ ଶ୍ରେଣୀ ଅଧ୍ୟୟନବେଳେ ବିଦ୍ୟାଳୟ ପରିସରରେ ୟୁନିୟନ୍ ଜ୍ୟାକ୍ (ଇଂରେଜ ପତାକା) ପୋଡ଼ି ପୋଲିସ୍ ଆଖିରେ ଧୂଳି ଦେଇ ଖସି ଯାଇଥିଲେ । ଏହା ଥିଲା ତାଙ୍କର ଅପୂର୍ବ ଦେଶପ୍ରେମ ଓ ଦୁଃସାହସିକତାର ଚରମ ନିଦର୍ଶନ । ଏଥିରେ ତାଙ୍କ ସହପାଠୀ ବନ୍ଧୁ ଗିରିଜାଭୂଷଣ ପଟ୍ଟନାୟକ ସହାୟତା କରିଥିଲେ । ସେଥିପାଇଁ ଉଭୟେ ସରକାରୀ ଆକ୍ରୋଶର ଶିକାର ହୋଇଥିଲେ ଓ ସେ ଗିରିଫଦାରୀକୁ ଏଡ଼ାଇବାକୁ ଯାଇ ଦୁଇମାସ ଅଜ୍ଞାତବାସ କରିବା ସଙ୍ଗେ ସଙ୍ଗେ ସଂଗ୍ରାମୀ ବନ୍ଧୁ ହରିହର ପତି, ଗିରିଜା ପଟ୍ଟନାୟକ, ମାଗୁଣୀ ଦାସ, ନାରାୟଣ ପାତ୍ର, ବଳରାମ ପଣ୍ଡା ପ୍ରଭୃତିଙ୍କ ସହ ମିଶି ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇ ସ୍ୱଦେଶୀ ବସ୍ତ୍ର ପରିଧାନ, ନିଶା ନିବାରଣ ଓ ପିକେଟିଂ କରିଥିଲେ । ସେହିପରି ଶଶିଭୂଷଣ ରଥ, ଶ୍ରୀହର୍ଷ ମିଶ୍ର, ବାଞ୍ଛାନିଧି ପଟ୍ଟନାୟକଙ୍କ ସହ ମିଶି ଓଡ଼ିଆ ଆନ୍ଦୋଳନରେ ସାମିଲ ହୋଇଥିଲେ । ଘୁମୁସର ସଂଗ୍ରାମୀ ସ୍ୱର୍ଗତଃ ମହାଦେବ ପଣ୍ଡାଙ୍କ ପ୍ରତ୍ୟକ୍ଷ ପ୍ରେରଣା ତାଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ପାଇଁ ପ୍ରଭାବିତ କରିଥିଲା । ଏତଦ୍‌ବ୍ୟତୀତ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ଆହ୍ୱାନ ତାଙ୍କୁ ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆକୃଷ୍ଟ କରିଥିଲା ।

ମହାତ୍ମାଜୀଙ୍କ ଓଡ଼ିଶା ଆଗମନ ବେଳେ ସେ ପଦଯାତ୍ରାରେ ଯୋଗ ଦେଇଥିଲେ । ଗାନ୍ଧୀ ଦର୍ଶନ ତାଙ୍କ ପାଇଁ ସାରାଜୀବନ ଅବିସ୍ମରଣୀୟ ହୋଇ ରହିଥିଲା । ଓଡ଼ିଶାର ବିଶିଷ୍ଟ ଜନନେତା ଓ ସଂଗ୍ରାମୀମାନଙ୍କ ମଧ୍ୟରୁ ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ପବିତ୍ରମୋହନ ପ୍ରଧାନ, ଗୋଦାବରୀଶ ମିଶ୍ର, ବିଜୁ ପଟ୍ଟନାୟକ, ଉମାଚରଣ ପଟ୍ଟନାୟକ, ଦିବାକର ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ, ଆଚାର୍ଯ୍ୟ ହରିହର ପ୍ରଭୃତିଙ୍କ ଘନିଷ୍ଠ ସଂସ୍ପର୍ଶରେ ସେ ଆସିଥିଲେ । ୧୯୪୯ରେ ଅନୁଗୁଳଠାରେ ଅନୁଷ୍ଠିତ ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀରେ ଯୋଗଦାନ ସମୟରେ ବିନୋବା ଭାବେ, ସି.ଡ଼ି. ଦେଶମୁଖ, ଭି.ଜି. ଦାସ୍ତାନେ, କାହ୍ନୁ ଗାନ୍ଧୀ, ରମାଦେବୀ, ଆଚାର୍ଯ୍ୟ ହରିହର, ଈଶ୍ୱରଲାଲ ବ୍ୟାସ, ମାଳତୀ ଚୌଧୁରୀ ପ୍ରଭୃତିଙ୍କ ସହ ଏକତ୍ର ସେବାକାର୍ଯ୍ୟ କରିଥିଲେ । ୧୯୫୦ରେ ବଳରାମ ପଣ୍ଡା, ବିନାୟକ ଆଚାର୍ଯ୍ୟ, କାମାକ୍ଷା ପ୍ରସାଦ ଶର୍ମା ପ୍ରଭୃତିଙ୍କ ସହ ମିଶି ପୂର୍ବବଙ୍ଗ ଶରଣାର୍ଥୀମାନଙ୍କ ଥଇଥାନ ପାଇଁ ପାଣ୍ଠି ସଂଗ୍ରହ କରି ସହଯୋଗ କରିଥିଲେ ଏବଂ ୧୯୫୪ରେ ଦାର୍ଜିଲିଂଠାରେ ଅନୁଷ୍ଠିତ ସର୍ବଭାରତୀୟ ଗୋଷ୍ଠୀ ସମ୍ମିଳନୀରେ ଅଂଶଗ୍ରହଣ ଅବସରରେ ଶାସ୍ତ୍ରିଜୀ, ଗୁଲଜାରିଲାଲ ନନ୍ଦା ଓ କେ.ଏମ୍. ମୁନ୍‌ସୀଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ଲାଭ କରିଥିଲେ । ସାରା ଜୀବନ ଜଣେ କର୍ମୀ ଭାବରେ ସେ କାର୍ଯ୍ୟ କରିଯାଇଛନ୍ତି । କୃଷକ ନେତା ଗୋବିନ୍ଦ ପ୍ରଧାନ, ଉମାଚରଣ ପଟ୍ଟନାୟକ ଓ ୧୯୬୧ ସାଧାରଣ ନିର୍ବାଚନରେ ସେ ଜନନେତା ବିଜୁବାବୁଙ୍କ ସୋରଡ଼ା ନିର୍ବାଚନମଣ୍ଡଳୀ ପ୍ରଚାର ଦାୟିତ୍ୱରେ କାର୍ଯ୍ୟ କରିଥିଲେ । କିନ୍ତୁ କୌଣସି ପଦପଦବୀ ଓ ନେତା ହେବାର ସ୍ୱପ୍ନ ତାଙ୍କର ନ ଥିଲା । ତେଣୁ ସେ କୌଣସି ନିର୍ବାଚନରେ ଅଂଶ ଗ୍ରହଣ କରି ନ ଥିଲେ । ଏତଦ୍‌ବ୍ୟତୀତ ସ୍ୱାଧୀନତା ପରବର୍ତ୍ତୀ କାଳରେ ରାଜନୀତି ଭିନ୍ନ ମୋଡ଼ ନେଇଥିବାରୁ ତାଙ୍କପରି ମୂଲ୍ୟବୋଧ ପାଗଳ, ଖଦଡ଼ ପରିହିତ ଗାନ୍ଧୀବାଦୀମାନେ ସକ୍ରିୟ ରାଜନୀତିରୁ ଅପସରି ଯାଇଥିଲେ ।

ତାଙ୍କର ଥିଲା ଆଦର୍ଶ ରାଜନୀତିରେ ଦୃଢ଼ ବିଶ୍ୱାସ । ଘୁମୁସରରେ ଚରଖା ଆନ୍ଦୋଳନ, ନାରୀ ଶିକ୍ଷା ଆନ୍ଦୋଳନ, ହରିଜନ ଆନ୍ଦୋଳନ, ନିଶା ନିବାରଣ ଆନ୍ଦୋଳନ ପରି ପ୍ରମୁଖ ଆନ୍ଦୋଳନମାନଙ୍କର ସେ ଥିଲେ କର୍ଣ୍ଣଧାର । ଏଥିପାଇଁ ସେ ଆସ୍କା, କୋଦଳା, ବ୍ରହ୍ମପୁର ଓ ପାରଳାଖେମୁଣ୍ଡିରେ ପ୍ରଚାର କରୁଥିଲେ ଏବଂ ଆନ୍ଦୋଳନ ସପକ୍ଷରେ ଜନଜାଗରଣ ସୃଷ୍ଟି କରୁଥିଲେ । ଲକ୍ଷ୍ମଣ ନାୟକଙ୍କ ଫାଶୀ ସମୟରେ ଅବ୍ୟବସ୍ଥିତ ଭାବରେ ମୋକଦ୍ଦମା ପରିଚାଳନା କରି ଯେଉଁ ନେତା କେନ୍ଦ୍ରମନ୍ତ୍ରୀ ପଦବୀ ଲାଭ କରିଥିଲେ ସେଥିରେ ସେ ଅଧିକ ମର୍ମାହତ ହେବା ସଙ୍ଗେ ସଙ୍ଗେ ତାଙ୍କ ଭୂମିକାକୁ ସମାଲୋଚନା କରି ସେ ନିର୍ଭୀକ ଭାବରେ ଅଂଗୁଳି ନିର୍ଦ୍ଦେଶ କରିଥିଲେ ।

ଏକ ଶୋଷଣହୀନ ଓ ସୁସ୍ଥ ସମାଜ ଗଠନ ଲକ୍ଷ୍ୟ ନେଇ ତାଙ୍କ ସଂପାଦନାରେ ସେ ଏକ ସାପ୍ତାହିକ ପତ୍ରିକା 'ଚକ୍ର' ପ୍ରକାଶ କରିଥିଲେ । ଦୁର୍ନୀତି ବିରୋଧରେ 'ଚକ୍ର' ଥିଲା ଏକ ଶାଣିତ ଅସ୍ତ୍ର । 'ମାୟା ବଜାର' ଓ 'ଖାରାକବିତା' ଶୀର୍ଷକରେ ବ୍ୟଙ୍ଗଧର୍ମୀ ଲେଖା ମାଧ୍ୟମରେ ସେ ପ୍ରଶାସନିକ ତଥା ସାମାଜିକ ଦୋଷ ଦୁର୍ବଳତାକୁ ଚତୁରତାର ସହିତ ପ୍ରକାଶ କରିଦେଉଥିଲେ । ତେଣୁ କବି କଣ୍ଠରେ ସ୍ଥାନ ପାଇଥିଲା-

''ଭାରତରୁ ପୁଳେ ନେଇ ପାକିସ୍ଥାନେ
ଯୋଡ଼ିବେ ବୋଲି ସେ ଭାବିଛନ୍ତି ମନେ
ପୋଡ଼ିଯାଉ ତା'ର ଏ ଗୁଣ୍ଡା ଭାବନା
ଭାରତୀୟ ଆଉ ଧର୍ମକୁ ଡରେନା
ଜାତିସଂଘ ନାମେ ଆମେରିକା ଗୋରା
ପାକିସ୍ଥାନ ପକ୍ଷେ ଦିଅନ୍ତି ଡାକରା
ଜାତିସଂଘେ ଦେଇ କାଶ୍ମିରୀ ପ୍ରସ୍ତାବ
ଦାଣ୍ଡର କୀଳାକୁ ଆଣିଲେ ସଚିବ ।''

ତତ୍କାଳୀନ ସମୟରେ ଅନେକ ସାହିତ୍ୟିକ ଏଥିରେ ଲେଖାଲେଖି କରି ଯଶସ୍ୱୀ ହୋଇଥିଲେ । 'ଚକ୍ର'ରେ ସେତେବେଳେ ନିୟମିତ ଭାବରେ ଇଂ. ପ୍ରିୟବ୍ରତ ଦାସ, ପ୍ରଫୁଲ୍ଲ ପଟ୍ଟନାୟକ, ସଚ୍ଚିଦାନନ୍ଦ ମିଶ୍ର, ଦଣ୍ଡପାଣି ଗୌଡ଼ ପ୍ରମୁଖ ଲେଖୁଥିଲେ । ସେଥିରେ ପ୍ରକାଶିତ ପ୍ରିୟବ୍ରତ ଦାସଙ୍କ 'ପାଟଣା ଚିଠି' ଭାରି ଆଦୃତ ହେଉଥିଲା ।

ଉପେନ୍ଦ୍ରଭଂଜ ହାଇସ୍କୁଲରେ ଅଧ୍ୟୟନବେଳେ ଷଷ୍ଠ ଶ୍ରେଣୀରୁ ସେ ଲେଖାଲେଖି ଆରମ୍ଭ କରିଥିଲେ । ହାତଲେଖା ପତ୍ରିକା ପାରିଜାତରେ ତାଙ୍କର ପ୍ରଥମ କବିତା ପ୍ରକାଶ ପାଇଥିଲା । ତାଙ୍କର ଶିକ୍ଷାଗୁରୁ ତଥା ବିଶିଷ୍ଟ ସାହିତ୍ୟିକ ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଗୋଦାବରୀଶ ମିଶ୍ର, ମନମୋହନ ମିଶ୍ର ପ୍ରମୁଖ ସାହିତ୍ୟିକଙ୍କ ସହ ତାଙ୍କର ସଂପର୍କ ଅତ୍ୟନ୍ତ ନିବିଡ଼ ଥିଲା । ସେମାନେ ତାଙ୍କ କବି ଜୀବନର ପ୍ରଚ୍ଛନ୍ନ ପ୍ରେରଣାଦାତା ଥିଲେ । 'ସ୍ୱାଧୀନତାର ଦିନେ' ହେଉଛି ତାଙ୍କର ପ୍ରଥମ ପ୍ରକାଶିତ କବିତା ପୁସ୍ତକ । ଏହା ତାଙ୍କ ସାରସ୍ୱତ ସାଧନାର ଏକ ଉଲ୍ଲେଖନୀୟ ଓ ଉଚ୍ଚମାନର ସୃଷ୍ଟି । ଏହାକୁ ମୁକ୍ତିର ଉନ୍ମାଦନା ସଂଗୀତ ରୂପେ କେହି କେହି ଚିତ୍ରଣ କରନ୍ତି । ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନରେ ହିଁ ସେ ଏହି ପୁସ୍ତିକାଟିର ପ୍ରକାଶ କରିଥିଲେ । ଏଥିରେ ୧୫ଟି କବିତା ସନ୍ନିବେଶିତ ହୋଇଛି । କବିତାଗୁଡ଼ିକ ତାଙ୍କର ଦେଶପ୍ରେମ ଦେଶକୁ ନିଟୋଳ ଭାବରେ ଭଲ ପାଇବାର ବାର୍ତ୍ତା ବହନ କରେ । ତେଣୁ ମୁକ୍ତି ପିପାସା ଓ ସ୍ୱାଧୀନତାକାମୀ ଭାରତୀୟ ଜନମାନସର ସାର୍ଥକ ଅଭିବ୍ୟକ୍ତି ହେଉଛି ଏହି କବିତା ସଂଚୟନ । ମହାତ୍ମାଗାନ୍ଧୀଙ୍କ ଅହିଂସା ମାର୍ଗରେ ସ୍ୱାଧୀନତା ପ୍ରାପ୍ତିକୁ ବିଶ୍ୱ ଇତିହାସରେ ଏକ ବିରଳ ଦୃଷ୍ଟାନ୍ତ ବୋଲି କବି ଏଥିରେ ଅଭିହିତ କରିଛନ୍ତି । ତେଣୁ ତାଙ୍କ ଲେଖନୀ ନିଃସୃତ ପଂକ୍ତି ହେଉଛି-

''ଦୁନିଆ ଇତିହାସେ
ଶୁଣିଛ କାହିଁ ବିନା ଯୁଦ୍ଧରେ ସ୍ୱାଧୀନ ଚାଲିଆସେ !
ଦେଖିଛ କେବେ, କେଉଁଠି ଏକ ଶୋଷିତର ଦଳ
କରିଥିଲା ବିଜୟ, ନେଇ ଅହିଂସାର ବଳ !
ମହାତ୍ମର ମାହାତ୍ମ୍ୟ ନେଇ ଭାରତ ଆଜି ହସେ ।''

ସ୍ୱାଧୀନତା ଅବସରରେ ଆତ୍ମହରା ହୋଇ ସେ ଉଦାତ୍ତ କଣ୍ଠରେ ଗାଇଥିଲେ-

''ମୁକ୍ତିକାମୀ ଆସରେ, ଏ ଭାରତ ଦେଶରେ
କାମନା ତୋ' ଫଳିଅଛି, ଏହି ଶୁଭ ବାସରେ ॥
କାନ୍ଧେ କାନ୍ଧ ମିଶରେ ଆନନ୍ଦରେ ହସରେ,
ଅତ୍ୟାଚାର ଶୋଷଣକୁ ବେଗେ କର ଧ୍ୱଂସରେ ॥''

ଓଡ଼ିଆ ଜାତିକୁ ଜାଗ୍ରତ କରିବା ଅତୀତ ଉତ୍କଳର ଗୌରବ ଫେରାଇ ଆଣିବା ଓ ପ୍ରତିଟି ମଣିଷ ମନରେ ଜାତୀୟତାର ଭାବ ଉଦ୍ରେକ କରାଇବା ପାଇଁ ସେ ଲେଖିଥିଲେ-

''ଆଉ କେତେ ଦିନରେ ଓଡ଼ିଆ ଭାଇ,
ଘୁମାଇବୁ ଘନ ଅନ୍ଧାରେ

ଚାହାଁରେ ଖୋଲି ତୋ ଅଳସୁଆ ଆଖି
ସ୍ୱାଧୀନ ତପନ ଉଠୁଛି ଉହୁଁକି,
ଶୁଭୁଛି ବାହାରେ ଜନ କୋଳାହଳ
ଲାଗିଲାଣି ପରା ଧନ୍ଦାରେ ।''

x x x

ଚାହଁରେ ଜାଗିଛି ପଡ଼ୋଶୀ ତୋହର
ଯେ ଥିଲା ତୋ ଆଗେ ଦିକଡ଼ା ମାତର
ବାନ୍ଧ ତୁ ସାହାସ ନ ହୋଇ ବିରସ
ପଡ଼ିଅଛି ଲାଖ ବିନ୍ଧାରେ ।''

କବି ବୈଦ୍ୟନାଥଙ୍କ ଦେଶଭକ୍ତି ଓ ମାତୃଭୂମି ପ୍ରତି ଗଭୀର ମମତ୍ୱବୋଧ ଥିଲା । ତେଣୁ ତାଙ୍କ କାବ୍ୟିକ ଉଚ୍ଚାରଣ ଅତ୍ୟନ୍ତ ହୃଦୟଗ୍ରାହୀ ମନେହୁଏ-

ଭକତି-ମୁକୁଳେ ଗୁନ୍ଥା ଯେଉଁ ହାର
ଘେନ ମୋ ଭାରତ ପ୍ରିୟ ଜନନୀ
ତୋହର ସେବା ମୁଁ କରି ଧନ୍ୟ ହେବି
ଅୟି ସ୍ୱର୍ଣ୍ଣ ପ୍ରସବିନୀ ।
ମାତୃଭୂମି ମୋର ତୋହର ମାଟିରେ
ଗଢ଼ା ମୋର ଏହି ପରାଣପିଣ୍ଡ ।
ତୋହରି ପବନେ ଚାଲେ ମୋ ଧମନୀ
ତୋ ବିନା ସକଳ ପଣ୍ଡ ॥
ବହୁ ଦିନ ମାଆ ମୋହର ବନ୍ଦିନୀ
ହୋଇ ଯାଇଅଛୁ ଦୁଃଖରେ ସଢ଼ି
ଶୋଷିଛି ରକତ ବିଦେଶର ଜୋକ
ଶକତି ତୋହର ନେଇଛି କାଢ଼ି ॥''

ଦେଶମାତୃକାର ମୁକ୍ତି ପାଇଁ ପ୍ରାଣବଳି ଦେଇଥିବା ଶହୀଦମାନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ କବି ଲେଖିଛନ୍ତି-

''ଦଳିତ, ଲାଞ୍ଛିତ, ଶୋଷିତ, ତପ୍ତ ଦେଶ ଯେ କରିଛି ସ୍ୱାଧୀନ
ଆଜି ସ୍ୱାଧୀନତାର ସିଂହଦୁଆରେ କରୁଁ ତାଙ୍କୁ ନିବେଦନ ।''
ଦେଶର ଦୁଃଖରେ ଢାଳି ଲହୁ ଲୁହ
ଛୁଟାଇଥିଲେ ଯେ ବିପ୍ଳବର ସୁଅ ।
ମାତୃଭୂମିର ମୁକତି ପାଇଁ ଅକାଳରେ ଦେଲେ ପ୍ରାଣ ।''

ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହାନ୍ ସେନାପତି ନେତାଜୀ ସୁଭାଷଙ୍କ ପ୍ରତି ଗଭୀର ସମ୍ମାନ ନିବେଦନ କରି ତାଙ୍କ ଲେଖନୀ ନିଃସୃତ ପଂକ୍ତି ହେଉଛି-

''ଆସ ବିପ୍ଳବୀ ସ୍ୱାଧୀନରଙ୍କ ଉଡ଼ାଇ ଜୈତ୍ର ବାନା
ଉଦ୍‌ଗ୍ରୀବ ହୋଇ ରହିଛି ଚାହିଁ ତୁମ ଜାତୀୟ ସେନା
ଆସ ନେତାଜୀ ଆସ ନେତାଜୀ ସାମ୍ରାଜ୍ୟବାଦ ଯାଇଛି ଭାଜି
ଦିଲ୍ଲୀ ଆସନେ ବସିବ ତୁମେ ଟେକିବୁ ଆମେ ଛାତି ॥
ଆସ ଜାତୀୟ ସେନାପତି
ଭାରତଭୂମିରେ ହୋଇଅଛି ଶେଷ ପରାଧୀନତାର ରାତି ॥

ଏତଦ୍‌ବ୍ୟତୀତ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଦେଶର ଅଖଣ୍ଡତାକୁ ବଜାୟ ରଖିବା ସଙ୍ଗେ ସଙ୍ଗେ ଏକତା ଓ ସଂପ୍ରୀତିର ସନ୍ଦେଶ ପ୍ରଚାର କରିବାକୁ ଯାଇ କବି କହନ୍ତି-

''ହିନ୍ଦୁ-ମୁସ୍‌ଲିମ୍, ଭାରତବାସୀ, ଏକା ଦେଶର ସନ୍ତାନ
ଭୁଲି ନ ଯାଅ ହେ ଭାଇ, ଭାବ ମନୁ ହେଲେ ଏ ଦେଶ ସ୍ୱାଧୀନ ॥''

ନୀଚ ଧର୍ମ ଭେଦ କୋରାନ୍ ଓ ବେଦ, କହୁଛି ''ନୀଚତା ଭ୍ରାତୃବିବାଦ ଶୟତାନ୍ ରୂପ ସଂକୀର୍ଣ୍ଣତା ମନୁ, ଦୂର କର ସର୍ବଜନ ॥'' ହିନ୍ଦୁ ମୁସ୍‌ଲିମ୍, ଶିଖ, ଖ୍ରୀଷ୍ଟିୟାନ୍ ନରନାରୀ ବୃଦ୍ଧ ବାଳକ ଯୁଆନ୍ ହାତରେ ହାତ ଛନ୍ଦି ଅହିଂସା ବଳରେ ଯାପ ସ୍ୱାଧୀନ ଜୀବନ ।''

ବିଦେଶୀ ଶାସକମାନଙ୍କ ପ୍ରତି ତାଙ୍କର ସେ ଦିନର ଯେଉଁ ଉକ୍ତି ଠିକ୍ ଓଲଟି ଯାଇଛି ବର୍ତ୍ତମାନର ସମାଜ କ୍ଷେତ୍ରରେ । ସ୍ୱାଧୀନତାର ସ୍ୱାଦ ଏବେ ଉପଲବ୍‌ଧ ହେଉ ନାହିଁ । କେବଳ ଏତିକି ପୃଥକ୍ ଯେ, ଆମେ ଗୋରା ଶାସନରୁ ମୁକ୍ତି ପାଇ ଏବେ କଳା ଶାସନରେ କବଳିତ । ତେଣୁ ତାଙ୍କ ଲେଖନୀ ନିଃସୃତ ହୋଇଛି -

''ଶୋଷକ ଦଳେ ଲାଗିଚି
ଆଜି ଗଣ୍ଠିଲି ବନ୍ଧାବନ୍ଧି
କୂଟନୀତିର କୁହୁଡ଼ି ସିନା
ରଖିଛି ତାକୁ ରୁନ୍ଧି ॥''

'ସ୍ୱାଧୀନତାର ଦିନେ' ବ୍ୟତୀତ ଜାତୀୟବାଦୀ ସ୍ରଷ୍ଟାଙ୍କ ଲିଖିତ ନୀତିଶତକ, ବୈରାଗ୍ୟ ଶତକ, ଶୁକ୍ରନୀତି ଶତକ ଓ ବିଭିନ୍ନ ଦେବାଦେବୀଙ୍କ କବଚ ସଂକଳିତ କବଚ ରତ୍ନାବଳୀ, ଓଡ଼ିଆ ସାହିତ୍ୟ

ଭଣ୍ଡାରକୁ ଏକ ଅମୂଲ୍ୟ ଅବଦାନ । ସେ ପ୍ରାଚୀନ ମହାମନା କବି ଭର୍ତ୍ତୃହରି ଓ ଶୁକ୍ରାଚାର୍ଯ୍ୟଙ୍କ ରଚନାବଳୀର ସରଳ ପଦ୍ୟାନୁବାଦ କରିଥିଲେ । ତାଙ୍କର ଅନୁବାଦର ଭାଷା ଅତ୍ୟନ୍ତ ସରଳ, ସାବଲୀଳ ଓ ବୋଧଗମ୍ୟ ମନେହୁଏ । କେବଳ ଲେଖକ ଭାବରେ ନୁହେଁ ଏକାଧାରରେ ସେ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ, ଜନସେବୀ, ଶିକ୍ଷକ, କବି, ସାହିତ୍ୟିକ, ଅନୁବାଦକ, ସଂଗଠକ, ସଂପାଦକ, ବହୁଭାଷୀ ବିଶାରଦ ଓ ମିଷ୍ଟଭାଷୀ ।

ଏହି ବହୁମୁଖୀ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ୧୯୨୨ ମସିହା କୁନ୍‌ମାସ ୨୭ ତାରିଖରେ ଭଂଜମାଟି ଗଂଜାମ ଜିଲ୍ଲାର କୁଲାଡ଼ ନିକଟସ୍ଥ ନାରାୟଣପାଟଣା ଗ୍ରାମର ଏକ ନିମ୍ନ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ । ତାଙ୍କ ପିତାଙ୍କ ନାମ ବାମଦେବ ପାଣିଗ୍ରାହୀ ଓ ମାତାଙ୍କ ନାମ ସୀତାଦେବୀ । ସେ ଭଂଜ ରାଜପରିବାର ଦ୍ୱାରା ପ୍ରତିଷ୍ଠିତ ନୀଳକଣ୍ଠେଶ୍ୱର ଠାକୁରଙ୍କ ସେବାୟତ ଥିଲେ । ଉପେନ୍ଦ୍ରଭଞ୍ଜ ହାଇସ୍କୁଲରେ ଅଧ୍ୟୟନ କାଳରେ ସେ ଥିଲେ ଜଣେ ମେଧାବୀ ଛାତ୍ର । ଛାତ୍ର ମହଲରେ ତାଙ୍କର ବେଶ୍ ସୁନାମ ଥିଲା । ସାଂଗଠନିକ ନେତୃତ୍ୱ ନେବାରେ ସେ ଥିଲେ ଧୂରୀଣ । ସ୍କୁଲର ପ୍ରଧାନଶିକ୍ଷକ ଦିବ୍ୟସିଂହ ପଟ୍ଟନାୟକ ଥିଲେ ଜଣେ ଦେଶପ୍ରେମୀ ଓ ଜାତୀୟବାଦୀ ବ୍ୟକ୍ତିତ୍ୱ । ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ସ୍କୁଲ ଜୀବନରୁ ସ୍ୱଦେଶୀ ଭାବନାରେ ଓ ଗାନ୍ଧୀ ଦର୍ଶନରେ ଦୀକ୍ଷିତ ଥିଲେ ଓ ଦେଶର ମୁକ୍ତି ପାଇଁ ଛାତ୍ର ଜୀବନରୁ ସଂକଳ୍ପ ନେଇଥିଲେ । ସେ ପିଲାମାନଙ୍କୁ ସମାଜ ଗଠନ, ଦେଶ ଗଠନ କାର୍ଯ୍ୟରେ ଉତ୍ସାହିତ କରୁଥିଲେ । ତାଙ୍କରି ଉଦ୍ୟମରେ ସ୍କୁଲରେ ଏକ ପାରିଜାତ ନାମରେ ଡିବେଟିଂ କ୍ଲବ ଓ ପାରିଜାତ ନାମକ ଏକ ହାତଲେଖା ପତ୍ରିକା ନିୟମିତ ପ୍ରକାଶ ପାଉଥିଲା । ଏଥିରେ ଛାତ୍ରଜୀବନରୁ ଲେଖାଲେଖି କରୁଥିବା ବହୁ ଛାତ୍ର ପରବର୍ତ୍ତୀ କାଳରେ କବି ଓ ଲେଖକରୂପେ ପ୍ରତିଷ୍ଠା ଅର୍ଜନ କରିଥିଲେ । ତାଙ୍କର କେତେକ ଗଳ୍ପ ଓ ଅନ୍ୟାନ୍ୟ ରଚନା ସେତେବେଳେ ପ୍ରକାଶ ପାଉଥିବା ପ୍ରଭାତ, ତ୍ରିବେଣୀ, ତରୁଣ, ଡ଼ଗର ଓ ନବୀନ ଆଦି ପତ୍ରିକାମାନଙ୍କରେ ପ୍ରକାଶ ପାଇଥିଲା । ତାଙ୍କର ସାମଗ୍ରିକ କୃତିତ୍ୱପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀ, ଯଦୁମଣି ସାହିତ୍ୟ ସଂସଦ, ଉପେନ୍ଦ୍ର ଭଂଜ ଫାଉଣ୍ଡେସନ ଓ ଘୁମୁସର ସମ୍ବାଦ ପ୍ରକାଶନ ଇତ୍ୟାଦି ସଂସ୍ଥାଦ୍ୱାରା ସମ୍ବର୍ଦ୍ଧିତ ଓ ସମ୍ମାନିତ ହୋଇଥିଲେ ।

ସେ ଅତି ସାଧାରଣ ଜୀବନଯାପନ କରୁଥିଲେ । ତାଙ୍କ ଜୀବନ ଥିଲା ସଂଗ୍ରାମ ଓ ସଂଘର୍ଷର ଜୀବନ । ପ୍ରତିକୂଳ ପରିବେଶ, ଆର୍ଥିକ ଅନଟନ, ଶୈଶବରୁ ପିତୃ ବିୟୋଗ ଓ ବହୁ ପ୍ରତିବନ୍ଧକ ସତ୍ତ୍ୱେ ତାଙ୍କ ଦୃଢ଼ ମନୋବଳ ଯୋଗୁଁ ସେ ସମସ୍ତ ହାର ମାନି ଥିଲା । ଆଚରଣ ଓ ସଂକଳ୍ପରେ ସେ ଥିଲେ ବିଶିଷ୍ଟ ଗାନ୍ଧିବାଦୀ । ତେଣୁ ତାଙ୍କୁ 'ପାଟଣା ଗାନ୍ଧୀ' ବୋଲି ଜନସାଧାରଣ ଶ୍ରଦ୍ଧାରେ ସମ୍ବୋଧନ କରୁଥିଲେ ।

୨୦୦୯ ମସିହାରେ ଜାନୁୟାରୀ ମାସ ୧୦ ତାରିଖରେ ତାଙ୍କର ବିୟୋଗ ହୋଇଥିଲା । ସେ ଆଜି ନାହାନ୍ତି ସତ, ହେଲେ ରଖିଦେଇ ଯାଇଛନ୍ତି ଚିରନ୍ତନ ସ୍ମୃତି । ତାଙ୍କ ଭଳି ଓଡ଼ିଆ ଭାଷାପ୍ରେମୀ, ସେବା ତ୍ୟାଗର ପ୍ରତୀକ ଓ ଉତ୍ସର୍ଗୀକୃତ ମଣିଷ ବାସ୍ତବରେ ପ୍ରାତଃସ୍ମରଣୀୟ ।



ଏମ୍.ଆଇ.ଜି.ଓ୍ୱାନ୍–୪୨/୧
ଚନ୍ଦ୍ରଶେଖରପୁର ହାଉସିଂବୋର୍ଡ଼ କଲୋନୀ
ଭୁବନେଶ୍ୱର–୧୬

# ବିରଜାକ୍ଷେତ୍ର ବନାମ କାମାକ୍ଷା ପୀଠ

**ନନ୍ଦକିଶୋର ସିଂହ**

ଭାରତର ପୂର୍ବାଞ୍ଚଳ ହେଉଛି ବଂଗ, ଓଡ଼ିଶା ଓ ଆସାମ । ଗୋଟିଏ ମାଆର ତିନୋଟି ସନ୍ତାନ ପୂର୍ବମାଗଧି ଲିପିରୁ ଓଡ଼ିଆ ବଂଗଳା ଅସମୀୟା ଭାଷା ସୃଷ୍ଟି ହୋଇଥିବାରୁ ତିନୋଟି ଭାଷାକୁ ତିନି ଭଉଣୀ ଭାଷା ବା Three sisters language କୁହାଯାଏ । କେବଳ ଭାଷା ଦୃଷ୍ଟିରୁ ନୁହେଁ ଆଚାରବ୍ୟବହାର ଚାଲିଚଳନ ପୂଜା ପାର୍ବଣ ଏବଂ ଧର୍ମଧାରଣାରେ ଏହି ତିନି ରାଜ୍ୟ ମଧ୍ୟରେ ବହୁ ସାଂସ୍କୃତିକ ଏବଂ ସାମାଜିକ ସାମଞ୍ଜସ୍ୟ ରହିଛି । ଏ କ୍ଷେତ୍ରରେ ଆସାମ ଓ ଓଡ଼ିଶା ପରସ୍ପରର ଅଧିକ ନିକଟବର୍ତ୍ତୀ ।

ବିଶେଷତଃ ଆସାମର ଜଗନ୍ନାଥଙ୍କ ପ୍ରତି ଗଭୀର ବିଶ୍ୱାସ ଓ ଭକ୍ତିଭାବ ପରିଲକ୍ଷିତ ହୋଇଥାଏ । ନଦିୟା ନବଦ୍ୱୀପର ଶ୍ରୀଗୌରାଙ୍ଗ ପୁରୀର ଜଗନ୍ନାଥ ଧାମକୁ ଆସି ଜଗନ୍ନାଥ ଦାଶଙ୍କୁ ଅତିବଡ଼ୀ ଆଖ୍ୟା ଦେଇ ଗୌଡ଼ୀୟ ବୈଷ୍ଣବ ଏବଂ ଉତ୍କଳୀୟ ବୈଷ୍ଣବଧର୍ମ ଭିତରେ ଯେପରି ସମନ୍ୱୟ ସ୍ଥାପନ କରିଥିଲେ, ଆସାମର ଶଙ୍କରଦେବ ଶ୍ରୀକ୍ଷେତ୍ର ଆସି ଜଗନ୍ନାଥଙ୍କ କରୁଣାରୁ ଜ୍ଞାନଭକ୍ତିର ଜ୍ୟୋତି ଲାଭ କରିଥିଲେ । ଓଡ଼ିଶାରେ ଜଗନ୍ନାଥ ଧର୍ମ ଏବଂ ଅନ୍ୟାନ୍ୟ ସାଂସ୍କୃତିକ ଚେତନା ସମ୍ବନ୍ଧରେ ଆସାମ ଓଡ଼ିଶା ଭିତରେ ଯୋଗସୂତ୍ର ସ୍ଥାପନରେ ଶଂକରଦେବଙ୍କ ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଶଙ୍କରଦେବ ହିଁ ଆସାମର ବରଦାଓ୍ୱାଠାରେ ପ୍ରଥମ ନାମଘର (କୀର୍ତ୍ତନ ଗୃହ) ନିର୍ମାଣ କରିଥିଲେ । ଏହା ଆମ ଓଡ଼ିଶାର ଭାଗବତ ଟୁଙ୍ଗୀର ଅନୁରୂପ ।

ଆସାମ ଓଡ଼ିଶାର ବୈଷ୍ଣବୀୟ ଧାର୍ମିକ ଚେତନାର ଯେପରି ଅପୂର୍ବ ସମନ୍ୱୟ ଘଟିଛି, ଠିକ୍ ସେହିପରି ଶାକ୍ତଧର୍ମ ଏବଂ ଶକ୍ତିପୀଠ ମଧ୍ୟରେ ଉଲ୍ଲେଖଯୋଗ୍ୟ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ ।

ଶାକ୍ତପୀଠ ମଧ୍ୟରେ ଯାଜପୁରର ବିରଜାକ୍ଷେତ୍ର ଏବଂ ଆସାମର କାମାକ୍ଷାପୀଠ ମଧ୍ୟରେ ଏକ ଅପୂର୍ବ ଯୋଗାଯୋଗ ଲକ୍ଷ୍ୟ କରିବା କଥା । ଉଭୟ କ୍ଷେତ୍ରରେ ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଶକ୍ତିସ୍ୱରୂପିଣୀ ଦକ୍ଷକନ୍ୟା ସତୀ । ଆସାମରେ ସେ କାମାକ୍ଷା ନାମରେ ପ୍ରସିଦ୍ଧି ଲାଭ କରିଥିବାବେଳେ ଯାଜପୁରରେ ବିରଜା ନାମରେ ବିଦିତ ।

ବିରଜାକ୍ଷେତ୍ରକୁ ଅବିଯୁକ୍ତ କ୍ଷେତ୍ର ବା ହରଗୌରୀ କ୍ଷେତ୍ର ମଧ୍ୟ କୁହାଯାଏ । ଏଠାରେ ହର ଈଶାନେଶ୍ୱର ରୂପରେ ଏବଂ ଗୌରୀ ବିରଜା ରୂପରେ ବିରାଜମାନ । ଅବିଯୁକ୍ତ କହିବା ଅର୍ଥ ଏଠାରେ ହରଗୌରୀ ନାରାୟଣପୀଠ ଦେବୀ ରୂପେ ଅଧିଷ୍ଠିତ । ଦେବଗଣ ଏ କ୍ଷେତ୍ରକୁ ଛାଡ଼ିପାରି ନାହାନ୍ତି । କ୍ଷେତ୍ର ମଧ୍ୟ ଦେବତାଙ୍କୁ ଛାଡ଼ି ପାରି ନାହିଁ । ତେଣୁ ଏ କ୍ଷେତ୍ର ଅବିଯୁକ୍ତ ।

ଏ କ୍ଷେତ୍ରଟି ଯେପରି ପୁଣ୍ୟତୋୟା ବୈତରଣୀ କୂଳରେ ଅବସ୍ଥିତ ଠିକ୍ ସେହିପରି କାମାକ୍ଷାପୀଠ କାମରୂପର ଚିର ସୁନାବ୍ୟା ପବିତ୍ର ବ୍ରହ୍ମପୁତ୍ର କୂଳଦେଶରେ ବିରାଜିତ । ଉଭୟ କ୍ଷେତ୍ରର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତୀବ ରମଣୀୟ । ପୁଣି ବିରଜା କ୍ଷେତ୍ରର ଦେବୀ ବିରାଜାରୂପରେ ପାର୍ବତୀ ଏବଂ ଈଶାନେଶ୍ୱର ରୂପରେ ଶିବ ଅଧିଷ୍ଠିତ ହୋଇଥିବାବେଳେ କାମରୂପରେ କାମାକ୍ଷା ନାମ ଧାରଣ କରି ଦେବୀ ପାର୍ବତୀ ଏବଂ ଭୈରବ ଉମାନନ୍ଦ ରୂପରେ ଶିବ ଅଧିଷ୍ଠିତ ।

ପୁନଶ୍ଚ ଉଭୟ ପୀଠର ସୃଷ୍ଟି ପଛରେ ଥିବା ପୌରାଣିକ ଆଖ୍ୟାୟିକାର ଭିତ୍ତିଭୂମି ଏକ ଏବଂ ଅଭିନ୍ନ । ଆଖ୍ୟାୟିକାଟି ଏହିପରି–

ଶିବଙ୍କ ଶ୍ୱଶୁର ଦକ୍ଷ ପ୍ରଜାପତି ଏକ ବିରାଟ ଯଜ୍ଞର ଆୟୋଜନ କରନ୍ତି । ଏହି ଯଜ୍ଞକୁ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁରର ସମସ୍ତ ମାନ୍ୟଗଣ୍ୟମାନଙ୍କୁ ନିମନ୍ତ୍ରଣ କରନ୍ତି ମାତ୍ର ଶିବ ଜାମାତା ହେଲେ ବି ଜଣେ ସାମାନ୍ୟ ଯୋଗୀ ହୋଇ ଶ୍ମଶାନରେ ବାସ କରୁଥିବାରୁ ନିମନ୍ତ୍ରଣରୁ ବଂଚିତ ରହନ୍ତି । ମାତ୍ର ପିତାଙ୍କ ଦ୍ୱାରା ଅନୁଷ୍ଠିତ ଯଜ୍ଞର ସମ୍ବାଦ ପାଇ କନ୍ୟା ସତୀ ଯଜ୍ଞସ୍ଥଳୀକୁ ଯିବା ପାଇଁ କଟାଳ କରନ୍ତି । ଶିବଙ୍କ ବାରଣ ସତ୍ତ୍ୱେ ସତୀ ଯଜ୍ଞସ୍ଥଳରେ

ଉପସ୍ଥିତ ହୁଅନ୍ତି । ଦକ୍ଷ ସତୀଙ୍କ ସମ୍ମୁଖରେ ଅତି କଟୁଭାଷାରେ ଶିବଙ୍କ ନିନ୍ଦା ରଟାନ୍ତି । ସ୍ୱାମୀଙ୍କ ବିରୋଧରେ କୁତ୍ସାରଟନା ସହ୍ୟ କରି ନ ପାରି ଯଜ୍ଞକୁଣ୍ଡରେ ପ୍ରାଣ ବିସର୍ଜନ କରନ୍ତି । ସତୀଙ୍କ ପ୍ରତ୍ୟାବର୍ତ୍ତନର ବିଳମ୍ବ ଦେଖି କିଛି ଅଘଟଣ ଆଶଙ୍କାରେ ଶିବ ବିବ୍ରତ ହୁଅନ୍ତି । ଧ୍ୟାନବଳରେ ସତୀଙ୍କ ନିଧନ ସମ୍ବନ୍ଧରେ ଜାଣିବା ପରେ ଶିବ କୋପାନଳରେ ଜର୍ଜରିତ ହୁଅନ୍ତି । ଅନୁଚରଗଣଙ୍କ ସହ ଯଜ୍ଞପୀଠରେ ପହଞ୍ଚି ଦକ୍ଷଙ୍କ ଶିରଚ୍ଛେଦ କରନ୍ତି ଏବଂ ଯଜ୍ଞ ଧ୍ୱଂସ କରନ୍ତି । ଏହା ପରେ ମୃତା ସତୀଙ୍କ ଶବକୁ ସ୍କନ୍ଧରେ ବହନ କରି ସାରାବିଶ୍ୱରେ ତାଣ୍ଡବ ନୃତ୍ୟ କରନ୍ତି । ପିନାକପାଣିଙ୍କ ତ୍ରିନେତ୍ରରୁ ନିର୍ଗତ କ୍ରୋଧାଗ୍ନି ସାରାବିଶ୍ୱକୁ ଧ୍ୱଂସ ସ୍ତୂପରେ ପରିଣତ କରିଦେବ ଏହି ଆଶଙ୍କାରେ ଦେବଗଣ ବିଷ୍ଣୁଙ୍କ ଶରଣାପନ୍ନ ହୁଅନ୍ତି । ବିଷ୍ଣୁ ଜାଣିପାରନ୍ତି ସତୀଙ୍କ ଶବ ଶିବଙ୍କ ସ୍କନ୍ଧଦେଶରେ ଥିବାଯାଏ ସେ ଶାନ୍ତ ହେବେ ନାହିଁ । ଏଣୁ ବିଷ୍ଣୁ ଶିବଙ୍କ ପଛେ ପଛେ ଅନୁଧାବନ କରନ୍ତି ଏବଂ ନିଜକୁ ଗୋପନ ରଖି ସୁଦର୍ଶନ ଚକ୍ର ସାହାଯ୍ୟରେ ସତୀଙ୍କ ଶରୀରକୁ ଖଣ୍ଡ ବିଖଣ୍ଡିତ କରିଦିଅନ୍ତି । ସତୀଙ୍କ ଶରୀର ଏକାବନ ଖଣ୍ଡରେ ଖଣ୍ଡିତ ହୋଇ ଏକାବନ ସ୍ଥାନରେ ପତିତ ହୁଏ । ଏହି ଖଣ୍ଡିତ ଅଂଶ ପତିତ ହୋଇଥିବା ସ୍ଥାନ ପରବର୍ତ୍ତୀ କାଳରେ ଶକ୍ତିପୀଠରେ ପରିଣତ ହୁଏ । ଏହି ପୀଠ ମଧ୍ୟରୁ ସତୀଙ୍କ ନାଭିକମଳ ପଡ଼ିଥିବା ପୀଠଟି ଆଜିର ନାଭିକ୍ଷେତ୍ର ଯାଜପୁର ହୋଇଥିବାବେଳେ ସତୀଙ୍କ ମହାମୁଦ୍ରା (ଯୋନି) ଅଂଶଟି ପଡ଼ିଥିବା କ୍ଷେତ୍ର ଯୋନିକ୍ଷେତ୍ର ବା କାମାକ୍ଷାପୀଠ ନାମରେ ନାମିତ । ଅବଶ୍ୟ କାମାକ୍ଷାପୀଠ ବା କାମରୂପ ସୃଷ୍ଟି ପଛରେ ଅନ୍ୟ ଏକ କିମ୍ବଦନ୍ତୀ ରହିଛି । ତାରକାସୁର ବ୍ରହ୍ମାଙ୍କ ବର ବଳରେ ବଳୀୟାନ ହୋଇ ଦେବଗଣଙ୍କ ପ୍ରତି ଅତ୍ୟାଚାର କରି ଚାଲେ । ଏଣୁ ତାକୁ ହତ୍ୟା କରିବା ପାଇଁ ଶିବଙ୍କ ଔରସ ଜାତ ସନ୍ତାନ କାର୍ତ୍ତିକେୟଙ୍କ ଜନ୍ମ ଆବଶ୍ୟକ । ଏଣୁ ଶିବଙ୍କୁ ସଂସାରୀ କରାଇବା ପାଇଁ ଦେବଗଣ କାମଦେବଙ୍କୁ ତପରତ ଶିବଙ୍କ ପାଖକୁ ପଠାନ୍ତି । କାମଦେବଙ୍କ କାମବାଣରେ ଶିବଙ୍କ ତପ ଭଗ୍ନ ହୁଏ । ଶିବଙ୍କ କ୍ରୋଧାଗ୍ନିରେ କାମଦେବ ଭସ୍ମ ହୁଅନ୍ତି । ଶୋକାତୁରା କାମଦେବ ପତ୍ନୀ ରତିଦେବୀ ସେଇ ଭସ୍ମରୁ କିଛି ସାଇତି ରଖନ୍ତି । ଶିବ ପାର୍ବତୀଙ୍କ ବିବାହ ପରେ ରତିଦେବୀ ସେଇ ଭସ୍ମକୁ ଶିବଙ୍କ ସମ୍ମୁଖରେ ରଖି ହା–ନାଥ ହା–ନାଥ ବିଳାପ କରନ୍ତି । ଶୂଳପାଣିଙ୍କ ଅମୃତ ଦୃଷ୍ଟି ଭସ୍ମ ଉପରେ ପତିତ ହୁଅନ୍ତେ ସେଇ ସ୍ତୂପରୁ ପୁନର୍ବାର କାମଦେବ ପୁନର୍ଜନ୍ମ ଲାଭ କରନ୍ତି । କାମଦେବ ପୂର୍ବରୂପ ଫେରିପାଇଥିବାରୁ ଏ ସ୍ଥାନକୁ କାମରୂପ କୁହାଯାଏ ।

ସେହିପରି ବିରଜାପୀଠରେ ଅନ୍ୟ ନାମ ନାଭିଗୟା । ଏହି ନାଭିଗୟା ସୃଷ୍ଟି ପଛରେ ସେହିପରି ଅନ୍ୟ ଏକ ଆଖ୍ୟାୟିକା ଶୁଣିବାକୁ ମିଳେ । ଗୟାସୁର ନାମକ ଜଣେ ରାକ୍ଷସ ଅତ୍ୟଧିକ ଶକ୍ତିଶାଳୀ ହୋଇଉଠେ । ଦେବଗଣ ତା'ର ଉତ୍ପାତରେ ଅତିଷ୍ଠ ହୋଇପଡ଼ନ୍ତି । ଏଣୁ ସେମାନେ ବିଷ୍ଣୁଙ୍କର ଶରଣାପନ୍ନ ହୁଅନ୍ତି । ବିଷ୍ଣୁ କୌଶଳ କରି ଗୟାସୁରକୁ ସତ୍ୟବଦ୍ଧ କରାନ୍ତି । ସତ୍ୟ ବଳରେ ଗୟାସୁର ବିଷ୍ଣୁଙ୍କୁ ନିଜ ଶରୀର ଦାନ କରନ୍ତି । ବିଷ୍ଣୁ ସୁଦର୍ଶନ ଚକ୍ର ସାହାଯ୍ୟରେ ଗୟାସୁରର ଶରୀରକୁ ତିନି ଖଣ୍ଡରେ ଖଣ୍ଡିତ କରନ୍ତି । ଗୟାସୁର ଶିର ଗୟାରେ ପଡ଼େ । ନାଭି ଅଂଶ ଯାଜପୁରରେ ପଡ଼ି ନାଭିଗୟା ସୃଷ୍ଟି ହୁଏ ଏବଂ ପାଦ ପଡ଼େ ମହେନ୍ଦ୍ର ଗିରିରେ ।

କାମାକ୍ଷାପୀଠ ଯେଉଁ ପର୍ବତରେ ଅବସ୍ଥିତ ତାକୁ ନୀଳାଚଳ କୁହାଯାଏ । ଏଥିରେ ତିନୋଟି ଶୃଙ୍ଗ ବିଦ୍ୟମାନ । ଶୃଙ୍ଗ ତିନୋଟି ବ୍ରହ୍ମା ବିଷ୍ଣୁ ଏବଂ ଶିବ ନାମରେ ନାମିତ ।

ବିରଜାକ୍ଷେତ୍ରର ଅନତିଦୂରରେ ବରାହନାଥଙ୍କ ମନ୍ଦିର ଅବସ୍ଥିତ ହୋଇଥିବାବେଳେ କାମାକ୍ଷାପୀଠର ପଶ୍ଚିମପଟକୁ ଥିବା ପର୍ବତଟି ବରାହ ପର୍ବତ ନାମରେ ନାମିତ ।

ସେହିପରି ଉଭୟ କ୍ଷେତ୍ରରେ ବହୁ ଶିବ ଲିଙ୍ଗ ରହିଥିବାର ଉଲ୍ଲେଖ ଅଛି । ବିରଜାକ୍ଷେତ୍ର ତ୍ରିକୋଣାକାର ଏବଂ 'ଏ' ଆକୃତିର । ତିନିକୋଣରେ ବିଲ୍ୱେଶ୍ୱର, କିଲାଟେଶ୍ୱର ଏବଂ ବରୁଣେଶ୍ୱର ବିଦ୍ୟମାନ । ପ୍ରତ୍ୟେକ ଲିଙ୍ଗ ପରସ୍ପରଠାରୁ ପାଂଚକୋଶ ଦୂରରେ ଅବସ୍ଥିତ । ପୁଣି ପାଂଚକୋଶ ମଧ୍ୟରେ ବହୁତୀର୍ଥ ଏବଂ ଦେବଦେବୀ ବିରାଜମାନ । ଏହି ଦେବ ଦେବୀ ମଧ୍ୟରେ ଅଷ୍ଟଚଣ୍ଡୀ, ନବଶକ୍ତି ଏବଂ ଚାରି ଭୈରବ ତ୍ରୟୋଦଶ ରୁଦ୍ର ଏବଂ ଦ୍ୱାଦଶ ମାଧବ ବିଦ୍ୟମାନ ।

ସେହିପରି ସତୀ ଦେବୀଙ୍କ ଗୁପ୍ତାଙ୍ଗଟି ନୀଳାଚଳ ପର୍ବତରେ ପଡ଼ିବାରୁ ତାହା ନୀଳବର୍ଣ୍ଣ ଶିଳାରେ ପରିଣତ ହୁଏ ଏବଂ ସତୀ ସେଠାରେ କାମାକ୍ଷାଦେବୀ ରୂପରେ ନିତ୍ୟ ଅବସ୍ଥାନ କରନ୍ତି ଏବଂ ବହୁ ଦେବଦେବୀ ସେଇ ପର୍ବତରେ ଅବସ୍ଥାନ କରନ୍ତି । ପୁଣି ଦେବୀଙ୍କ ପାଦ ଆଦି ଅଂଗଗୁଡ଼ିକ ସେଠାରେ ପତିତ ହୋଇ ଲିଙ୍ଗ ରୂପରେ ଅବସ୍ଥିତ ହୋଇଛନ୍ତି ।

ଏକ କଥାରେ କହିବାକୁ ଗଲେ ଉଭୟ ବିରଜାକ୍ଷେତ୍ର ଏବଂ କାମାକ୍ଷାପୀଠରେ ଶିବ ଓ ଶକ୍ତିର ଅପୂର୍ବ ମିଳନର ଦୃଶ୍ୟ ଦେଖିବାକୁ ମିଳିଥାଏ । ବିରଜାଦେବୀ ଏବଂ କାମାକ୍ଷାଦେବୀଙ୍କ ମୂର୍ତ୍ତି ଗଠନ ଶୈଳୀରେ କିଛିଟା ପାର୍ଥକ୍ୟ ଥିଲେ ହେଁ ଉଭୟେ ଯେ ଶକ୍ତିମୟୀ ଏବଂ ସତୀ ପାର୍ବତୀଙ୍କ ଭିନ୍ନରୂପ ଏହା ଅସ୍ୱୀକାର କରାଯାଇ ନ ପାରେ ।

ବିରଜାଦେବୀ ଦ୍ୱିଭୁଜା । ବାମ ହସ୍ତରେ ମହିଷରୂପୀ ମହିଷାସୁର ପୁଚ୍ଛ ଧାରଣ କରି ଦକ୍ଷିଣଭୁଜରେ ସେଇ ଅସୁର ବକ୍ଷସ୍ଥଳକୁ ଶୂଳବିଦ୍ଧ କରିଛନ୍ତି । ଏହାଙ୍କ ମସ୍ତକଚୂଡ଼ାରେ ଗଣପତି, ନାଗରାଜ ବାସୁକି ସ୍ତ୍ରୀ ଚିହ୍ନ ଯୋନି ଏବଂ ପୁରୁଷ ଚିହ୍ନ ଲିଙ୍ଗ ଏବଂ ସୁଧାକର ଚନ୍ଦ୍ର ଏହି ପଂଚମୁଦ୍ରା ରହିଛି । ଏହାଙ୍କ ଲଲାଟ ଦେଶରେ ଏକ ଉଜ୍ଜ୍ୱଳମଣି ଦେଦୀପ୍ୟମାନ ।

ସେହିପରି କାମାକ୍ଷା ଦେବୀଙ୍କ ମନ୍ଦିରରେ ପ୍ରବେଶ କଲେ ସମ୍ମୁଖରେ ଅଷ୍ଟଧାତୁ ନିର୍ମିତ କାମେଶ୍ୱରୀ ଓ କାମେଶ୍ୱର ବା ହରପାର୍ବତୀ ମୂର୍ତ୍ତି ଭକ୍ତଗଣଙ୍କ ଚକ୍ଷୁରେ ପଡ଼େ । ଏହି ଚଳନ୍ତି ମୂର୍ତ୍ତି ଦର୍ଶନ ସାରି ଭକ୍ତଗଣ ଦେବୀ ମନ୍ଦିର ନିମ୍ନ ଭାଗରେ ଥିବା ମହାମୁଦ୍ରା ପୀଠକୁ ଗମନ କରନ୍ତି । ଦେବୀଙ୍କର ଯୋନିମୁଦ୍ରା ମହାପୀଠ ଦଶଟି ପାହାଚତଳେ ଅନ୍ଧକାର ଗହ୍ୱର ମଧ୍ୟରେ ଅବସ୍ଥିତ । ଦେବୀଙ୍କୁ ଯେ ଯେପରି ରୂପରେ କାମନା କରେ ଦେବୀଙ୍କ ସଂତୋଷପାଇଁ ପୂଜାପାଠ ଜପତପ କଲେ ତାହାର ଅରିଷ୍ଟ ଦେବୀ ସେହିପରି ଭାବେ ପୂର୍ଣ୍ଣ କରନ୍ତି ।

ବିରଜାପୀଠରେ ପିଣ୍ଡଦାନ କରି ପିତୃ ମାତୃ ଋଣରୁ ମୁକ୍ତି ମିଳିବାର ବିଶ୍ୱାସ ଥିବା ଭଳି କାମାକ୍ଷାପୀଠରେ ଦେବୀଙ୍କର ଯୋନିମଣ୍ଡଳ ଦର୍ଶନ, ସ୍ପର୍ଶ ଏବଂ ମୁଦ୍ରାର ଜଳଦାନ କଲେ ଦେବଋଣ ପିତୃଋଣ ମାତୃଋଣରୁ ମୁକ୍ତି ମିଳିବାର ବିଶ୍ୱାସ ରହିଛି ।

ବିରଜା ନାମକୁ ବ୍ୟୁତ୍ପତ୍ତି କଲେ ଦେଖାଯାଏ 'ବି' ଶବ୍ଦର ଅର୍ଥ ବିଧି ବା ବିରଂଚି । 'ର' ହେଲା ଅଗ୍ନିବୀଜ 'ଜ' ହେଉଛି ଜନ୍ ଧାତୁ ନିଷ୍ପନ୍ନ ଶବଦ । ଏଣୁ ବିରଂଚି ବା ବ୍ରହ୍ମାଙ୍କ ଦ୍ୱାରା ଯଜ୍ଞାଗ୍ନିରୁ ଜାତ ହୋଇଥିବାରୁ ଏହାଙ୍କ ନାମ ବିରଜା । କେତେକ ପଣ୍ଡିତ ମଧ୍ୟ ଅର୍ଥ କରିଥାନ୍ତି ବିଗତଂ ରଜଃ ବିରଜା । ଅର୍ଥାତ୍ ବିଗତଂ ରଜୋଗୁଣଃ ଯସ୍ୟାଃ ସା ବିରଜା । ଅର୍ଥାତ୍ ଯାହାଙ୍କର ସତ୍ୱ ରଜ ତମ ଏହି ତିନିଗୁଣ ମଧ୍ୟରୁ ରଜୋଗୁଣ ତମଗୁଣ ଅଭାବ ହୋଇ କେବଳ ସତ୍ୱଗୁଣ ବିକାଶ ଲାଭ କରିଥାଏ । ଅର୍ଥାତ୍ ଯେ ଶୁଦ୍ଧ ସତ୍ୱମୟୀ ପରମବୈଷ୍ଣବୀ ସେଇ ଦେବୀ ବିରଜା ।

ଅନୁରୂପ ଭାବେ ଦେବୀ କାମାକ୍ଷାଙ୍କ ସମ୍ବନ୍ଧରେ ଦେବୀ କାମାକ୍ଷା ମାହାତ୍ମ୍ୟ ପୁସ୍ତକରେ ଲେଖା ଅଛି-

''କୃତେ କର୍ମଣି ସିଧ୍ୟେତ କାମନାଶୁ ସୁରେଶ୍ୱରୀ । ହତୋ ମର୍ତ୍ତଃ କାମରୂପମିତି ରୂପମ୍ କଳ୍ପୟତ ।''

ଅର୍ଥାତ୍ ଭକ୍ତଗଣଙ୍କର କାମନା ପୂରଣକାରୀ ହେଉଛନ୍ତି କାମରୂପ କ୍ଷେତ୍ରଦେବୀ କାମାକ୍ଷା । ବିରଜା ଦେବୀଙ୍କ ମନ ମଧ୍ୟରୁ ନବଦୁର୍ଗା ଚତୁଃଷଷ୍ଠୀ ଯୋଗିନୀ ତଥା ଅଷ୍ଟଚଣ୍ଡିକା ଜାତ ବୋଲି ବ୍ରହ୍ମ ପୁରାଣରେ ଉଲ୍ଲେଖ ଅଛି ।

ସେହିପରି କାମାକ୍ଷା ପୀଠରେ ଲକ୍ଷ୍ମୀ ସରସ୍ୱତୀ ମୂର୍ତ୍ତି ମହାମାୟୀ ଦେବୀ କାମାକ୍ଷାଙ୍କର ଦଶମହାବିଦ୍ୟା ବା ବିଭୂତିର ଅନ୍ତର୍ଗତ ଷୋଡ଼ଶୀ କାମାକ୍ଷା ଦେବୀଙ୍କର ନାମାନ୍ତର ଓ ଏହି ଦେବୀ ପୀଠରେ ଅବସ୍ଥିତ । ଏହି ଦେବୀ ପୀଠର ପୂର୍ବ ପଟେ ମାତଙ୍ଗୀ ଓ କମଳାଙ୍କ ପୀଠସ୍ଥାନ ରହିଛି । ଏହାଛଡ଼ା ମଂଗଳଚଣ୍ଡୀ କଳ୍କୀ ଅବତାରୀ, ଯୁଧିଷ୍ଠିର ରାମଚନ୍ଦ୍ର ବଟୁକ ଭୈରବ ନାରାୟଣ ଗୋପାଳ ମନସା ଦେବୀଙ୍କ ପ୍ରତିମୂର୍ତ୍ତି ରହିଛି । କାମାକ୍ଷାପୀଠରେ କୁମାରୀ ପୂଜା କରିବା ଏକ ବିଖ୍ୟାତ ପର୍ବ, ମହାମାୟା କୁମାରୀ ରୂପରେ ଏହି ତୀର୍ଥରେ ବିରାଜିତା ।

ବିରଜା କ୍ଷେତ୍ରର ବାରୁଣି ଯାତ୍ରା ଏକ ବଡ଼ ପର୍ବ । ଏହା ବ୍ୟତୀତ ଏଠାରେ ଶାରଦୀୟ ଦୁର୍ଗାପୂଜା ମକର ଉତ୍ସବ ଆଦି ପର୍ବ ପାଳନ କରାଯାଏ । ବିରଜା ଦେବୀଙ୍କ ଜନ୍ମଉତ୍ସବ ଏକ ବିଶିଷ୍ଟ ପର୍ବ । ମାଘମାସ ତ୍ରିବେଣୀ ଅମାବାସ୍ୟା ଶ୍ରବଣା ନକ୍ଷତ୍ରଯୁକ୍ତ ମକର ଚନ୍ଦ୍ରରେ ବିରଜାଙ୍କ ଏହି ଜନ୍ମ ଉତ୍ସବ ପାଳିତ ହୋଇଥାଏ । ଏହାଛଡ଼ା ଫାଲ୍ଗୁନ ମାସରେ ଦୋଳଯାତ୍ରା, ଚୈତ୍ରରେ ହୟଗ୍ରୀବ ପୂଜା, ବୈଶାଖରେ ବିଷୁବ ସଂକ୍ରାନ୍ତି ଅଧରପଣା ନୈବେଦ୍ୟ, ଜ୍ୟେଷ୍ଠରେ ସାବିତ୍ରୀ ଅମାବାସ୍ୟା, ଆଷାଢ଼ରେ ଗୁଣ୍ଡିଚାଯାତ ଜଗନ୍ନାଥ ଦର୍ଶନ ସାରି ପୁରୀରୁ ଭକ୍ତଭକ୍ତାଗଣ ଏଠାକୁ ଆସି ନାଭିଗୟାରେ ପିଣ୍ଡଦାନ ସାଙ୍ଗକୁ ବିରଜା ଦର୍ଶନ ବୈତରଣୀ ସ୍ନାନ ଏବଂ ଗୋଦାନ କରିବାର ପରମ୍ପରା ରହିଛି । ଏହାଛଡ଼ା ଶ୍ରାବଣରେ ଚିତୋଉପିଠା ନୈବେଦ୍ୟ ଚିତାଲାଗି ଆମାବାସ୍ୟାରେ ଅର୍ପଣ କରାଯାଏ । ଭାଦ୍ରବ ମାସରେ ଶୁଭ ସୁନିଆ ଏବଂ ଆଶ୍ୱିନ ମାସରେ ଦେବୀଙ୍କ ଷୋଡ଼ଶରାତ୍ରୀ ରୂପୀ ଅନୁଷ୍ଠିତ ହୁଏ ।

କୁମାର ପୂର୍ଣ୍ଣିମା ଦିନ କୋଜାଗରୀ ଲକ୍ଷ୍ମୀରୂପ ଉପଲକ୍ଷେ ଖଇ ନଡ଼ିଆ ନୈବେଦ୍ୟ ଦିଆଯାଏ । ଦେବୀଙ୍କ ସମ୍ମୁଖରେ କଉଡ଼ି ଖେଳ ହୁଏ । ଏହି ଖେଳ ଦେଖିବା ପାଇଁ ବହୁ କୁମାରୀ ଉପସ୍ଥିତ

ରହନ୍ତି । ଏହା କାମାକ୍ଷା ପୀଠର କୁମାରୀ ପୂଜାର ଅନୁରୂପ କହିଲେ ଭୁଲ୍ ହେବ ନାହିଁ ।

କାର୍ତ୍ତିକ ମାସରେ ରାସ ପୂର୍ଣ୍ଣିମା, ମାର୍ଗଶିରରେ ପ୍ରଥମାଷ୍ଟମୀ ଦିନ ଦେବୀଙ୍କୁ ନୂତନ ବସ୍ତ୍ର ପରିଧାନ ବିଧିସମେତ ପୌଷରେ ଧନୁମୁଆଁ ମଧ୍ୟ ଅର୍ପଣ କରାଯାଏ ।

ମୋଟ ଉପରେ ବିରଜା ଦେବୀଙ୍କ ପୀଠରେ ବାରମାସ ଧରି ପର୍ବପର୍ବାଣି ଲାଗି ରହିଥାଏ । କାମାକ୍ଷାପୀଠରେ ଏହିପରି ବିଭିନ୍ନ ପର୍ବପାଳନର ମଧ୍ୟ ବିଧି ରହିଛି । ଆଷାଢ଼ ମାସରେ ଅମ୍ବୁବାସି ଯୋଗ, ଭାଦ୍ରବ ମାସରେ ବେତଧ୍ୱନୀ, ଆଶ୍ୱିନ ମାସରେ ଶାରଦୀୟ ଦୁର୍ଗାପୂଜା, ପୌଷ ମାସରେ ପୁଷ୍ୟାଭିଷେକ, ଚୈତ୍ରରେ ବାସନ୍ତୀପୂଜା, ନବରାତ୍ର ମେଳା ଆଦି ମହାସମାରୋହରେ ପାଳିତ ହୋଇଥାଏ । ବିରଜାପୀଠକୁ ଅତି ପବିତ୍ର ମନେକରି ଦେବନଦୀ ବୈତରଣୀର ମନୋରମ ତଟ ଦେଶରେ ଦେବୀଙ୍କ ବ୍ରହ୍ମର୍ଷି ଯକ୍ଷ ସାଧଚାରଣ ଅଷ୍ଟବସୁ ରୁଦ୍ରଗଣଙ୍କ ସହିତ ଅତି ଆଗ୍ରହରେ ଯଜ୍ଞ ଆରମ୍ଭ କରିଥିଲେ । ଏଥିପାଇଁ ଏଠାରେ ବ୍ରହ୍ମାଙ୍କ ଯଜ୍ଞକୁଣ୍ଡ ସମେତ ଯଜ୍ଞଯୂପ ବା ଶୁଭସ୍ତମ୍ଭ ବିଦ୍ୟମାନ ।

ସେହିପରି କାମାକ୍ଷାଦେବୀଙ୍କ ମନ୍ଦିରର ଉତ୍ତର ପାର୍ଶ୍ୱରେ ଦେବୀଙ୍କର କ୍ରୀଡ଼ା ପୁଷ୍କରିଣୀ ବା ସୌଭାଗ୍ୟ କୁଣ୍ଡ ଅବସ୍ଥିତ । ଏହାକୁ ଇନ୍ଦ୍ରାଦି ଦେବଗଣ ନିର୍ମାଣ କରିଥିବାର କିମ୍ବଦନ୍ତୀ ରହିଛି । ବୈତରଣୀ ତୀର୍ଥ ଦଶାଶ୍ୱମେଧ ଘାଟରେ ସ୍ନାନତର୍ପଣ କରି ଫଳପ୍ରାପ୍ତିର ବିଶ୍ୱାସ ଥିଲା ଭଳି ଏହି ସୌଭାଗ୍ୟ କୁଣ୍ଡର ପଶ୍ଚିମ ଘାଟରେ ସ୍ନାନତର୍ପଣ ଶ୍ରାଦ୍ଧ ପ୍ରଭୃତି କାର୍ଯ୍ୟ କରିବାର ବିଧିବିଧାନ ରହିଛି । ଏହି କୁଣ୍ଡ ପ୍ରଦକ୍ଷିଣ କଲେ ସାରା ବିଶ୍ୱ ପ୍ରଦକ୍ଷିଣର ଫଳପ୍ରାପ୍ତି ହୁଏ ବୋଲି ବିଶ୍ୱାସ ରହିଛି ।

ବିରଜା ପୀଠରେ ଦଶାଶ୍ୱମେଧ ଘାଟ ଉପରେ ଜଗନ୍ନାଥ ବେଢ଼ାର ଉତ୍ତରଦିଗରେ ସିଦ୍ଧିଗଣେଶଙ୍କ ମନ୍ଦିର ବିଦ୍ୟମାନ । ଏହି ମନ୍ଦିରର ମୁଖ ଉତ୍ତର ଦିଗକୁ ଏବଂ ଗଣେଶଙ୍କ ମୁଖ ମଧ୍ୟ ଉତ୍ତରକୁ, ଏହାଙ୍କର ଅପର ନାମ ଗଜକର୍ଣ୍ଣ, ଦ୍ୱାଦଶ ଗଣେଶ ମଧ୍ୟରେ ଏହି ଗଣେଶ ଅନ୍ୟତମ । ଏହାଙ୍କୁ ଦର୍ଶନ କଲେ ସମସ୍ତ ବିଘ୍ନ ବିନାଶନ ହୋଇଥାଏ ବୋଲି ବିଶ୍ୱାସ ।

କାମାକ୍ଷାପୀଠର ସୌଭାଗ୍ୟ କୁଣ୍ଡରେ ପ୍ରଥମେ ସ୍ନାନ ସଂକଳ୍ପ ଓ ମନ୍ତ୍ର ଉଚ୍ଚାରଣ କାର୍ଯ୍ୟ ସମାପ୍ତ କରି ଭକ୍ତଗଣ କୁଣ୍ଡ ପାର୍ଶ୍ୱରେ ଥିବା ଗଣେଶଙ୍କ ପ୍ରତିମୂର୍ତ୍ତି ଦର୍ଶନ କରନ୍ତି ଏବଂ ନିଜର ସମସ୍ତ ବିଘ୍ନ ବିନାଶନ ପାଇଁ ଆକୁଳ ପ୍ରାର୍ଥନା କରିଥାନ୍ତି ।

ଉପରୋକ୍ତ ଉଦାହରଣମାନଙ୍କରୁ ଏହା ସହଜରେ ଗ୍ରହଣ କରିହୁଏ ଯେ ବିରଜାପୀଠ ଏବଂ କାମାକ୍ଷା କ୍ଷେତ୍ରର ଶକ୍ତିପୀଠଦ୍ୱୟ ଶାକ୍ତଧର୍ମର ଦୁଇଟି ଉଜ୍ଜ୍ୱଳ ସ୍ତମ୍ଭ । ଉଭୟ ଦେବୀଙ୍କ ପୂଜା ଉପାସନା ପର୍ବପାଳନ ଆଦିରେ ଅନେକଟା ସାମଞ୍ଜସ୍ୟ ରହିଛି । ଓଡ଼ିଶା ଓ ଆସାମ ଭିତରେ ସାଂସ୍କୃତିକ ଓ ଧର୍ମଧାରା ସଂପର୍କ ସ୍ଥାପନ ପାଇଁ ଉଭୟ ପୀଠର ଅବଦାନ ଯଥେଷ୍ଟ ରହିଛି ।

ବ୍ରହ୍ମପୁରର କଳନାଦ ସହ ବୈତରଣୀର କୁଳୁକୁଳୁ ସଂଗୀତ ମିଶିଯାଇ ସତେ ଅବା ଉଭୟ ପୀଠର ସାଂସ୍କୃତିକ ଚେତନାର ଏକ ମିଳିତ ଅନ୍ତଃସ୍ୱର ସୃଷ୍ଟି କରୁଛି ।



ସମ୍ପାଦକ– 'ବୋଲେ ହୁଁଟି',
କୋରେଇ, ଯାଜପୁର–୭୫୫୦୨୨

# ଓଷା ପରବ

ଡ. ପ୍ରମୋଦିନୀ ହୋତା

ରତ୍ନଗର୍ଭା କୋରାପୁଟ ଯାହାର ବକ୍ଷରେ ଭରପୂର ହୋଇ ରହିଛି ଖଣିଜ ସମ୍ପଦ, ଜଳପ୍ରପାତ ସବୁଜ ବନାନୀ । ଯେଉଁଠି ମଣିଷଟିଏ ଟୋପେ ମହୁଲ ପାଣି ପିଇ ଶୋଷ, ଯନ୍ତ୍ରଣା, ସୁଖ ଦୁଃଖର ମହୋତ୍ସବରେ ନାଚି, ଗାଇ ନିଜର କ୍ଳାନ୍ତି ଦୂର କରେ । କୋରାପୁଟିଆ ମଣିଷଟି ପେଜ ପାଣି ପିଇ ଶୋଇଯାଏ ଶାନ୍ତିରେ, ସ୍ୱପ୍ନ ତା'ରି ପାଇଁ ନିରର୍ଥକ । ଧରିତ୍ରୀ ମାଆ, ପାହାଡ଼, ବଣ, ଝରଣା ତା'ର ଅତି ଆପଣାର । କୋରାପୁଟର ଅନୁପମ ରୂପଲାବଣ୍ୟ ପ୍ରାକୃତିକ ଶୋଭାରାଜି ଆଜିର ବ୍ୟସ୍ତବହୁଳ ମଣିଷକୁ ମୁହୂର୍ତ୍ତକ ପାଇଁ ହେଉ ପଛେ ନିଜର ମୋହରେ ବାନ୍ଧି ରଖିଥାଏ । ରାଶି ରାଶି ନଭଶ୍ଚୁମ୍ବି ପର୍ବତ ଡଙ୍ଗର, ପାହାଡ଼, କଥାକୁହା ଛନ ଛନ ଝରଣା, ଶାନ୍ତ ଶୀତଳ ପରିବେଶ, ଶୀତଦିନର କୁହୁଡ଼ିଭରା ଆକାଶ ବର୍ଷାଦିନର ପାହାଡ଼ର ମଥାରେ ଥରକୁଥର ଛୁଇଁ ଯାଉଥିବା ଧଳା ଧଳା ମେଘଖଣ୍ଡମାନ ମନେହୁଏ ଏକ ସୁନ୍ଦରୀ ରମଣୀର ମଥାର ପଣତ, ଝିପିରି ଝିପିରି ବର୍ଷା ସହିତ ବିଜୁଳିର ଲୁଚକାଳି ଖେଳ, କଳାହାଣ୍ଡିଆ ବାଦଲଢଙ୍କା ଆକାଶର ମନମୁଗ୍ଧକାରୀ ଦୃଶ୍ୟ ସହିତ ଆଦିବାସୀ ରମଣୀର ସାଇଁ ଲାଡ଼ି ଗୀତରେ ବିଭୋର ହୋଇ ପଡ଼ିଥାଏ ଅଜଣା ପଥିକ । ସେ ପଥହରା ହୋଇ କବିଭାବୁକ ପାଲଟିଯାଏ । ଆଦିବାସୀମାନେ ନାନା ପର୍ବପର୍ବାଣି ମାଧ୍ୟମରେ ଜୀବନକୁ ଉପଭୋଗ କରିଥାନ୍ତି । ସେମାନେ ଆକାଶ ଭଳି ଉଦାର ଓ ମାଟି ଭଳି ସହିଷ୍ଣୁ । ଓଷାପରବ ଭାଦ୍ରବମାସ ଶୁକ୍ଳପକ୍ଷ, ପଞ୍ଚମୀଦିନ ଆଦିବାସୀମାନେ ପାଳନ କରିଥାନ୍ତି । ଦିଶାରୀ ଯୋଗ ବାର ଠିକ୍ କରିବା ପରେ ପୂଜାରୀକୁ ଜଣାଇଦିଏ ପର୍ବ କେଉଁଦିନ ପାଳନ କରାଯିବ । ପୂଜାରୀ ମାହେନ୍ଦ୍ର ଲଗ୍ନ ବାହାର କରି ଧାନକେଣ୍ଡାକୁ ଜମିରୁ ଆଣିଥାଏ । ସେହି ଧାନରୁ ନୂଆ ଚାଉଳ ବାହାର କରି ପୁରୁଣା ଚାଉଳ ସହିତ ମିଶାଇ ଚରୁଭାତ ରନ୍ଧା ଯିବା ପରେ କୁରେଇ ପତ୍ରରେ ଗ୍ରାମଦେବୀଙ୍କ ନିକଟରେ ପୂଜା କରିଥାନ୍ତି । କେହି କେହି ଏହି ପର୍ବକୁ ''ପରାନୂଆ ପର୍ବ'' ଭାବରେ ପାଳନ କରିଥାନ୍ତି । ପ୍ରଥମେ ପରା ନାମରେ ଏକପ୍ରକାର ରଙ୍ଗର ଧାନ ଅମଳ କରାଯାଉଥିଲା, ସେହି ଧାନର ଚାଉଳରେ ନୂଆଖିଆ ହେଉଥିଲା । ଆଦିବାସୀମାନଙ୍କ ଦେବତା ଶିବପାର୍ବତୀ ଏବଂ ନନ୍ଦୀ (ବୃଷଭ)ଙ୍କୁ ଏହି ପୂଜାଦିନ ପୂଜା କରାଯାଇଥାଏ । ପ୍ରଥମେ ହାଟରୁ ମାଟିରେ ତିଆରି ବୃଷଭ କିଣାଯାଇଥାଏ । ପରା ଧାନର କୁଣ୍ଡାରେ ନଡ଼ିଆକୁ ଖଣ୍ଡ ଖଣ୍ଡ କରି ମିଶାଯାଇଥାଏ । ସେଥିରେ ଗୁଡ଼ ଚକଟି ଦିଆଯାଏ, କୁରେଇପତ୍ରରେ ସେ ସବୁ ରଖାଯାଏ । ମାଟିରେ ତିଆରି ବୃଷଭକୁ ହଳଦୀ ଚାଉଳର ଚିତା ମୁଣ୍ଡରେ ଦିଆଯାଏ । ନୂଆଲୁଗା ବୃଷଭ ଉପରେ ପକାଯାଏ, କୁରେଇ ପତ୍ରରେ ଥିବା ଭୋଗକୁ, ଦୀପଧୂପ ଦେଇ ବୃଷଭକୁ ପୂଜା କରାଯାଏ । ପ୍ରତି ଘରେ ସମସ୍ତେ ନୂଆଲୁଗା ପିନ୍ଧିଥାନ୍ତି, ରନ୍ଧାଯାଇଥିବା କଖାରୁ, ଶାଗ, କଞ୍ଚା ତୁରୁଞ୍ଜାମାଛ ମିଶାଇ ନୂଆ ଚାଉଳରେ ତିଆରି ଚରୁ ଅନ୍ନକୁ କୁରେଇ ପତ୍ରରେ ରଖି, ଗ୍ରାମଦେବତାଙ୍କ ପୂଜାର୍ଚ୍ଚନା ପରେ ଏକାଠି ବସି ଘରର ସଦସ୍ୟମାନେ ଖାଇଥାନ୍ତି । ଏହିଦିନ ଘରର ପ୍ରତ୍ୟେକ ସଦସ୍ୟକୁ ଘରର ମୁଖିଆ ନୂଆ ପୋଷାକ ପ୍ରଦାନ କରିଥାନ୍ତି । ଏଥିରୁ ଅନୁମାନ କରାଯାଏ ଘରର ସଦସ୍ୟମାନଙ୍କୁ କିପରି ସମ୍ମାନ ଦିଆଯାଏ, ତାହା ଆଦିବାସୀମାନେ ଜାଣିଛନ୍ତି । ଘରର ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କୁ ସମସ୍ତେ ନୂଆବସ୍ତ୍ର ପିନ୍ଧି ମୁଣ୍ଡିଆ ମାରିଥାନ୍ତି । ଏହି ଦିନ ନୂଆ ଧାନରେ ଚୁଡ଼ା ପ୍ରସ୍ତୁତି କରି ଗୁଡ଼ ସହିତ ମିଶାଇ ଘରର ସମସ୍ତ ସଦସ୍ୟ ଏକାଠି ବସି ଖାଇଥାନ୍ତି । ସାରୁପତ୍ର ତରକାରିରେ ତୁରୁଞ୍ଜା ମାଛ କିମ୍ବା ଶୁଖୁଆକୁ ମିଶାଇ ଏକପ୍ରକାର ସ୍ୱାଦିଷ୍ଟ ଭୋଜନ ପ୍ରସ୍ତୁତ କରିଥାନ୍ତି । ନୂଆବସ୍ତ୍ର ପିନ୍ଧି ସେମାନେ ପରସ୍ପର ମଧ୍ୟରେ ଜୁହାର ଭେଟ ହୋଇଥାନ୍ତି । ଇଷ୍ଟଦେବତା, ଗ୍ରାମ ଠାକୁରାଣୀ, ବୃଷଭକୁ ଭୋଗ କରିବା ପର୍ଯ୍ୟନ୍ତ ଘରର ବୁଢ଼ାଠାରୁ ପିଲା ପର୍ଯ୍ୟନ୍ତ ସମସ୍ତେ ଉପବାସ ରହିଥାନ୍ତି । ଭୋଗ ହେବା ପରେ ସମସ୍ତେ ଏକତ୍ରିତ ଖାଇଥାନ୍ତି । ନୂଆ ଧାନରେ ଚାଉଳ ତିଆରି କରି ନୂଆଖାଇ ପର୍ବ ପାଳନ କରିଥାନ୍ତି । ଏହାପରେ ସମସ୍ତେ ବନ୍ଧୁବାନ୍ଧବ ଘରକୁ ଏବଂ ଗ୍ରାମର

ଘର ଘର ବୁଲି ନୂଆଧାନରେ ତିଆରି ଚୂଡ଼ା, ଗୁଡ଼କୁ ବାଣ୍ଟିଥାନ୍ତି ଜୁହାର ଭେଟ ହୋଇ କହିଥାନ୍ତି ''ବର୍ଷକର ଫଳ ଖାଇ ଆନନ୍ଦିତ ହେଲୁ ଆର ବର୍ଷକୁ କିଏ ରହିବା କି ନାହିଁ କିଏ କହିପାରିବ ନାହିଁ କହି ହସ ପରିହାସ ପରସ୍ପର ହୋଇ ଗାଁ ସାରା ବୁଲିଥାନ୍ତି । ରାତିରେ ମଦ ଓ ମାଂସ ଖାଇ ଆନନ୍ଦରେ ବିତାଇଥାନ୍ତି । ତା'ପରଦିନ ଘରର ଚାଳ ଉପରେ ତଳିଆ ମଝିରେ ଭାତକୁ କୁରେଇ ପତ୍ରରେ ବାନ୍ଧି ପୂର୍ବମୁଖ କରି ରଖିଦିଅନ୍ତି । ସେମାନଙ୍କର ବିଶ୍ୱାସ ଏହାଦ୍ୱାରା ବର୍ଷସାରା ଗ୍ରାମ ଠାକୁରାଣୀ ଘର ପ୍ରତି ଶୁଭଦୃଷ୍ଟି ରଖିଥାନ୍ତି ଏବଂ ଘରର ସମସ୍ତ ସଦସ୍ୟଙ୍କର ମଙ୍ଗଳ ହୁଏ । ଛୋଟ ଛୋଟ ପିଲାମାନେ ପୂଜା ହୋଇଥିବା ବୃଷଭର ପାଦରେ ଚକା ଲଗାଇ ଗାଁ ଦାଣ୍ଡରେ ଗଡ଼ାଇ ଗଡ଼ାଇ ଖେଳିଥାନ୍ତି । ଝିଅମାନେ ମାଟିରେ ତିଆରି ହୋଇଥିବା ରନ୍ଧନପାତ୍ରର ଡଙ୍ଗାରେ ମିଛମିଛିକା ଭାତ ରାନ୍ଧି ରୋଷେଇ କରିବା ଶିଖିଥାନ୍ତି । ସଙ୍ଗାତ ବା ମିତ୍ରମାନଙ୍କୁ ଆଦିବାସୀମାନେ ପ୍ରାଣଠାରୁ ବେଶି ଭଲ ପାଇଥାନ୍ତି । ନୂଆଖିଆ ପର୍ବର ପୂର୍ବଦିନ ଗୋଟିଏ ବଡ଼ ଗୋଲେଇ ନୂଆ ଟୋକେଇ କିଣାଯାଇଥାଏ । ସେଥିରେ ନୂଆଧାନର ଚୂଡ଼ା, ନୂଆ ଗୁଡ଼, ମକ୍କା, ନୂଆବସ୍ତ୍ର ରଖାଯାଏ । ଟୋକେଇକୁ ସାରୁ ପତ୍ର ଦ୍ୱାରା ଢାଙ୍କି ଦିଆଯାଏ । ନୂଆଖିଆ ପରେ ଗୋଟିଏ ଭାରୁଆ ସେହି ଟୋକେଇକୁ ମିତ୍ର କିମ୍ବା ମିତ୍ରପୁଅ ସାଥିରେ ମିତ୍ର ଘରକୁ ସମସ୍ତ ଜିନିଷ ନେଇ ଯାଇଥାଏ । ମିତ୍ର ବା ସଙ୍ଗାତ ଘରେ ମିତ୍ର ପହଞ୍ଚିଲା ପରେ ପ୍ରଥମେ ମିତ୍ରର ପାଦକୁ ପାଣିରେ ଧୋଇ, ହଳଦୀ ଚାଉଳ ମିଶା ଟୀକା ସଙ୍ଗାତର ମଥାରେ ଲଗାଇ ଜୁହାର କରି ଘର ଭିତରକୁ ଡାକିଥାନ୍ତି ଏବଂ ସମସ୍ତ ଜିନିଷ ଗ୍ରହଣ କରିଥାନ୍ତି । ଏହାକୁ ''ପରା ଯୋଗାଡ଼'' କୁହାଯାଏ । ଏହି ଯୋଗାଡ଼କୁ ଗ୍ରହଣ କରି ମିତ୍ରକୁ ମଦ ସଲପ ଦେଇ ଅତିଥି ସତ୍କାର କରିଥାନ୍ତି । ତା'ପରେ ନବାନ୍ନ ଖାଇବାକୁ ମିତ୍ରକୁ ଦିଆଯାଏ । ଏହା ସହିତ ଖାଇବାକୁ ମଦ, ମାଂସ, ମାଛ ଦେଇ ମିତ୍ରଘର ଲୋକ ସମ୍ପର୍କ ବଢ଼ାଇଥାନ୍ତି । ତା'ପରେ ମିତ୍ର ଘର ଲୋକ ଯୋଗାଡ଼ ନେଇଥିବା ମିତ୍ରକୁ ବିଦାୟ ଦେଇଥାନ୍ତି । କିଛି ଦିନ ପରେ ଆଗରୁ ଦେଇଥିବା ମିତ୍ରର ସମସ୍ତ ଜିନିଷକୁ ଧରି ଯୋଗାଡ଼ ନେଇଥିବା ମିତ୍ର ଫେରସ୍ତ କରିବାକୁ ଯାଇଥାନ୍ତି । ଏହି ଦିଆନିଆ ପ୍ରଥାଦ୍ୱାରା ମିତ୍ରତା ସୁଦୃଢ଼ ହୋଇଥାଏ ।

ଯଦି ଏହି ଦିଆନିଆ ପ୍ରଥାରେ ଗୋଟିଏ ବର୍ଷ ଡେରି ହୋଇଯାଏ ତେବେ ପରସ୍ପରର ମିତ୍ରତା ଛିନ୍ନ ହୋଇଥାଏ । ପ୍ରତିବର୍ଷ ଯାହାର ଯୋଗାଡ଼ ଆଦାନ ପ୍ରଦାନ ଚାଲିଥାଏ ସେହିମାନଙ୍କ ମିତ୍ରତାର ସମ୍ପର୍କ ବଢ଼ିଥାଏ । ଆଗରୁ ବାଲ୍ୟ ବିବାହ ପ୍ରଥା ଆଦିବାସୀମାନଙ୍କ ମଧ୍ୟରେ ରହିଥିଲା । ତେଣୁ ଯେଉଁ ଝିଅର ନିର୍ବନ୍ଧ ହୋଇଯାଇଥାଏ, ନୂଆଖିଆ ଦିନ ବରଘରର ଲୋକ କନ୍ୟାକୁ ନୂଆ ଲୁଗା ପିନ୍ଧାଇ ଖାଇବାକୁ ଦେଇଥାନ୍ତି । ଶ୍ରୀଗୁଣ୍ଡିଚାଦିନ ଆଦିବାସୀ ଯୁବକମାନେ 'ଘରଣ୍ଡି' ନାମକ ଏକ କାଠଦଣ୍ଡରେ, ପାଦ ଅନୁଯାୟୀ ଏକ କୀଳା ପିନ୍ଧାଇ ଧରିବା ପାଇଁ ଛାତିରେ ଦଣ୍ଡ ଲଗାଇ ବୁଲିଥାନ୍ତି ଏବଂ ପରସ୍ପର ଘରଣ୍ଡି ଯୁଦ୍ଧ କରିଥାନ୍ତି । ଘରଣ୍ଡିର କୀଳା ତଳେ ଖୋଳ କରି ତା ଭିତରେ ଗୋଡ଼ ରଖି ଟିଣ ଛାପ ଦେଇଥାନ୍ତି । ତେଣୁ ପ୍ରତିଟି କୀଳାରେ ଘରଣ୍ଡିର ଝମ୍ ଝମ୍ ଶବ୍ଦ ହୁଏ । ଘରଣ୍ଡିରୁ ପଡ଼ିଗଲେ ସେମାନେ ହାରିଯାନ୍ତି । ଘରଣ୍ଡି ଚଢ଼ିବା ଯୁବକମାନଙ୍କୁ 'ଘରଣ୍ଡି ଦଣ୍ଡା' କୁହାଯାଏ । ଏହି ଘରଣ୍ଡି ଚଢ଼ିବା ଯୁବକମାନେ ଘରଣ୍ଡିକୁ ଗାଁ ଦାଣ୍ଡରେ ରଖିଥାନ୍ତି । ନୂଆଖିଆ ପର୍ବ ଦିନ ପ୍ରଭାତରୁ ଉଠି ଚାଉଳ, ପନିପରିବା, କୁକୁଡ଼ା ନେଇ ଗାଁ ବାହାରେ ସେହି ଦଣ୍ଡଗୁଡ଼ିକୁ ଏକତ୍ରିତ କରି ଘରଣ୍ଡି ଚଢ଼ିବା ଯୁବକମାନେ ପୂଜାର୍ଚ୍ଚନା କରିଥାନ୍ତି ଏବଂ ଗ୍ରାମଦେବତା ଓ ଗ୍ରାମଦେବୀଙ୍କ ଉଦ୍ଦେଶ୍ୟରେ ଖଇରା କୁକୁଡ଼ା ବଳି ଦେଇଥାନ୍ତି । ପୂର୍ବଦିନ ରାତିରେ ଏହି ଯୁବକମାନେ ଗାଁର ପ୍ରତ୍ୟେକଙ୍କ ବାଡ଼ିରେ ଥିବା ପନିପରିବା, ଫଳମୂଳ ଚୋରାଇ ନେଇଥାନ୍ତି । ସେହି ପରିବା, ଫଳମୂଳକୁ ସେଦିନ ରୋଷେଇ କରି ଖାଇଥାନ୍ତି । ନୂଆଖିଆ ପରଦିନଠାରୁ ଘରଣ୍ଡି ଚଢ଼ିବା, ତିଆରି କରିବା ମନା ଥାଏ । ପୁଣି ଥରେ ଶ୍ରୀଗୁଣ୍ଡିଚା ଦିନ ସେମାନେ ଘରଣ୍ଡି ତିଆରି କରି ଚଢ଼ିଥାନ୍ତି । ଘରଣ୍ଡି ହେଉଛି ଏକପ୍ରକାର ପାଦୁକ ବା ଜୋତା । ଏହାକୁ ଚଢ଼ି ଲୋକମାନେ ପୂର୍ବେ ବର୍ଷା ଦିନରେ ଯିବାଆସିବା କରୁଥିଲେ । ବର୍ତ୍ତମାନ ଏହି ଘରଣ୍ଡି ପିନ୍ଧିବାକୁ କେହି ପସନ୍ଦ କରୁ ନାହାନ୍ତି । ସମସ୍ତେ ଜୋତା ପିନ୍ଧି ଯାତାୟାତ କରୁଛନ୍ତି । ଘରଣ୍ଡି ଚଢ଼ିବା ସମୟରେ ଘରଣ୍ଡିକୁ ପୂଜା କରାଯାଏ । ଅନେକ ଏହା ଉପରୁ ପଡ଼ିଯିବା ଦ୍ୱାରା ଗୋଡ଼ହାତ ଖଣ୍ଡିଆ ଖାବରା ହୋଇ ଗୋଡ଼ ମଧ୍ୟ ଭାଙ୍ଗିଥାନ୍ତି । ନୂଆଖିଆ ପରଦିନ ଘରଣ୍ଡି ବିସର୍ଜନ ହୁଏ । ଏହାକୁ ନୂଆଖିଆ 'ଘରଣ୍ଡି ବହଲାନି' କୁହାଯାଏ । ଏହାକୁ 'ଓଷା ପରବ' ବା 'ନୂଆଖିଆ ପରବ' କୁହାଯାଏ ।

ଗଦବାମାନେ ନୂଆଖିଆ ବା ଓଷା ପରବ ଦିନ ଗୃହ ଦେବତାଙ୍କୁ ନଡ଼ିଆ, କୁକୁଡ଼ା ଗଞ୍ଜା ବଳିଦେଇ, ତରଗା କନ୍ଦାକୁ ନୂଆଧାନରେ ମିଶାଇ ''ସରୁଭାତ'' ରାନ୍ଧି ସେହି ଭୋଗକୁ ପୂଜା

କରିଥାନ୍ତି । ଗୃହଦେବତାଙ୍କୁ ପୂଜାର୍ଚ୍ଚନା କରିବା ପରେ ଘରର ସମସ୍ତେ ଏକତ୍ର ନୂଆ ଲୁଗା ପରିଧାନ କରି ଏକାଠି ଶିଆଳି ପତ୍ରରେ ନୂଆ ଖାଇଥାନ୍ତି । ନୂଆ ଧାନ ନ ମିଳିଲେ ନୂଆଧାନର ପତ୍ରକୁ ପକାଇ, ପୁରୁଣା ଚାଉଳରେ ଚରୁ ଭାତ ପ୍ରସ୍ତୁତ କରିଥାନ୍ତି ଏବଂ ସେହି ଅନ୍ନକୁ ପୂଜା କରିଥାନ୍ତି । ହୁଣ୍ଡୀ ଦେବତା ପାଖରେ ଗୃହଦେବତାଙ୍କୁ ପୂଜା କଲା ପରେ ପୂଜାରୀ ଧଳା କୁକୁଡ଼ା, ନଡ଼ିଆ ନେଇ ଗାଁ ମୁଣ୍ଡରେ ଗ୍ରାମଦେବତାଙ୍କୁ ପୂଜା କରି ''ବଉଳାଣି ପୂଜା'' କରିଥାନ୍ତି । ସେମାନେ ସୂର୍ଯ୍ୟଙ୍କୁ ମଧ୍ୟ ପୂଜା କରିଥାନ୍ତି । ଗଣ୍ଡମାନେ ଏହି ପର୍ବରେ ଦେବୀଦେବତାଙ୍କୁ ଛେଳି, କୁକୁଡ଼ା ବଳି ଦେଇ ନୂଆ ଚାଉଳରେ ଭାତ ରାନ୍ଧି ପୂଜା କରିଥାନ୍ତି । ବନ୍ଧୁବାନ୍ଧବଙ୍କୁ ଘରକୁ ଡାକି ଜୁହାର ଭେଟ ହୋଇଥାନ୍ତି । ଏହି ପର୍ବରେ ''କୁମୁଡ଼ା ଡାଲ'' ଖାଇଯାନ୍ତି । ତା' ସହିତ ମଦ, ମାଂସ ଭୋଜି ଖାଇ ଖୁସୀରେ ଦିନ ବିତାନ୍ତି । ନିଜେ ନୂଆଲୁଗା ପିନ୍ଧି ବନ୍ଧୁବାନ୍ଧବମାନଙ୍କୁ ମଧ୍ୟ ନୂଆ ଲୁଗା ଦେଇଥାନ୍ତି ।

ଆଦିବାସୀମାନେ ଗୋଷ୍ଠୀ ଜୀବନକୁ ଖୁବ୍ ଭଲ ପାଇଥାନ୍ତି । ଆଜି ମଣିଷଟି ଆଧୁନିକତାର ଦ୍ୱାହି ଦେଇ ପରିବାର, ଜ୍ଞାତିକୁଟୁମ୍ବଠାରୁ ବାପା ମା' ବୁଢ଼ା ବୁଢ଼ୀ ହେଲେ ଦୂରରେ ରହିବାକୁ ଭଲ ପାଉଛି । ଛୋଟ ପରିବାର ଭିତରେ ରହି ସ୍ତ୍ରୀର ମା' ବାପାକୁ ନିଜର କରି ନିଜର କଥା ଚିନ୍ତା କରୁଛି । ସେ ଜାଣି ପାରୁ ନାହିଁ ଯେ ଯନ୍ତ୍ର ସଭ୍ୟତା ଓ ପ୍ରାଚୁର୍ଯ୍ୟର ମୋହ କ୍ଷଣସ୍ଥାୟୀ, ନାଗଫାଶରେ ଛନ୍ଦି ହୋଇ ଛଟପଟ ହେବା ଛଡ଼ା କିଛି ନୁହଁ । ଆମେମାନେ ଆଦିବାସୀମାନଙ୍କଠାରୁ ଗୋଷ୍ଠୀଜୀବନ, ପରିବାର ସହ ଏକତ୍ରିତ ରହିବା ଶିକ୍ଷା କରିବା ଦରକାର । ସମାଜର କଲ୍ୟାଣ ପାଇଁ ଆମେ ସମସ୍ତେ ପରିବାର, ବନ୍ଧୁବାନ୍ଧବ, ଗୋଷ୍ଠୀ ସହିତ ଏକତ୍ରିତ ହୋଇ ପରସ୍ପର ପ୍ରତି ସହଯୋଗ, ସହାନୁଭୂତିର ମନ୍ତ୍ର ନେଇ ଆଗେଇ ଚାଲିବା ଦରକାର । ତାହା ହେଲେ ଦେଶର, ସମାଜର ମଙ୍ଗଳ ହେବ ।



ବିଭାଗୀୟ ମୁଖ୍ୟ
ଶିକ୍ଷା ବିଭାଗ
ଖଲ୍ଲିକୋଟ (ସ୍ୱୟଂଶାସିତ) ମହାବିଦ୍ୟାଳୟ, ବ୍ରହ୍ମପୁର

# ମା ଚର୍ଚ୍ଚିକାଙ୍କ ଘଟପର୍ବ ଓ ଚାଚେରୀଲୀଳା

ଶରତ ଚନ୍ଦ୍ର ମହାପାତ୍ର

ଫଗୁଣ ମାସ ପୂର୍ଣ୍ଣିମା ଦୋଳପୂର୍ଣ୍ଣିମା ଉତ୍କଳୀୟମାନଙ୍କର ପରମ୍ପରାର ପ୍ରତୀକ ଭାବେ ମହାସମାରୋହରେ ପୁରପଲ୍ଲୀଠାରୁ ଆରମ୍ଭ କରି ସହର ବଜାର ପର୍ଯ୍ୟନ୍ତ ସର୍ବତ୍ର ଉଦ୍ଦୀପନା ସହ ପାଳିତ ହୁଏ । ଯାହା ଜଗନ୍ନାଥ ସଂସ୍କୃତିର ଅଙ୍ଗବିଶେଷ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଦିନ ବାଙ୍କୀର ଇଷ୍ଟଦେବୀ ମା' ଚର୍ଚ୍ଚିକାଙ୍କ ପୀଠରେ ମଧ୍ୟ ପବିତ୍ର ଘଟପର୍ବ ଧୂମ୍‌ଧାମ୍‌ରେ ଆରମ୍ଭ ହୁଏ । ଉକ୍ତ ଦିନ ଭୋର ଚାରି ଘଟିକା ସମୟରେ ମା'ଙ୍କ ପହଡ଼ ଉନ୍ମୁକ୍ତ ହୁଏ । ମଙ୍ଗଳ ଆଳତୀ, ଦନ୍ତ ଶୋଧନ, ସ୍ନାନ, ମାଜଣା ଚନ୍ଦନ ଲାଗି ଶାଢ଼ି ଅଳଙ୍କାର ମଣ୍ଡନ ଇତ୍ୟାଦି ୫ଟି ଅବକାଶ ବିଧିବିଧାନ ଅନୁଯାୟୀ ସମାପନ ହୁଏ । ପରବର୍ତ୍ତୀ ପର୍ଯ୍ୟାୟରେ ସୂର୍ଯ୍ୟପୂଜା, ଛାମୁ ପୂଜା ଓ ଗମ୍ଭୀରା ଭିତରେ ମା'ଙ୍କ ପାଖରେ ବଲ୍ଲଭ ପୂଜା କରାଯାଏ । ମା'ଙ୍କର ଏହି ପ୍ରାତଃକାଳୀନ ନୀତିକାନ୍ତି ସରିବା ପରେ ଆରମ୍ଭ ହୁଏ ଭକ୍ତମାନଙ୍କର ଭୋଗ (ଶୁଖୁଲି) ପୂଜାର ପର୍ବ । ପୂର୍ବାହ୍ଣ ୧୦ ଘଟିକା ସମୟରେ ସକାଳ ଧୂପ, ୨ ଘଟିକା ସମୟରେ ଦ୍ୱିପ୍ରହର ଧୂପ, ସାନ୍ଧ୍ୟ ସମୟରେ ସନ୍ଧ୍ୟା ଆଳତୀ ଓ ରାତ୍ର ୧୦ ଘଟିକା ସମୟରେ ରାତ୍ର ଧୂପ ଅନୁଷ୍ଠିତ ହୁଏ । ଏହି ଦିନ ଉପର ମଣ୍ଡପର ସିଂହ ମୂର୍ତ୍ତି ପାର୍ଶ୍ୱରେ ଇଷ୍ଟଦେବୀ ମା' ଚର୍ଚ୍ଚିକାଙ୍କ ପାର୍ଶ୍ୱରେ ପ୍ରଥମେ ନୂତନ ପଞ୍ଜିକା ଅବଧାନଙ୍କ ଦ୍ୱାରା ପଠନ କରାଇ ଦେଶ ଦଶର ନକ୍ଷତ୍ର ଚଳଣି ଓ ପ୍ରତ୍ୟେକ ଭକ୍ତଙ୍କର ବାର୍ଷିକ ରାଶିଫଳ କୁହାଯାଉଥିବାରୁ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଶହ ଶହ ଭକ୍ତ ଏହି ସ୍ଥାନରେ ରୁଣ୍ଡ ହୁଅନ୍ତି । ସେମାନେ ଜୀବନ ଦର୍ଶନର ସ୍ୱତନ୍ତ୍ର ଚିନ୍ତାଧାରାରେ ମଗ୍ନ ହୋଇପଡ଼ନ୍ତି । ଅପରାହ୍ଣ ମାହେନ୍ଦ୍ର ମୁହୂର୍ତ୍ତରେ ମା'ଙ୍କ ଘଟ ଓ ଆଜ୍ଞାମାଳ ମାଙ୍କ ପାର୍ଶ୍ୱରୁ ଏକ ତାମ୍ର ପାତ୍ରରେ ଘଣ୍ଟ, ଘଣ୍ଟା ହୁଳହୁଳି ମଧ୍ୟରେ ଘଟ ପାଳିଆମାନେ ଆଣି ଘଟ ଘରେ ନୂତନ ବସ୍ତ୍ର ଉପରେ ରଖନ୍ତି । ଏହି ପର୍ବର ବିଶେଷତ୍ୱ ହେଲା ଧଳା ଚମ୍ପା, ଅରଖ, ପଳାଶ ଫୁଲ ଯାହାକୁ ସେମାନେ ମାଇଲ ମାଇଲ ଦୂରରୁ ସଂଗ୍ରହ କରି ଆଣିଥାନ୍ତି । ମା'ଙ୍କର ଘଟ କ'ଣ ଏକ ପ୍ରଶ୍ନବାଚୀ ସୃଷ୍ଟି କରେ । ଘଟ ଅର୍ଥ ପ୍ରତିମୂର୍ତ୍ତି ବୋଲି ସାଧାରଣରେ ବୁଝାଯାଏ । ମାତ୍ର ଏ କ୍ଷେତ୍ରରେ ଯେଉଁମାନେ ଆଣନ୍ତି ସେମାନେ ପ୍ରତିମୂର୍ତ୍ତି ନୁହେଁ, କ'ଣ ଆଣନ୍ତି ତାହା ଗୁପ୍ତ ରହେ । ବେତ୍ର ନିର୍ମିତ ଆଉ ଏକ ଗମ୍ବୁଜାକାର ଖୋପ ଉପରଲିଖିତ ପୁଷ୍ପଦ୍ୱାରା ସୁସଜ୍ଜିତ ହୁଅନ୍ତି । ଖଡ଼ିକାରେ ନିର୍ମିତ ଟାହିଆ ଓ ପୁଷ୍ପ ହାରର ଝାଲେରି ଏହି ଖୋପରେ ଖଞ୍ଜାଯାଏ । ମା'ଙ୍କ ଶକ୍ତିସମ୍ପନ୍ନ ଘଟ ଏକ ମାଟି କଳସୀରେ ରଖାଯାଆନ୍ତି । ମାଟିର କଳସୀ ଉପରେ ଉକ୍ତ ବେତ୍ର ନିର୍ମିତ ଖୋପକୁ ରଖି ସ୍ଥାପନ କରି ଦିଆଯାଏ, ଯେପରି ମା'ଙ୍କ ଘଟ ଦୃଶ୍ୟମାନ ହୁଏ ନାହିଁ । ଏହା ହେଲା ଘଟପରି ପ୍ରଥମ ପର୍ଯ୍ୟାୟ ବିଧିବିଧାନ । ମା'ଙ୍କ ଘଟ ଜାତି, ବର୍ଣ୍ଣ ନିର୍ବିଶେଷରେ ପ୍ରଥମେ ମନ୍ଦିର ସାହି ନିକଟବର୍ତ୍ତୀ ବାଉରୀ ସାହିରେ ବନ୍ଦାପନା ହୁଅନ୍ତି । ତେଣୁ ମା' ଦୋଳପୂର୍ଣ୍ଣିମା ଦିନ ତାଙ୍କରି ସାହିରେ ପ୍ରଥମେ ବନ୍ଦାପନା ହେବାର ତାଙ୍କ ମନରେ ଅପୂର୍ବ ଆଗ୍ରହ ଉତ୍ସାହ, ଉଦ୍ଦୀପନା ପରିଲକ୍ଷିତ ହୁଏ । ବହୁ ଦିନ ପୂର୍ବେ ତାଙ୍କ ସାହିରେ ସଭା ବସି ସେଦିନ କେହି ମଦ୍ୟପାନ କରିବେନି ଓ ମା'ଙ୍କୁ କିପରି ସୁରୁଖୁରୁରେ ପଥର ତୁଠଠାରୁ ଆସିବେ, ସେଥିପାଇଁ ଆତସବାଜି ଢୋଲକାଠ, ବୁଢ଼ାବୁଢ଼ୀନତ, ରାସ୍ତା ପରିଷ୍କାର, ତୋରଣ ଲିଚୁ ଲଗେଇବା ଇତ୍ୟାଦି କାର୍ଯ୍ୟପନ୍ଥା ନିଜେ ଗ୍ରହଣ କରିଥାନ୍ତି । ସେଦିନ ପୂର୍ବାହ୍ଣରେ ମା'ଙ୍କ ନିମନ୍ତ୍ରଣ କରନ୍ତି । ବାଉରୀ ସାହିର ଦକ୍ଷିଣ ପାର୍ଶ୍ୱ ଓ ବାଙ୍କୀ ମୁଖ୍ୟ ରାସ୍ତାର ପଶ୍ଚିମ ପାର୍ଶ୍ୱରେ ସଲଗ୍ନ ଏହି ପବିତ୍ର ପଥର ତୁଠ ପୁଷ୍କରିଣୀ ଅବସ୍ଥିତ । ମା'ଙ୍କ ଘଟକୁ ରାତ୍ରର ଦ୍ୱିତୀୟ ପ୍ରହରରେ ନିଆଯାଇ ସେଠାରେ ବିଧିବିଧାନ ଅନୁଯାୟୀ ସ୍ନାନାଭିଷେକ କରାଯାଏ । ପାଟପୁରସ୍ଥ ଜଣେ ବ୍ୟକ୍ତି ମା'ଙ୍କର କାଳେସୀ କର୍ମ ସୁଚାରୁରୂପେ ମହାବିଷୁବ ସଂକ୍ରାନ୍ତି ପର୍ଯ୍ୟନ୍ତ ପାଳନ କରନ୍ତି । ବଂଶାନୁକ୍ରମେ ସେ ଏହି କର୍ମସମ୍ପାଦନା କରନ୍ତି । ସେ ପୁଷ୍କରିଣୀରେ ପ୍ରଥମେ ୭ ଥର ବୁଡ଼ ପକେଇ ଲାଲ, କଳା ରଙ୍ଗର କୁର୍ତ୍ତା ଓ ପାଇଜାମା ପିନ୍ଧନ୍ତି । ସେଠାରେ ନିର୍ମିତ ହୋଇଥିବା ଚାନ୍ଦିନୀରେ ମା'ଙ୍କ ପ୍ରଥମ ଘଟପର୍ବ ଆରମ୍ଭ ହୁଏ । ପ୍ରଥମେ ୩ ଫୁଟର ଏକ ରୁଖା ବହୁ ପୁରାତନ କାଳୁ ରହିଛି, ତା'ର ଖୋପରେ ସୁସଜ୍ଜିତ ଘଟ କଳସକୁ ସ୍ଥାପନ କରି ବଟାବିରି ଲେପ ଦେଇ

ମଜଭୂତ ରୁଖାଲାଗି କରି ଲଗେଇ ଦିଆଯାଏ ଯେପରି କାଳେସୀ ଘଟକୁ ରୁଖା ସହ ମୁଣ୍ଡରେ ରଖି ନାଚିଲେ କଳସୀ ଖସି ଯିବାର ସମ୍ଭାବନା ନ ଥାଏ । ନଳୁଆ ମସାଲ ଲାଗିହୁଏ । ମା'ଙ୍କ ଘଟଙ୍କର ସବୁପ୍ରକାର ବିଧିବିଧାନ ସରିବା ପରେ ସେ ମଣ୍ଡପରେ ମାଗୁର ମାଛ ବଳି ଦିଆଯାଏ । ବାଉରୀ ସାହିର ମହିଳାମାନେ ସାରାଦିନ ଉପବାସ ରହି ନୂତନ ବସ୍ତ୍ର ଉପରେ ସାଷ୍ଟାଙ୍ଗେ ପାହାଡ଼ା ପୁଷ୍କରିଣୀ ଠାରୁ ସାହି ପର୍ଯ୍ୟନ୍ତ ରାସ୍ତାରେ ପଡ଼ନ୍ତି । ଘଣ୍ଟ ଘଣ୍ଟା ଢୋଲକାଠ, ବୁଢ଼ାବୁଢ଼ୀଅଣି ନୃତ୍ୟ ଆତସବାଜି ଆଦିରେ ପବିତ୍ର ପଥର ତୁଠ ହରିବୋଲ ହୁଳହୁଳିରେ ଗଗନ ପବନ ପ୍ରକମ୍ପିତ ହୋଇ ଉଠେ । ମା'ଙ୍କ ଘଟ ଘଟୁଆ ମାନେ ବହନ କରି ଆଣିଲାବେଳେ କାଳେସୀ, ପାହାଡ଼ା ପଡ଼ିଥିବା ଭକ୍ତମାନଙ୍କୁ ଜଳପୁଷ୍ପ ପକେଇ ଉଠିବାକୁ ଆଦେଶ ଦିଅନ୍ତି । ମା' ଆସି ସାହିର ମଧ୍ୟସ୍ଥଳରେ ଯେଉଁଠାରେ ଘଣ୍ଟ ଉପରେ ରଖାଯାନ୍ତି ସେ ସ୍ଥାନ ଗୋବର ଦ୍ୱାରା ଲେପନ କରାଯାଇ ମୁରୁଜ ପଡ଼ି ଯେପରି ଭାବରେ ପବିତ୍ର ସୁସ୍ଥ ନିର୍ମଳ କରାଯାଇଥାଏ ସେ ପ୍ରକାର ପବିତ୍ର ମନୋଭାବର ପଟାନ୍ତର ନାହିଁ । କଥାରେ ଅଛି ପବିତ୍ର, ସୁସ୍ଥ, ନିର୍ମଳ ସ୍ଥାନ ମା' ଲକ୍ଷ୍ମୀ ବାଛି ନେଇଥିଲେ । ତେଣୁ ଏ ସ୍ଥାନକୁ ମା' ବା କାହିଁକି ନ ଆସି ପ୍ରଥମେ ପୂଜା ନ ପାଇବେ ?

ସେଠାରେ ବନ୍ଦାପନା ସମାପ୍ତି ପରେ ଘଟଠାକୁରାଣୀଙ୍କୁ କାଳେସୀ ମୁଣ୍ଡରେ ରଖି ହାତରେ ନ ଧରି ଘଣ୍ଟ, ଘଣ୍ଟା, ତୋଲକାଠର ତାଳେ ତାଳେ ନାଚି ନାଚି ମା'ଙ୍କ ଦକ୍ଷିଣ ପାର୍ଶ୍ୱ ପାହାଚ ତଳକୁ ଆସି ମା'ଙ୍କର ପ୍ରଥମ ଘଟନୃତ୍ୟ କରନ୍ତି । ଏହି ନୃତ୍ୟ ଆଜି ଆରମ୍ଭ ହେଲା ଓ ଶେଷ ନୃତ୍ୟ ହୁଏ ବେହେରା ମହାପାତ୍ରଙ୍କ ଦ୍ୱାରରେ ଦୁଇଟି ଖଡ୍ଗ ଧାରଣ କରି ଯାହା ଅନ୍ୟ କାହା ଦ୍ୱାରରେ ହୁଏନି । ନୃତ୍ୟ ସରିବା ପରେ ପାହାଚ ଚକଡାରେ ମାଙ୍କୁ ଘଣ୍ଟ ଉପରେ ବସେଇ ମନ୍ଦିର ସାହିର ସହ ସହ ଭୋଗଥାଳି ରଖାଯାଏ । ଭୋଗଥାଳିର ଦୃଶ୍ୟ ଅତୀବ ମନୋହର । ଘଟଠାକୁରାଣୀଙ୍କ ତିନୋଟି ପୁଷ୍ପର ସଜାସଜି ଦେଖିଲେ ଜଣାଯାଏ ଆଜି ତିନିଗୋଟି ପୁଷ୍ପ ଚମ୍ପା, ଅରଖ, ପଳାଶକ ମନ ଆନନ୍ଦରେ ଭରି ଉଠିଛି । ସତେ ଯେପରି ତାଙ୍କ ଜୀବନର ସାର୍ଥକ ହୋଇଛି । କାରଣ ସେମାନେ ମଧ୍ୟ ଏକମାସ ପର୍ଯ୍ୟନ୍ତ ମା'ଙ୍କ ସେବାରେ ଲାଗିବେ । ଏହି ଘଟପର୍ବର ପ୍ରଥମ ଭୋଗପୂଜା ମାଙ୍କର ପ୍ରଧାନ ଭକ୍ତ ଦ୍ଧ ବିଶ୍ୱନାଥ ମହାପାତ୍ର କରୁଥିଲେ ଓ ଆଜି ମାଙ୍କ ପୂଜାରୀ ଏହି ଭୋଗପୂଜା ଆଳତୀ ଇତ୍ୟାଦି କରୁଛନ୍ତି । ତା'ପରେ ଘଟକୁ ଉପର ଚକଡ଼ାରେ ବିଶ୍ରାମରେ ରଖାଯାଏ । ଏହିଠାରେ ଖଞ୍ଜଣି ଭଜନର ଆୟୋଜନ କରାଯାଇଥାଏ । ଏହା ହେଲା ମା'ଙ୍କ ଦ୍ୱିତୀୟ ପର୍ଯ୍ୟାୟ ବିଧିବିଧାନ ।

ମା'ଙ୍କର ଏହି ପବିତ୍ର ଘଟଯାତ୍ରା ପାଇଁ ଚର୍ଚ୍ଚିକାଗ୍ରାମ ଓ ବଜାରର ଦୋଳ କମିଟି ବସି ମା' କିପରି ସୁରୁଖୁରୁରେ ମହାସମାରୋହରେ ଭୋଗ ଖାଇବେ ସେ ବ୍ୟବସ୍ଥାମାନ ପୂର୍ବରୁ ନିର୍ଦ୍ଧାରିତ ହୁଏ । ପୂର୍ଣ୍ଣିମା ଦିନ ପୂର୍ବାହ୍ନରେ ଏହି କମିଟି ଗୁଆ, ନଡ଼ିଆ, ଫୁଲ, ଅରୁଆ ଚାଉଳ, ଶାଢ଼ୀ ଆଣି ମା'ଙ୍କ ପାଖରେ ଭୋଗ କରି ନିମନ୍ତ୍ରଣ କରନ୍ତି । ସେଦିନ ରାତ୍ରର ତୃତୀୟ ପ୍ରହରରେ ବୁଢ଼ାବୁଢ଼ୀ, ଶବର ଶବରୀ, ଘୋଡ଼ାନୃତ୍ୟ, ପରଜାନୃତ୍ୟ, ରୋଶଣି, ଢୋଲକାଠ, ସଂକୀର୍ତ୍ତନ ଇତ୍ୟାଦି ନାନା ପ୍ରକାରର ପଟୁଆର ସହ ମା'ଙ୍କ ଘଟଙ୍କୁ ପାଛୋଟି ନିଅନ୍ତି ନିଜର ଗ୍ରାମକୁ ଭୋଗ ପାଇବାକୁ । ମା' ଘଟ ଠାକୁରାଣୀ ମା'ଙ୍କ ବିମାନ ସମ୍ମୁଖରେ ରହନ୍ତି ଚାମର ଛତି ତ୍ରାସ ତଳେ । ମା'ଙ୍କ ବିମାନ ପଛରେ ଉତ୍ତରପାର୍ଶ୍ୱ ସାଧାରଣ ଭକ୍ତମାନଙ୍କ ପାଇଁ ଉଦ୍ଦିଷ୍ଟ ପାହାଚ କଡ଼ରେ ପୂଜାପାଉଥିବା ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ବିମାନ ତା' ପଛକୁ ଜଳେଶ୍ୱରଙ୍କ ବିମାନ ଏହିପରି ପଛକୁ ପଛ ୧୫ରୁ ୧୯ଟି ଦୋଳ ବିମାନର ପଟୁଆରରେ ଯିବା ଦୃଶ୍ୟ ଅତୀବ ମନୋହର ହୋଇଥାଏ । ଚର୍ଚ୍ଚିକା ଗ୍ରାମର ପ୍ରତ୍ୟେକ ଦୁଆରେ ମା'ଙ୍କ ଘଟ ଭୋଗ ଖାଆନ୍ତି ଓ ପ୍ରତି ଦୁଆରେ ବନ୍ଦାପନା କରାଯାଏ । ବହୁ ପୁରାକାଳରୁ ପରମ୍ପରା ଅନୁଯାୟୀ ଘଟ ଠାକୁରାଣୀ ରାମପଣ୍ଡା ଦ୍ୱାର ପର୍ଯ୍ୟନ୍ତ ଭୋଗ ପାଆନ୍ତି ଓ ସେହିଠାରୁ ଫେରିଆସନ୍ତି । ଅନ୍ୟ ଘରରେ ଅନ୍ୟ ଦିନ ଭୋଗ ଖାଆନ୍ତି । କେବଳ ମାତ୍ର ବିମାନଗୁଡ଼ିକ ଅମଲାପଡ଼ାରେ ଓ ଆଖପାଖ ସ୍ଥାନମାନଙ୍କରେ ଭୋଗ ପାଇ ଭୋର ୪ ଘଟିକା ସମୟରେ ଫେରିଆସନ୍ତି ବାଙ୍କୀବଜାର ମଧ୍ୟସ୍ଥ ଦୋଳ ବେଦୀକୁ । ସେଠାରେ ସମସ୍ତ ପଟୁଆରର ଅନୁଗାମୀ ଓ ସଂକୀର୍ତ୍ତନ ଦଳମାନଙ୍କ ପାଇଁ ପ୍ରସାଦ ସେବନର ବ୍ୟବସ୍ଥା କରାଯାଇଥାଏ । ପୂର୍ଣ୍ଣିମା ପରଦିନ ଘଟକର ବିଶ୍ରାମର ଦିନ । ତା' ପର ଦିନଠାରୁ ମା'ଙ୍କ ଘଟ କେବଳ ବାଙ୍କୀରେ ପ୍ରତ୍ୟେକ ଦୁଆରେ ଭକ୍ତମାନଙ୍କୁ ଦର୍ଶନ ଦେଇ ଭୋଗ ଖାଇଥାନ୍ତି । ଏହାକୁ ଚାଚେରୀ ଲୀଳା କୁହାଯାଏ । ବହୁ ପୁରାକାଳରେ ଏହା ବାଙ୍କି ରାଜାଙ୍କ ଉଆସରେ ଉଦ୍ଦିଷ୍ଟ ଥିଲା । ମାତ୍ର ଆଜିଠାରୁ ଅର୍ଥାତ୍ ଦୋଳପୂର୍ଣ୍ଣିମୀ ପରଠାରୁ ପଣା ସଂକ୍ରାନ୍ତି ପର୍ଯ୍ୟନ୍ତ ସମସ୍ତଙ୍କ ଦ୍ୱାରକୁ ଯାଇ ଦର୍ଶନ ଦିଅନ୍ତି । ଏହା ଅପୂର୍ବ ଦର୍ଶନ କହିଲେ ଅତ୍ୟୁକ୍ତି ହେବ ନାହିଁ । ମା'ଙ୍କ ଘଟ ପ୍ରଥମେ ରାଜାଙ୍କ ଦୁଆରକୁ ଦୁଇଦିନ ଯାଆନ୍ତି । ପ୍ରଥମ ଦିନ ରାଜାଙ୍କ ପାଇଁ ଓ ତା' ପରଦିନ ରାଜମାତାଙ୍କ ପାଇଁ ଉଦ୍ଦିଷ୍ଟ । ତା'ପରେ ବାଙ୍କୀରେ ଖଞ୍ଜାଜାଗା ଯଥା–ରାଜଗୁରୁ, ବେବର୍ତ୍ତା, ପଡ଼ୋଶୀ, ବକ୍ସି, ସୁବୁଦ୍ଧି ପ୍ରଭୃତି ଆହୁରି ଅନେକ ଖଞ୍ଜାସ୍ଥାନମାନଙ୍କୁ ଭୋଗ

ଖାଇବାକୁ ଯିବା ପରେ ବାଙ୍କୀର ଅନ୍ୟମାନଙ୍କ ଦ୍ୱାରେ ଦ୍ୱାରେ ଦର୍ଶନ ଦିଅନ୍ତି । ଏହା ମା'ଙ୍କର ବର୍ଷକର ଏକ ଅପୂର୍ବ ଲୀଳା । ମହାବିଷୁବସଂକ୍ରାନ୍ତି ଦିନ ମାଙ୍କ ମନ୍ଦିରରେ ବାନା ନେତ ବନ୍ଧାଯାଏ । ମନ୍ଦିରରେ ଏହି ପବିତ୍ର ଦିନକୁ ମିଶେଇ ତିନିଥର ବାନା ବନ୍ଧାଯାଏ । ଆଉ ଦୁଇ ଦିନ ହେଲା ମୂଳାଷ୍ଟମୀ ଓ ମହାଷ୍ଟମୀ ପର୍ବ । ଏହି ଦିନ ମା'ଙ୍କଠାରେ ଦୁଆର ଫିଟା ବଳିପଡ଼େ, ଦୁଇଥର ପରିବର୍ତ୍ତେ ଗୋଟିଏ ଥର ମାଜଣା ହୁଏ ଓ ନେତ ବନ୍ଧାଯାଏ । ଦିବା ୧ ଘଟିକା ସମୟରେ ଘଣ୍ଟ, ଘଣ୍ଟା ଢୋଲକାଠ ବାଦ୍ୟ ସହିତ ସୁସଜ୍ଜିତ ବିମାନ ସମ୍ମୁଖରେ ଘଟ ଯାତ୍ରା କରନ୍ତି ମହାନଦୀକୁ ସ୍ନାନାଭିଷେକ ଓ ପୂଜାପାଇଁ । ମା'ଙ୍କ ଘଟଗୃହରୁ ମହାସମାରୋହରେ ନଦୀକୁ ଯାଆନ୍ତି । ମାଙ୍କର କାଳେସୀ ଗମ୍ଭିରା ଭିତରୁ ମା'ଙ୍କ ପାର୍ଶ୍ୱରୁ ଉଭାହୋଇ ଆସି ତଳ ମଣ୍ଡପରେ ଝାମୁଆମାନଙ୍କ ସ୍କନ୍ଧକୁ ଲମ୍ଫ ପ୍ରଦାନ କରନ୍ତି । ଏହି ଦୃଶ୍ୟ ଅତୀବ ଲୋମହର୍ଷଣକାରୀ । ହରିବୋଲ ହୁଳହୁଳିରେ ଗଗନ ପବନ ପ୍ରକମ୍ପିତ ହୁଏ । ସତେ ଯେପରି ସବୁ ଦେବତାମାନେ ଘଟ ଦର୍ଶନ ପାଇଁ ମା'ଙ୍କ ପୀଠରେ ରୁଣ୍ଡ ହୁଅନ୍ତି । ମା'ଙ୍କର ସୁସଜ୍ଜିତ ବିମାନରେ କନକ ଦୁର୍ଗା ଉପବିଷ୍ଟ । ସମ୍ମୁଖରେ ତାଙ୍କର ଘଟ ଛତି, ତ୍ରାସ ସହ ଝାମୁଆଙ୍କ କାନ୍ଧରେ ବେତ୍ରଧାରୀ କାଳେସୀ କି ଅପୂର୍ବ ଧାର୍ମିକୀ ଭାବଧାରାର ଉତ୍ସ ଖରାଦିନର ଉତ୍ତପ୍ତ ରାସ୍ତା, ମୁଣ୍ଡ ଉପରେ ସୂର୍ଯ୍ୟଙ୍କ ଉତ୍ତାପ, ଭକ୍ତ ଏସବୁ ମାନେ ନାହିଁ । ଉତ୍କଳର ପବିତ୍ର ଗଙ୍ଗା ମହାନଦୀ ତୀରକୁ ଯାତ୍ରା କରନ୍ତି । ସେଠାରେ କାଳେସୀ ସ୍ନାନସାରି ଆସି ବିମାନ ଘଟପୂଜା କରନ୍ତି ତାଙ୍କର ପାରମ୍ପରିକ ପୋଷାକ ପିନ୍ଧି । ସେଠାରେ ମଧ୍ୟ ମାଗୁର ମାଛର ବଳି ପଡ଼େ । ନଦୀକୂଳରେ ନୂତନ ବସ୍ତ୍ର ଉପରେ ପାହାଡ଼ା ପଡ଼ି ଝାମୁଁଆମାନେ କାଳେସୀଙ୍କ ଆଜ୍ଞାକୁ ଅପେକ୍ଷା କରିଥାନ୍ତି । କାଳେସୀ ଆଜ୍ଞାଦେଲେ ଯାଇ ସେମାନେ ନିଆଁଧାରରେ ଝାମୁଁ ଚାଲନ୍ତି । ମା'ଙ୍କର ଘଟକୁ କାଳେସୀ ମୁଣ୍ଡରେ ବହନ କରି ଘଣ୍ଟ ବାଦ୍ୟ ସହିତ ଧୀରେ ଧୀରେ ଫେରିଆସନ୍ତି । କନକ ଦୁର୍ଗାଙ୍କ ସହ ଘଟ ଓ କାଳେସୀ ମନ୍ଦିର ଗମ୍ଭିରା ମଧ୍ୟରେ ପ୍ରବେଶ କରନ୍ତି । କିଛି ସମୟ ପାଇଁ ପହୁଡ଼ ବନ୍ଦ ରହେ । ଭିତରେ ପୂଜାର୍ଚ୍ଚନା ପରେ ପହୁଡ଼ ଉନ୍ମୁକ୍ତ ହୁଏ । ଏହା ପରେ ମା'ଙ୍କର ପଣାଧୂପ ଅନୁଷ୍ଠିତ ହୁଏ । ଏଇଠି ସରିଲା ଘଟଠାକୁରାଣୀଙ୍କ ସମାପନ ଉତ୍ସବ ପୁଣି ଆସନ୍ତା ଦୋଳ ପର୍ଯ୍ୟନ୍ତ । ମା'ଙ୍କର ଏହି ଘଟ ବିଦାକି ଆଷାଢ଼ ମାସ ଘୋଷଯାତ୍ରା ପୂର୍ବରୁ ହୁଏ ସେଇ ପବିତ୍ର ପଥର ତୁଠରେ । ଏକ ମାହେନ୍ଦ୍ର ବେଳାରେ କାଳେସୀ ଏକାକୀ ନିର୍ଜନ ରାତ୍ରରେ ଘଟଙ୍କୁ ନେଇ ଏହି ପୁଷ୍କରିଣୀରେ ବିସର୍ଜନ କରନ୍ତି । ସେଠାରେ ଏକ ଅଲୌକିକ ଘଟଣା ଘଟେ । ବିସର୍ଜନ ମୁହୂର୍ତ୍ତରେ ଏକ ଅଦୃଶ୍ୟ ଶକ୍ତି ପୁଷ୍କରିଣୀ ଜଳକୁ ଲମ୍ଫ ପ୍ରଦାନ କରନ୍ତି ।

୧୫୨୭ ଖ୍ରୀଷ୍ଟାବ୍ଦର କଥା । ଓଡ଼ିଶାର ରଜା ବାଙ୍କୀର ନରେଶ ମଧୁ ଶ୍ରୀଚନ୍ଦନ ସିଂହ ଓ ତାଙ୍କର ସବଂଶଙ୍କୁ ହତ୍ୟା କଲେ । ଏହା ଗହ୍ମାପୂର୍ଣ୍ଣମୀ ଦିନ ଘଟିଥିଲା । ତାଙ୍କର ମର ଶରୀର ମହାନଦୀରେ ଭାସି ଭାସି ବାରବାଟି ଦୁର୍ଗ ସ୍ଥଳରେ ଲାଗିଥିଲା । ବାଙ୍କୀ ରାଣୀ ମୁକ୍ତା ଦେଈ ଅନ୍ତଃସତ୍ତ୍ୱା ଥିଲେ । ସେ ଲୁଚି ଲୁଚି ଆସି ଚର୍ଚ୍ଚିକା ଗ୍ରାମର ବାଳକଦାସଙ୍କ ଘରେ ଆଶ୍ରୟ ନେଇଥିଲେ । ସେ ତାତ୍ପର୍ଯ୍ୟର ସହ ରାଣୀ ସେବା କରୁଥିଲେ । ରାଣୀ ଚର୍ଚ୍ଚିକାଙ୍କ ପ୍ରଗାଢ଼ ଭକ୍ତି ଶକ୍ତି ବଳରେ ଏକ ପୁତ୍ର ଜାତ ହେଲା । ଏହି ପୁତ୍ରକୁ ବାଳକ ଦାଶ ଯୁଦ୍ଧବିଦ୍ୟା ସହ ଅନ୍ୟାନ୍ୟ ବିଦ୍ୟାଶିକ୍ଷା ଦେଇ ପ୍ରତାପଶାଳୀ କରିଥିଲେ । ତାଙ୍କର ନାମକରଣ ହେଲା ମୌଳି ସିଂ ମୂଳିଆ । ତାଙ୍କର ସାଧନା ପୂର୍ଣ୍ଣ ହେଲା । ମୌଳି ସିଂ ମୂଳିଆଙ୍କ ବୀରତ୍ୱ ଆଗରେ ଓଡ଼ିଶା ରାଜା ହାର ମାନିଲେ ଓ ତାଙ୍କୁ ଘାସିପଡ଼ାଠାରୁ ଖମାରଙ୍ଗ ପର୍ଯ୍ୟନ୍ତ ଇଲାକା ଦେଲେ । ପରେ ରାଜା ନରସିଂହ ଜେନାଙ୍କ ଅନ୍ତେ ରାଜା ମୁକୁନ୍ଦଦେବଙ୍କଠାରୁ ସମ୍ପୂର୍ଣ୍ଣ ବାଙ୍କୀ ରାଇଜ ପାଇଥିଲେ । ଏସବୁ ଓଡ଼ିଶା ଇତିହାସ ଓ ମାଦଳା ପାଞ୍ଜିରେ ବର୍ଣ୍ଣିତ । ବାଙ୍କୀ ରାଇଜର ନରେଶ ହୋଇ ସେ ପ୍ରଥମେ କି ପ୍ରକାର କୃତଜ୍ଞତା ଅଜା ବାଳକ ଦାଶଙ୍କୁ ଦେବେ ସେଥିପାଇଁ ଦରବାର ଆହ୍ୱାନ କଲେ । ବାଳକ ଦାଶ ସେଠାରେ କହିଲେ ମୁଁ ରାଜାଙ୍କ ପ୍ରଜାର କର୍ମ କରିଛି । ମୋର ଧନରତ୍ନ ଲୋଡ଼ା ନାହିଁ ଯାହା ଗ୍ରହଣ କଲେ ମୋର ପାପ ହେବ । ମୌଳି ସିଂ ଅତ୍ୟନ୍ତ ଖୁସି ହୋଇ ଦରବାରରେ ଆଦେଶ କଲେ ଘଣ୍ଟ, ଘଣ୍ଟା, କାହାଳୀ, ଛତି, ତ୍ରାସ, ପଟୁଆର ସହ ଆଜିଠାରୁ ମୋ ଉଆସ ସହ ଅଜାଙ୍କ ଗୃହରେ ମା' ଚର୍ଚ୍ଚିକା ଦୋଳପୂର୍ଣ୍ଣିମା ଦିନ ଭୋଗ ଖାଇବେ । ମୌଳି ସିଂ ଅଜାଙ୍କ ମସ୍ତକରେ ପାଟ ପଗଡ଼ି ଶିରିପା ଭିଡ଼ାଗଲା । ଏହା ଚାଚେରୀ ଲୀଳା ନାମରେ ସେଇ ଦିନଠାରୁ ପ୍ରଚଳିତ ହେଉଛି ଯାହା କେବଳ ରାଜାଙ୍କ ଉଆସରେ ଉଦ୍ଦିଷ୍ଟ ନ ହୋଇ ଆଜି ସାରା ବାଙ୍କୀରେ ପ୍ରତ୍ୟେକ ଦ୍ୱାରରେ ଘଟଯାତ୍ରା ଚାଲିଛି । ଏସବୁ ସମ୍ଭବ ହୋଇପାରିଲା ମୌଳି ସିଂଙ୍କ ଓ ତାଙ୍କ ମା'ଙ୍କର ଚର୍ଚ୍ଚିକାଙ୍କଠାରେ ପ୍ରଗାଢ଼ ଭକ୍ତିର ଶକ୍ତି ପ୍ରାବଲ୍ୟତା ଯୋଗୁଁ । ଲାସ୍ୟମୟୀ, ହାସ୍ୟମୟୀ, ଦୁର୍ଗତି ନାଶିନୀ ମା' ଚର୍ଚ୍ଚିକାଙ୍କ ଆଶିଷ ବାରି ସବୁଦିନ ପାଇଁ ବରଷୁଥାଉ ଓ ଜଗତର ମଙ୍ଗଳ ହେଉ, ଏହାହିଁ ମା'ଙ୍କ ପାଖରେ ମୋର ପ୍ରାର୍ଥନା ।



ମନ୍ଦିରସାହି, ବାଙ୍କୀ

# ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ମା' ସମଲେଶ୍ୱରୀ

ଶ୍ରୀନିବାସ ଆଚାର୍ଯ୍ୟ

ବିଶ୍ୱର ଆଧାତ୍ମିକ ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ, ଓଡ଼ିଶା ଏହାର ଐତିହ୍ୟ, କଳା, ସଂସ୍କୃତି ଓ ସାହିତ୍ୟ ଇତ୍ୟାଦିର ପ୍ରଚାର ଓ ପ୍ରସାରର ଏକ ସ୍ୱତନ୍ତ୍ର ସ୍ଥାନ ବହନ କରିଛି । ଏହାର ମୂକସାକ୍ଷୀ ରୂପେ ଶ୍ରୀପୁରୁଷୋତ୍ତମ ପୀଠର, ଜଗତର ନାଥ ଶ୍ରୀଜଗନ୍ନାଥ ବିଦ୍ୟମାନ । ଯେପରି ପ୍ରଭୁ ଶ୍ରୀଜଗନ୍ନାଥ କହିଲେ ସମଗ୍ର ଓଡ଼ିଶାକୁ ବୁଝାଇଥାଏ, ଠିକ୍ ସେପରି ମା' ସମଲେଶ୍ୱରୀ କହିଲେ ସମଗ୍ର ସମ୍ବଲପୁରକୁ ବୁଝାଇଥାଏ । ଆଉ ମଧ୍ୟ ବିଭିନ୍ନ ପୁରାଣ ଶାସ୍ତ୍ର, ବେଦବେଦାନ୍ତ ଅଧ୍ୟୟନ କଲେ ଜଣାଯାଏ ଓଡ଼ିଶାରେ ପଞ୍ଚୋପାସନା ଧର୍ମର ପ୍ରଚାର ଓ ପ୍ରସାର ବହୁଳ ବ୍ୟାପକ । ଏହି ଧର୍ମଗୁଡ଼ିକ ଶୈବ, ସୌର, ଶାକ୍ତ, ବୈଷ୍ଣବ ଓ ଗାଣପତ୍ୟ । ଏଥି ମଧ୍ୟରୁ ଶାକ୍ତଧର୍ମ ତଥା ଶକ୍ତି ଉପାସନା ଓଡ଼ିଶାର କୋଣ ଅନୁକୋଣରେ ତଥା ଗ୍ରାମଠାରୁ ସହର ପର୍ଯ୍ୟନ୍ତ ଏକ ସ୍ୱତନ୍ତ୍ର ପ୍ରାଧାନ୍ୟ ଲାଭ କରିଅଛି । ଏହି ଶକ୍ତି ଓଡ଼ିଶାର ପ୍ରତ୍ୟେକ ଜିଲ୍ଲା, ସଦର ମହକୁମା ଓ ଗ୍ରାମଗୁଡ଼ିକରେ ବିଭିନ୍ନ ନାମ ଓ ରୂପରେ ପୂଜା ପାଉଛନ୍ତି । କିନ୍ତୁ ସମ୍ବଲପୁର ଜିଲ୍ଲାରେ ମା' ସମଲେଶ୍ୱରୀ ନାମରେ ପ୍ରତ୍ୟେକ ସହର, ପାହାଡ଼ ପର୍ବତ, ପୁଣ୍ୟତୋୟା ନଦୀର ତଟ ଦେଶ ଏପରିକି ବଣଜଙ୍ଗଲର ବୃକ୍ଷ ମୂଳରେ ଅଧିଷ୍ଠାତ୍ରୀ ଦେବୀ ରୂପେ କେଉଁ ଆବହମାନ କାଳରୁ ପୂଜା ପାଇଆସୁଛନ୍ତି । ଏହି ଜିଲ୍ଲାର ପ୍ରତ୍ୟେକ ଘରେ ଘରେ ମା' ସମଲେଶ୍ୱରୀ ଗ୍ରାମଦେବୀ ବା ଆରାଧ ଠାକୁରାଣୀ ରୂପେ ଆସ୍ଥାନ ମଣ୍ଡନ କରିଛନ୍ତି । ସମ୍ବଲପୁରବାସୀଙ୍କର ଅତୁଟ ବିଶ୍ୱାସ ଯେ ମା' ଆରାଧ ଦେବୀ ତା'ର ପଣତକାନି ଛାୟାରେ ରଖି ପୁତ୍ର ପରି ଲାଳନ ପାଳନ କରୁଛନ୍ତି । ମା'ଙ୍କର ପ୍ରତ୍ୟକ୍ଷ ସ୍ନେହ, ଶ୍ରଦ୍ଧା ଓ ଶୁଭାଶୀର୍ବାଦ ଓ ତାଙ୍କର ସାନିଧ୍ୟଲାଭ କରି ଆଜି ସମ୍ବଲପୁରର ସମସ୍ତ ଜନସମାଜ ଭାଗ୍ୟବାନ୍ ହୋଇପାରିଛନ୍ତି । ଏଥିପାଇଁ ସେମାନେ ସମଗ୍ର ଭାରତରେ ଗର୍ବିତ ଓ ଗୌରବାନ୍ୱିତ । ଆଉ ମଧ୍ୟ ସମଗ୍ର ମାନବ ସମାଜ ପାଇଁ ଏହା ଏକ ଆଦର୍ଶ ଓ ଦିଗ୍‌ଦର୍ଶନ ।

କଥିତ ଅଛି ସମ୍ବଲପୁରର ନାମ ଦେବୀ ସମଲେଶ୍ୱରୀଙ୍କ ନାମାନୁସାରେ ହୋଇଅଛି । ଆଦିମ ଯୁଗରେ ଆଜିର ସମ୍ବଲପୁର ବଣ, ଜଙ୍ଗଲ, ନଦୀ, ନାଳ ଓ ପାହାଡ଼ ପର୍ବତରେ ପରିପୂର୍ଣ୍ଣ ଥିଲା । ଆଦିମ ସମ୍ପ୍ରଦାୟର ଲୋକମାନେ ଯାଯାବର ରୂପେ ଜୀବିକା ନିର୍ବାହ କରୁଥିଲେ । ସେମାନେ ଥିଲେ ସରଳ, ନିରାଡ଼ମ୍ବର, କର୍ମଠ ଓ କଷ୍ଟସହିଷ୍ଣୁ । ସେମାନେ ଆର୍ଯ୍ୟମାନଙ୍କ ପରି ଶିକ୍ଷା, ସଭ୍ୟତା, କଳା ଓ ସଂସ୍କୃତି ଜାଣି ନ ଥିଲେ ମଧ୍ୟ ବୈଦିକ ପରମ୍ପରା ତଥା ଦେବଦେବୀଙ୍କ ପ୍ରତି ପ୍ରଗାଢ଼ ବିଶ୍ୱାସ ଥିଲା । ସେତେବେଳେ ସେମାନେ ଭୂମିଦେବତାଙ୍କୁ 'ବରାପେନୁ', ଗ୍ରାମ ଦେବତାଙ୍କୁ 'ନାମୟପେନୁ', ଚନ୍ଦ୍ରଙ୍କୁ 'ଚଞ୍ଜୁପେନୁ' ଓ ସୂର୍ଯ୍ୟଙ୍କୁ 'ବଏଲପେନୁ' ପ୍ରଭୃତି ନାମକରଣ ଦେଇ ପୂଜା କରୁଥିଲେ । ପିତାବଳୀ ଥିଲା ସେମାନଙ୍କର ଆରାଧ ଦେବୀ ।

''ଯାଦେବୀ ସର୍ବ ଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।।''

ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି, ସ୍ଥିତି ଓ ପ୍ରଳୟ ମୂଳରେ ପୁରୁଷର ଯେତିକି ଭୂମିକା ରହିଛି, ତତୋଦ୍ଧିକ ରହିଛି ନାରୀର । ତେଣୁ ନାରୀଙ୍କୁ ଏହାର ମୂଳଉତ୍ସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶାର ଶାକ୍ତଧର୍ମ ବା ଶକ୍ତି ଉପାସନାର ପରମ୍ପରା ଅତି ପ୍ରାଚୀନ । ଆଜି ମଧ୍ୟ ପଶ୍ଚିମ ଓଡ଼ିଶାରେ ଥିବା ଶକ୍ତିପୀଠଗୁଡ଼ିକ ଓଡ଼ିଶା କାହିଁକି ସମଗ୍ର ଭାରତରେ ଗୁରୁତ୍ୱ ବହନ କରିଛି । ସେଥିମଧ୍ୟରୁ ସମ୍ବଲପୁରର ମା' କରୁଣା ଓ ଦୟା ପ୍ରଦାୟିନୀ ସମଲେଶ୍ୱରୀ ଅନ୍ୟତମ । ତ୍ରିଶକ୍ତି ସତ୍ତ୍ୱ, ରଜ, ତମଃ ରୂପିଣୀ ଗୁଣକୁ ବହନ କରି ମା' ସମଲେଶ୍ୱରୀ ସମ୍ବଲପୁର ସହର ସଦରମହକୁମାରେ ଥିବା ପୀଠରେ ବିରାଜିତ । ସେ ସର୍ବ ବ୍ୟାପୀ, ତେଣୁ ତାଙ୍କର ମହିମା ଓ ଗୁଣଗରିମା ଅମାପ, ଅସୀମ, ଅସ୍ପଷ୍ଟ ଓ ଅଦୃଶ୍ୟ । ମାତାର ବାତ୍ସଲ୍ୟ ମମତା ପରି ସେ ପ୍ରଦାନ କରି ପାରୁଛନ୍ତି ଶ୍ରଦ୍ଧା, ସ୍ନେହ, କରୁଣା, ଆଶୀର୍ବାଦ ଓ ପ୍ରେମର କଣିକା ସମସ୍ତ

ପରମ ଭକ୍ତମାନଙ୍କୁ । ସେ ହେଉଛନ୍ତି ଏକାଧାରରେ ସମ୍ବଲପୁରର ଆଦିଶକ୍ତି, ଜଗଜ୍ଜନନୀ, ଦୟା ଓ କରୁଣାଦାୟିନୀ, ଅନ୍ନ ଓ ବିଦ୍ୟାପ୍ରଦାୟିନୀ ଅଧିଷ୍ଠାତ୍ରୀ ଦେବୀ ।

ଆଦିମାତା ସମଲେଶ୍ୱରୀ ସମ୍ବଲପୁରରେ କେବେ ଓ କିପରି ଆବିର୍ଭାବ ହେଲେ ତାହାର ସଠିକ୍ ତଥ୍ୟ ଆଜିପର୍ଯ୍ୟନ୍ତ ଅସ୍ପଷ୍ଟ ଥିଲେ ମଧ୍ୟ କେତେକ ପୁରାଣ ଶାସ୍ତ୍ର, ବେଦ ବେଦାନ୍ତ ଓ ଇତିହାସରେ ଭିନ୍ନ ଭିନ୍ନ ମତ ପୋଷଣ ହୋଇଅଛି । ଏକଦା ଏହି ଅଞ୍ଚଳରେ ହୀରାଖଣି ଥିଲା । ଫରାସୀ ପରିବ୍ରାଜକ ଟାଭେର୍ଣ୍ଣି ଓ ଇଂରେଜ ପରିବ୍ରାଜକ ଏଡ଼ୱାର୍ଡ଼ ଗିବନଙ୍କଦ୍ୱାରା ଇତିହାସ କହେ ଏଠାରୁ ରୋମକୁ ହୀରା ରପ୍ତାନି ହେଉଥିଲା । ସମ୍ଭବତଃ ଏହି ରାଜ୍ୟ ୧୫୪୦ ମସିହାରେ ପ୍ରତିଷ୍ଠା ହୋଇଥିଲା ବୋଲି ଐତିହାସିକମାନେ ମତପୋଷଣ କରିଛନ୍ତି । ମା' ସମଲେଶ୍ୱରୀ ଅତି ପ୍ରାଚୀନ କାଳରୁ ସମ୍ବଲପୁରରେ ଆଦିବାସୀ କନ୍ଧ ସମ୍ପ୍ରଦାୟଙ୍କ ଦ୍ୱାରା ପୂଜା ପାଉଥିଲେ ବୋଲି କେହି କେହି କୁହନ୍ତି । ଓଡ଼ିଶାରେ ଥିବା ୧୩ ଅବିଭକ୍ତ ଜିଲ୍ଲା ମଧ୍ୟରେ ସମ୍ବଲପୁର ଜିଲ୍ଲା ସମୃଦ୍ଧିଶାଳୀ, ଖ୍ୟାତି ଓ ଯଶରେ ପ୍ରସିଦ୍ଧ ଲାଭ କରିଆସିଛି ।

ପାଟଣାର ରାଜା ନରସିଂହ ଦେବଙ୍କ କନିଷ୍ଠ ଭ୍ରାତା ବଳରାମ ଦେବ (୧୫୪୦ରୁ ୧୫୫୭) ସମ୍ବଲପୁର ରାଜ୍ୟ ଗଠନର ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏହି ରାଜ୍ୟ ଗଠନ ପୂର୍ବରୁ ଏହା ଥିଲା ଗୋଟିଏ ଗ୍ରାମ । ବଳରାମ ଦେବ ପ୍ରଥମେ ବରଗଡ଼ସ୍ଥିତ ଜୀରାନଦୀର ଅବବାହିକାରେ ଏକ ଅସ୍ଥାୟୀ ରାଜଧାନୀ ପ୍ରତିଷ୍ଠା କରିଥିଲେ । କିନ୍ତୁ ନୂତନ ଭାବରେ ସ୍ଥାୟୀ ରାଜଧାନୀ ପ୍ରତିଷ୍ଠା ପାଇଁ ସ୍ଥାନ ନିରୂପଣ କରିବା ନିମନ୍ତେ ମହାନଦୀର ଦକ୍ଷିଣ ପାର୍ଶ୍ୱରେ ଏକ ଶିବିର ପକାଇଥିଲେ । ଜନଶ୍ରୁତି କହେ ଯେ, ସେଠାରେ ଥିବା ଠେକୁଆମାନେ ରାଜାଙ୍କ ଶିକାରୀ କୁକୁରମାନଙ୍କୁ ମାରିବା ପାଇଁ ଗୋଡ଼ାଇଥିଲେ । କୁକୁରମାନେ ଠେକୁଆମାନଙ୍କୁ ଦେଖି ଭୟଭୀତ ହୋଇ ପଳାୟନପନ୍ଥୀ ପରି ପଳାଇ ଆସିଥିଲେ । ଏହା ଦେଖି ରାଜା ବିସ୍ମିତ ହୋଇ ଯାଇଥିଲେ ଓ ସେଠାରେ କିଛି ଅଲୌକିକ ଶକ୍ତି ଅଛି ବୋଲି ଅନୁମାନ କରିଥିଲେ । ସେହିଦିନ ରାତିରେ ମା' ସମଲେଶ୍ୱରୀ ସ୍ୱପ୍ନ ମାଧ୍ୟମରେ ରାଜାଙ୍କୁ କହିଥିଲେ । ନଦୀର ଅପରପାର୍ଶ୍ୱରେ ଗୋଟିଏ ଶିମୁଳି ବୃକ୍ଷମୂଳେ ମୁଁ ଅଛି । ସେଠାରେ ମନ୍ଦିର ନିର୍ମାଣ କରି ପୂଜା କରିବାକୁ କହିଥିଲେ । ସେହି ଅଞ୍ଚଳରେ ଶିମୁଳିକୁ "ସେମେଲ" କୁହାଯାଉଥିବା ହେତୁ ମା'ଙ୍କ ନାମ ସମଲେଶ୍ୱରୀ ହୋଇଅଛି । ପରବର୍ତ୍ତୀ କାଳରେ ଚୌହାନ୍‌ବଂଶୀୟ ରାଜା ସମଲେଶ୍ୱରୀଙ୍କୁ ଇଷ୍ଟଦେବୀ ରୂପେ ପୂଜା କରୁଥିଲେ ।

ତ୍ରେତାଯୁଗରେ ଲଙ୍କାର ରାଜା ରାବଣ କୈଳାସରେ ଅତୁଟ ସାଧନା ଓ ଶୁଦ୍ଧ ତପସ୍ୟା ବଳରେ ଶିବ ଓ ପାର୍ବତୀଙ୍କଠାରୁ ଅମରତ୍ୱ ପ୍ରାପ୍ତ ହୋଇଥିଲେ । ତତ୍‌ପରେ ରାଜ୍ୟକୁ ରକ୍ଷା କରିବା ପାଇଁ ମା' ଭବାନୀଙ୍କୁ ପ୍ରାର୍ଥନା କରିଥିଲେ । ମା' ଭବାନୀ ସନ୍ତୁଷ୍ଟ ହୋଇ ଲଙ୍କେଶ୍ୱରୀ ନାମରେ ଆବିର୍ଭୂତା ହୋଇ ପୂଜା ପାଉଥିଲେ । ଦେବୀ ଲଙ୍କେଶ୍ୱରୀଙ୍କ ପୂଜା ଓ ବ୍ରହ୍ମାଙ୍କ ଆଶୀର୍ବାଦ ବଳରେ ଧନଧାନ୍ୟ ଓ ସୁଖ ଶାନ୍ତିରେ ଭରପୂର ହୋଇଗଲା । ଏହି ସବୁ ସଫଳତା ଆଣି ଦେଇଥିଲା ରାବଣଙ୍କ ମନରେ ଗର୍ବ ଓ ଅହଂକାର । ଧରାକୁ ସରା ମନେକରି ଅନ୍ୟାୟ ଅତ୍ୟାଚାରୀ କୁକର୍ମ କାର୍ଯ୍ୟ କରିବାକୁ ସେ ପଛାଇ ନ ଥିଲେ । ଏପରିକି ଶ୍ରୀରାମଙ୍କ ପତ୍ନୀ ସତୀ ସୀତାଙ୍କୁ ଅପହରଣ କରି ନେଇଥିଲେ । ରାବଣର ଏହି ସବୁ ଔଦ୍ଧତ୍ୟ ଭସ୍ମୀଭୂତ କରିବା ଓ ସୀତାଙ୍କୁ ଉଦ୍ଧାର କରିବା ପାଇଁ ଶ୍ରୀରାମ ସଦଳବଳେ ରାବଣ ସହିତ ଯୁଦ୍ଧ କରିଥିଲେ । ଯୁଦ୍ଧ ପୂର୍ବରୁ ଶ୍ରୀରାମ ତାଙ୍କର ପରମ ଭକ୍ତ ହନୁମାନ୍‌ଙ୍କୁ ଲଙ୍କାପୁରୀକୁ ପଠାଇଥିଲେ । ରାବଣର ଗର୍ବ ଅହଙ୍କାର ଓ ସତୀ ସୀତାଙ୍କର ଅପହରଣ ଇତ୍ୟାଦି କୁକର୍ମରେ ମା' ଲଙ୍କେଶ୍ୱରୀ ଅସନ୍ତୁଷ୍ଟ ହୋଇଥିଲେ । ହନୁମାନ୍‌ର ଅନୁରୋଧକ୍ରମେ ମା' ଦେବୀ ଲଙ୍କାପୁରୀ ତ୍ୟାଗ କରି ଜମ୍ବୁଦ୍ୱୀପ ନିକଟସ୍ଥ ରାମେଶ୍ୱରଠାରେ ଶ୍ରୀରାମଙ୍କ ଆଗମନକୁ ଅପେକ୍ଷାକରି ରହିଲେ । ଆଉ ମଧ୍ୟ କେତେକ ପୁରାଣରେ ବର୍ଣ୍ଣିତ ଅଛି ପ୍ରଭୁ ରାମଚନ୍ଦ୍ର ରାବଣଙ୍କୁ ନିହତ କରି ମା' ଦେବୀଙ୍କୁ ଅଯୋଧ୍ୟାପୁରୀକୁ ନେଇ ଆସିଥିଲେ । ତତ୍‌ପରେ ସମ୍ବଲପୁରରେ ଆବିର୍ଭାବ ଓ ଲଙ୍କେଶ୍ୱରୀର ସମଲେଶ୍ୱରୀ ନାମକରଣ କିପରି ହେଲା, ତାହା ଏକ ପ୍ରଶ୍ନବାଚୀ । ରାମଙ୍କ ରାଜୁତି ପରେ ତାଙ୍କର ଦୁଇପୁତ୍ର ଲବ ଓ କୁଶ ଅଯୋଧ୍ୟାପୁରୀକୁ ଶାସନ କରୁଥିଲେ । ତତ୍‌କାଳୀନ ସମୟରେ ଅଯୋଧ୍ୟା ଉତ୍ତର କୋଶଳ ଓ ଦକ୍ଷିଣ କୋଶଳ ନାମରେ ନାମିତ ଥିଲା । ଦକ୍ଷିଣ କୋଶଳ ରାଜ୍ୟକୁ କୁଶ ଶାସନ କରୁଥିଲେ । ଏହି ରାଜ୍ୟକୁ ଦକ୍ଷିଣ ଭାରତର ଅସୁର ରାଜା ବାରମ୍ବାର ଆକ୍ରମଣ କରୁଥିଲେ । ଫଳରେ ରାଜା କୁଶ ତାଙ୍କ ରାଜ୍ୟର ପ୍ରଜାମାନଙ୍କୁ ସୁଶାସନ ଦେବାରେ ଅସମର୍ଥ ହୋଇଥିଲେ । କ୍ରମଶଃ ରାଜ୍ୟର ଆର୍ଥିକ ଓ ଭୌଗୋଳିକ ମାନଦଣ୍ଡ ଦୁର୍ବଳ ଆଡ଼କୁ ମୁହାଁଇଥିଲା । ପ୍ରଜାମାନଙ୍କୁ ସୁଶାସନ ଦେବା ଲାଗି ଶ୍ରୀରାମଙ୍କ ପରମଭକ୍ତ ହନୁମାନ୍ ରାଜା କୁଶଙ୍କୁ ଏକ ଅମୋଘ ରକ୍ଷାକବଚ ରୂପେ ମା' ଲଙ୍କେଶ୍ୱରୀଙ୍କୁ ଆଣି ଚିତ୍ରୋତ୍ପଳା ଓ ତେଲ ନଦୀର ସଂଗମସ୍ଥଳୀରେ ଥିବା ସୋନପୁରଠାରେ ସ୍ଥାପନ କଲେ । ମା'ଙ୍କର ଆଶୀର୍ବାଦ ଫଳରେ ସେହି ରାଜ୍ୟ ସୁଜଳା, ସୁଫଳା ଓ ଶସ୍ୟଶ୍ୟାମଳାରେ ପରିପୂର୍ଣ୍ଣ ହୋଇଗଲା । ପରବର୍ତ୍ତୀ

ସମୟରେ ସୂର୍ଯ୍ୟବଂଶୀୟ ରାଜାଙ୍କ ପୁତ୍ର ମା' ଦେବୀଙ୍କୁ ସୁବର୍ଣ୍ଣପୁରୀରୁ ଆଣି ସମ୍ବଲପୁରଠାରେ ସ୍ଥାପନ କରିଥିଲେ । ବନ୍ୟା ଓ ବାତ୍ୟା ଫଳରେ କ୍ରମଶଃ ସେହି ଦେବୀ ଏକ ଶିମିଳିଗଛ ତଳେ ପୋତି ହୋଇ ରହିଥିଲେ । ୧୫୪୦ ମସିହାରେ ରାଜା ବଳରାମ ଦେବଙ୍କୁ ସ୍ୱପ୍ନାଦେଶ ମାଧ୍ୟମରେ ଆବିର୍ଭୂତ ହୋଇଥିଲେ ଓ ସମଲେଶ୍ୱରୀ ନାମରେ ନାମିତ ହୋଇଥିଲେ ।

ସମଲେଶ୍ୱରୀଙ୍କ ସମ୍ବନ୍ଧରେ ପୌରାଣିକ ତଥ୍ୟ ଅନୁଯାୟୀ ଦକ୍ଷଯଜ୍ଞରେ ବ୍ରହ୍ମାଣ୍ଡର ପତି ତଥା କୈଳାସବିହାରୀ ଶିବ ଅପମାନିତ ହୋଇଥିଲେ । ଶିବଙ୍କର ପତ୍ନୀ ସତୀ ପାର୍ବତୀ ଏଥିରେ ମ୍ରିୟମାଣ ହୋଇ ସେହି ଯଜ୍ଞକୁଣ୍ଡରେ ଝାସ ଦେଇଥିଲେ । ଏଥିରେ କ୍ରୋଧାନ୍ୱିତ ହୋଇ ସତୀଙ୍କ ମର ଶରୀରକୁ କାନ୍ଧରେ ଧରି ଦେବ ଦେବ ମହାଦେବ ଉଗ୍ର ତାଣ୍ଡବ ନୃତ୍ୟ କରିଥିଲେ । ଶିବଙ୍କ ତାଣ୍ଡବ ନୃତ୍ୟରେ ସମଗ୍ର ପୃଥିବୀ ଥରହର ହେବା ସଂଗେ ସଂଗେ ଦେବତାମାନଙ୍କ ଆସନ ଟଳମଳ ହୋଇଥିଲା । ଦେବତାମାନେ ଅନନ୍ୟୋପାୟ ହୋଇ ଜଗତ୍‌ର ପାଳନକର୍ତ୍ତା ବିଷ୍ଣୁଙ୍କୁ ପ୍ରାର୍ଥନା କରିଥିଲେ । ବିଷ୍ଣୁ ତାଙ୍କର ସୁଦର୍ଶନ ଚକ୍ର ମାଧ୍ୟମରେ ସତୀଙ୍କ ମରଶରୀରକୁ ଖଣ୍ଡ ଖଣ୍ଡ କରି କାଟି ପକାଇଥିଲେ । ସତୀଙ୍କର ମର ଶରୀର ଖଣ୍ଡ ବିଖଣ୍ଡିତ ହୋଇ ଭାରତର ବିଭିନ୍ନ ସ୍ଥାନରେ ନିପତିତ ହୋଇଥିଲା । ଯେଉଁସବୁ ସ୍ଥାନରେ ଏହି ଖଣ୍ଡଗୁଡ଼ିକ ପଡ଼ିଥିଲା, ତାହା ଗୋଟିଏ ଗୋଟିଏ ଶକ୍ତି ପୀଠ ରୂପେ ଆଜି ବିବେଚିତ । କଥିତ ଅଛି ଏହି ଖଣ୍ଡ ଭାରତର ୫୧ଟି ସ୍ଥାନରେ ଓ ସେଥି ମଧ୍ୟରୁ ୮ଟି ଅଂଶ ଓଡ଼ିଶାରେ ନିପତିତ ହୋଇଥିଲା । ଓଡ଼ିଶାରେ ନିପତିତ ହୋଇଥିବା ସ୍ଥାନଗୁଡ଼ିକ ହେଲା କାକଟପୁରର ମା' ମଙ୍ଗଳା, ଝଙ୍କଡ଼ର ଶାରଳା, ଯାଜପୁରର ବିରଜା, ତାଳଚେରର ହିଙ୍ଗୁଳା, ସମ୍ବଲପୁରର ସମଲେଶ୍ୱରୀ, ବାଙ୍କିର ଚର୍ଚ୍ଚିକା, ବାଣପୁରର ଭଗବତୀ ଓ ଶ୍ରୀକ୍ଷେତ୍ରରେ ବିମାନପୀଠ ବିଦ୍ୟମାନ । ସମ୍ବଲପୁରରେ ଥିବା ମହାନଦୀର ଜଳରେ ଦେବୀଙ୍କର ମସ୍ତକ ଅଂଶଟି ନିପତିତ ହୋଇଥିଲା । ଏହା ଜଳସ୍ରୋତରେ ଭାସି ଆସି ସମ୍ବଲପୁରଠାରେ ଏକ ଶିମିଳିଗଛ ମୂଳରେ ଲାଗି ରହି ଏକ ଶିଳା ରୂପେ ପରିଣତ ହୋଇଥିଲା । ତତ୍‌ପରେ ମା' ସମଲେଶ୍ୱରୀଙ୍କ ନାମରେ ସମ୍ବଲପୁରଠାରେ ଆଜି ପୂଜା ପାଉଛନ୍ତି ।

ଐତିହାସିକ ତଥ୍ୟ ଅନୁସାରେ କଳାପାହାଡ଼ ଓଡ଼ିଶାରୁ ସମସ୍ତ ମନ୍ଦିରଗୁଡ଼ିକ ଆକ୍ରମଣ କରି ଧ୍ୱସ୍ତ ବିଧ୍ୱସ୍ତ କରିଥିଲେ । ଶ୍ରୀକ୍ଷେତ୍ର ପତି ଶ୍ରୀଜଗନ୍ନାଥ ଜୀଉଙ୍କୁ ଦଇତାପତିମାନେ କଳାପାହାଡ଼ର କବଳରୁ ରକ୍ଷା କରିବା ପାଇଁ ସମ୍ବଲପୁରର ଦକ୍ଷିଣରେ ଥିବା ସୋନପୁରଠାରେ ମହାନଦୀ ବାଲିରେ ପୋତି ଲୁଚାଇଥିଲେ । କଳାପାହାଡ଼ ଏହା ଅନୁସନ୍ଧାନ କରିବା ପାଇଁ ସୈନ୍ୟସାମନ୍ତଙ୍କ ସହ ସମ୍ବଲପୁରଠାରେ ପହଞ୍ଚିଥିଲେ । ଏହି ସମୟରେ ସାକ୍ଷାତ୍ ଦେବୀ ସମଲେଶ୍ୱରୀ ଜଣେ ଗଉଡୁଣୀ ରୂପରେ ସେଠାରେ ଆବିର୍ଭାବ ହୋଇ ସୈନ୍ୟମାନଙ୍କୁ ଦହି ବିକ୍ରୟ କରିଥିଲେ । ଦେବୀଙ୍କ ମହିମା ବଳରେ ଦହି ପିଇ ସୈନ୍ୟମାନେ ଅସୁସ୍ଥ ହେବା ସଂଗେ ପରସ୍ପର ମଧ୍ୟରେ ବିଶୃଙ୍ଖଳା ସୃଷ୍ଟି କରିଥିଲେ । ତେଣୁ ରାଜା ସୈନ୍ୟମାନଙ୍କୁ ସେଠାରୁ ବିଦାୟ କରିଥିଲେ । ପଳାୟନ ବେଳେ ସେମାନେ ସେଠାରେ ବଡ଼ ବଡ଼ ଲୌହ ଘଣ୍ଟି ଓ ନାଗରା ଇତ୍ୟାଦି ଛାଡ଼ି ଯାଇଥିଲେ । ଆଜି ତାହା ମୂକସାକ୍ଷୀ ପରି ମା'ଙ୍କ ପୀଠରେ ସୁରକ୍ଷିତ ହୋଇ ରହିଅଛି ।

ଦୟା ଓ କରୁଣାଦାୟିନୀ ମା' ସମଲେଶ୍ୱରୀଙ୍କ ମହିମା ଓ ଗୁଣଗରିମା ଯେପରି ରହସ୍ୟମୟ ଠିକ୍ ସେପରି ମନ୍ଦିରର ଗଠନଶୈଳୀ ଓ ବିଗ୍ରହର ଆକୃତି ମଧ୍ୟ ବିଚିତ୍ରମୟ । ତାଙ୍କର ମହିମା ଓ ଗୁଣଗରିମାର ମହତ୍ତ୍ୱ ଅସରନ୍ତି, ଅମାପ ଓ ଅବର୍ଣ୍ଣନୀୟ । କେବଳ ସମ୍ବଲପୁରବାସୀ କାହିଁକି ସମଗ୍ର ମାନବଜାତି ତଥା ପରମ ଭକ୍ତମାନେ ଭକ୍ତିପୂତ ଓ ପବିତ୍ର ମନରେ ଯାହା ମାନସିକ କରିଥାନ୍ତି, ତାହା ମା' ସମଲେଶ୍ୱରୀ ପୂରଣ କରିବାକୁ ପଛାଇ ନ ଥାନ୍ତି । ଭାଗବତରେ ଉଲ୍ଲେଖ ଅଛି ''ଭକ୍ତ ହିଁ ଭଗବାନ୍'' । କଥିତ ଅଛି ଦେବୀ ପ୍ରସନ୍ନା ହେଲେ ବନ୍ଧ୍ୟା ସ୍ତ୍ରୀ ସୁପୁତ୍ର ଲାଭ କରିଥାଏ ଓ ଗୃହସ୍ଥ ପ୍ରତ୍ୟେକ କାର୍ଯ୍ୟରେ ସିଦ୍ଧିଲାଭ କରିଥାଏ । ଓଷା ଓ ବ୍ରତ ପାଳନ କରି ଶତ ଶତ ରୋଗୀ ବିଭିନ୍ନ ପ୍ରକାର ରୋଗରୁ ଆରୋଗ୍ୟ ଲାଭ କରିଥାନ୍ତି । ବିଭା, ବ୍ରତ ଓ ଘର ଅନୁକୂଳ ପ୍ରତ୍ୟେକ ଶୁଭକାର୍ଯ୍ୟ କରିବା ପୂର୍ବରୁ ମା'ଙ୍କ ପୀଠରେ ଭକ୍ତମାନେ ପୂଜା ଅର୍ଚ୍ଚନା କରିଥାନ୍ତି । ନୂତନ ଗାଡ଼ି ପୂଜା ଏହି ପୀଠରେ ହୋଇଥାଏ । ପରୀକ୍ଷାର୍ଥୀମାନେ ଓ ମାଲିମୋକଦ୍ଦମା କରିଥିବା ବ୍ୟକ୍ତିମାନେ ଶୁଭଫଳ କାମନା କରିଥାନ୍ତି । ମା' ଦେବୀ ସେମାନଙ୍କୁ ଶୁଭଫଳ ପ୍ରଦାନ କରିବାର କିମ୍ବଦନ୍ତୀ ବହୁଳ ଭାବରେ ଉଲ୍ଲେଖ ଅଛି । ପ୍ରତିଦିନ ଏହି ପୀଠକୁ ସମଗ୍ର ଭାରତବର୍ଷରୁ ଅସଂଖ୍ୟ ଭକ୍ତ ସେମାନଙ୍କର ମାନସିକ ପୂରଣ ପରେ ଆସି ହୋମ, ଯଜ୍ଞ ଓ ପୂଜା ଅର୍ଚ୍ଚନା କରିଥାନ୍ତି । ଏଥିରୁ ସ୍ପଷ୍ଟ ଅନୁମେୟ ମା' ସମଲେଶ୍ୱରୀ ସର୍ବଧର୍ମ ଓ ସମ୍ପ୍ରଦାୟର ଭକ୍ତମାନଙ୍କୁ ନିଜର ସନ୍ତାନସନ୍ତତିଙ୍କ ଭଳି କୋଳରେ ସାଉଁଟି ଧରି ନିଜର ବକ୍ଷରୁ କ୍ଷୀରଦାନ ପୂର୍ବକ ଲାଳନପାଳନ କରି ସ୍ନେହ ଓ ମମତା ଡୋରିରେ ବାନ୍ଧି ରଖିଛନ୍ତି । ଯେଉଁ ଲୋକ ଥରେ ତାଙ୍କର

ଶରଣାପନ୍ନ ହୋଇଛି ସ୍ନେହମୟୀ ମା' ତାଙ୍କୁ ଅଭୟ ବର ପ୍ରଦାନ କରିଛନ୍ତି ।

ମନ୍ଦିରର ନିର୍ମାଣ ଶୈଳୀ ଓଡ଼ିଶାର ଅନ୍ୟ ମନ୍ଦିରଠାରୁ ଭିନ୍ନ । କଥିତ ଅଛି ରାଜା ବଳରାମ ଦେବ (୧୫୪୦ରୁ ୧୫୫୬) ମସିହା ପରେ, ରାଜା ହୃଦୟାନନ୍ଦ ଦେବ (୧୫୬୦ରୁ ୧୫୬୫), ବଳଭଦ୍ର ଦେବ (୧୫୬୫ରୁ ୧୫୯୧) ଓ ସୁଧାକର ସାଏ (୧୫୯୧ରୁ ୧୬୧୭) ମସିହା ପର୍ଯ୍ୟନ୍ତ ପରିଚାଳନା ଓ ପୂଜାପଦ୍ଧତି କାର୍ଯ୍ୟ ସମ୍ପାଦନ କରିଥିଲେ । ତତ୍‌ପରେ ହୀରାଖଣ୍ଡର ଛତ୍ରପତି ତଥା ଆଠଗଡ଼ର ମଉଡ଼ମଣି ମହାରାଜା ବଳିୟାର ସିଂହଙ୍କ ରାଜୁତି (୧୬୧୭ରୁ ୧୬୫୬) ମସିହାରେ ମା'ଙ୍କର ପୂଜାପଦ୍ଧତି, ମନ୍ଦିର ନିର୍ମାଣ, କଳା ସଂସ୍କୃତି ଓ ପରମ୍ପରା ଇତ୍ୟାଦିର ବହୁଳ ଉନ୍ନତି ହୋଇଥିଲା । ବର୍ତ୍ତମାନ ମା' ଦେବୀ ଯେଉଁ ମନ୍ଦିରରେ ପୂଜା ପାଉଛନ୍ତି ତାହା ମହାରାଜା ଛତ୍ର ସାଏଙ୍କ ରାଜତ୍ୱ ସମୟ (୧୬୫୭ରୁ ୧୬୯୫) ମସିହାରେ ନିର୍ମାଣ ହୋଇ ଓ ଏହାର ମହିମ ଓ ଗୁଣଗାରିମା ବହୁଳ ଭାବରେ ପ୍ରସାର ଓ ପ୍ରଚାର ହୋଇଥିଲା । ବର୍ତ୍ତମାନ ମନ୍ଦିରର ସୁପରିଚାଳନା ତଥା ପୂଜାପଦ୍ଧତି, ରୀତିନୀତି, ପର୍ବପର୍ବାଣି, ଶାନ୍ତିଶୃଙ୍ଖଳା, ପରିବେଶ କାର୍ଯ୍ୟ ଇତ୍ୟାଦି ଏକ ଟ୍ରଷ୍ଟ ଦ୍ୱାରା ସମ୍ପାଦନ ହେଉଥିଲେ ମଧ୍ୟ ସମ୍ବଲପୁରର ଯୁବକ ସଂଘ, ଦଶହରା ଉତ୍ସବ କମିଟି, ଆଖଡ଼ାମଣ୍ଡଳୀ, ନାମଯଜ୍ଞ କମିଟି, ପୂଜକ କମିଟି ଓ ବୁଦ୍ଧିଜୀବୀ ପଣ୍ଡିତ ମଣ୍ଡଳୀ ସଦସ୍ୟମାନଙ୍କର ପ୍ରତ୍ୟକ୍ଷ ସାହାଯ୍ୟ ଓ ସହଯୋଗ ସ୍ୱୀକାର୍ଯ୍ୟ । ଏଥିପାଇଁ ସେମାନେ ସର୍ବଦା ସମସ୍ତ ଭକ୍ତ ତଥା ସମ୍ବଲପୁରବାସୀଙ୍କ ପାଖରେ ପ୍ରଶଂସନୀୟ ଓ ପ୍ରିୟଭାଜନ ହୋଇ ପାରିଛନ୍ତି ।

ଆଦିମ ଯୁଗରୁ ଶବର ସମ୍ପ୍ରଦାୟର ପୂଜକଙ୍କଦ୍ୱାରା ମା'ଙ୍କର ପୂଜା କାର୍ଯ୍ୟ ହେଉଥିଲା । କିନ୍ତୁ ପର୍ଯ୍ୟାୟକ୍ରମେ ଓ ହିନ୍ଦୁଧର୍ମ ଶାସ୍ତ୍ରୋକ୍ତ ଶକ୍ତିପୂଜା ପଦ୍ଧତି ଅନୁସାରେ ବ୍ରାହ୍ମଣମାନଙ୍କ ଦ୍ୱାରା ପୂଜାକାର୍ଯ୍ୟ କରାଯାଉଅଛି । ତେଣୁ ଏଠାରେ ଉଭୟ ସମ୍ପ୍ରଦାୟର ପୂଜକ ପୂଜାକାର୍ଯ୍ୟ ସମ୍ପାଦନ କରିବାର ବିଧିବିଧାନ ଅଛି । ଏଠାରେ ପୂଜକମାନେ ଭକ୍ତମାନଙ୍କଠାରୁ ଭୋଗଖର୍ଚ୍ଚ ଦାବି କରି ନ ଥାନ୍ତି । ତେଣୁ ଭକ୍ତମାନଙ୍କ ମନରେ ଶାନ୍ତି ଭାବଧାରା ଜାଗ୍ରତ ହେବା ସଂଗେ ସଂଗେ ଶୁଦ୍ଧପୂତ ଚିତ୍ତରେ ମା'ଙ୍କୁ ଦର୍ଶନ କରିଥାନ୍ତି । ଏତଦ୍‌ବ୍ୟତୀତ ଭକ୍ତମାନେ ପୂଜକମାନଙ୍କୁ ପ୍ରଶଂସା କରି ଖୁସି ମନରେ ମା'ଙ୍କ ପାଖରୁ ବିଦାୟ ନେଇଥାନ୍ତି । ଏଠାରେ ସମଲେଶ୍ୱରୀଙ୍କୁ ଭୁବନେଶ୍ୱରୀ ମନ୍ତ୍ରରେ ପୂଜା କରାଯାଇଥାଏ ।

ମା ସମଲେଶ୍ୱରୀ ପୀଠଟି ସମ୍ବଲପୁର ସହରର ପଶ୍ଚିମ ଦିଗରେ ଅବସ୍ଥିତ । ଏହାର ପୂର୍ବରେ ଗୋପାଳଜୀ ମଠ, ପଶ୍ଚିମରେ ନରସିଂହ ଓ ଘଣ୍ଟକୁଣ୍ଡି ମନ୍ଦିର, ଉତ୍ତରରେ ଏକ ପକ୍କା ରାସ୍ତା ଓ ସମ୍ମୁଖଦ୍ୱାର, ଦକ୍ଷିଣ ଦିଗରେ ଓଡ଼ିଶାର ବୃହତ୍ତମ ପୁଣ୍ୟତୋୟା ମହାନଦୀ ଅବସ୍ଥିତ । ବେଢ଼ାଟି ପଥର ପ୍ରାଚୀର ଦ୍ୱାରା ଆବୃତ୍ତ ଏକ ପ୍ରଶସ୍ତ ପ୍ରାଙ୍ଗଣ । ମନ୍ଦିରର ନିର୍ମାଣଶୈଳୀରେ ଏକ ବୈଚିତ୍ର୍ୟ ଦୃଷ୍ଟି ଆକର୍ଷଣ କରେ । ଗୋଟିଏ ମୂଳଦୁଆ ପ୍ରଧାନମନ୍ଦିର ସମେତ ଚାରିପାର୍ଶ୍ୱରେ ସଂଲଗ୍ନ କରି ଅନ୍ୟ ସବୁ ମନ୍ଦିରଗୁଡ଼ିକ ନିମ୍ନରୁ ଉର୍ଦ୍ଧ୍ୱ ପର୍ଯ୍ୟନ୍ତ ସୁସଜ୍ଜିତ ହୋଇ ଏକ ଅଲୌକିକ ଶୋଭାବର୍ଦ୍ଧନ କରୁଅଛି । ପୁନରାୟ ଏହି ସବୁ ମନ୍ଦିରକୁ ସଂଲଗ୍ନ କରି ୬ ଫୁଟ୍ ଚଉଡ଼ାର ଏକ ବାରଣ୍ଡା ଚତୁଃପାର୍ଶ୍ୱରେ ଘେରି ରହିଅଛି । ଏହିପରି ଗଠନ ଶୈଳୀର ମନ୍ଦିର ଓଡ଼ିଶାର ଅନ୍ୟ କେଉଁଠାରେ ଦେଖିବା ବିରଳ । ସାଧାରଣତଃ ମନ୍ଦିରର ଗଠନ ଶୈଳୀକୁ ଦୁଇ ଭାଗରେ ବିଭକ୍ତ କରାଯାଇଅଛି । ବଡ଼ଗୁଡ଼ି ଓ ସାନଗୁଡ଼ି । ମନ୍ଦିରକୁ ଦୁଇଟି ଦ୍ୱାର ଅଛି । ଗୋଟିଏ ଦ୍ୱାରରେ ପ୍ରବେଶ କରି ଶାନ୍ତିଶୃଙ୍ଖଳା ଓ ଭକ୍ତିପୂତ ଭାବରେ ମା' ସମଲେଶ୍ୱରୀ ତଥା ଅନ୍ୟ ପାର୍ଶ୍ୱ ଦେବୀମାନଙ୍କୁ ଦର୍ଶନ କରି ଅନ୍ୟ ଦ୍ୱାର ଦେଇ ପ୍ରସ୍ଥାନ କରିଥାନ୍ତି । ମା' ଦେବୀ ପୂଜା ପାଉଥିବା ଗର୍ଭଗୃହଟିର ଦୈର୍ଘ୍ୟ ଓ ପ୍ରସ୍ଥ ୧୩ ଫୁଟ୍ ବିଶିଷ୍ଟ ଏକ ବର୍ଗାକାର କ୍ଷେତ୍ର । ଏହାର ଉଚ୍ଚତା ପ୍ରାୟ ୨୦ ଫୁଟ୍ । ମାତ୍ର ୩୦ ଇଞ୍ଚ ଉଚ୍ଚତାର ଦେବୀଙ୍କ ବିଗ୍ରହ ପ୍ରଧାନ ଗହ୍ୱରର ଆସ୍ଥାନ ଉପରେ ବିରାଜିତ । ବିଗ୍ରହଟି ଚକ୍ଷୁ ନାକ ଥିବା ଏକ ମସ୍ତକ । ମସ୍ତକ ଉପରେ ଏକ ହୀରକ କିରୀଟ ସିନ୍ଦୂର ପ୍ରଲେପିତ । କଥିତ ଅଛି ଦେବୀଙ୍କ ଶିରୋଭୂଷଣ ହୀରକ କିରୀଟର ତେଜାଂଶ ଯୋଗେ ପୁଣ୍ୟଭୂମି ସମ୍ବଲପୁର ହୀରାଖଣ୍ଡ ନାମରେ ପ୍ରସିଦ୍ଧିଲାଭ କରିଛି । ସେହି ହୀରକ କିରୀଟର ତେଜରଶ୍ମି ବଳରେ ସମ୍ବଲପୁରବାସୀ ସୁଖ ଓ ସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରୁଛନ୍ତି । ବିଭିନ୍ନ ମେଳା ମହୋତ୍ସବ ଓ ପର୍ବପର୍ବାଣିରେ ମା' ଭିନ୍ନ ଭିନ୍ନ ସୁନା ଓ ହୀରାର ଅଳଙ୍କାର ସମେତ ପାଟଶାଢ଼ୀରେ ବିଭୂଷିତା ହୋଇଥାଆନ୍ତି । ଯାହାକି ଚୁମ୍ବକୀୟ ଶକ୍ତିପରି ବାନ୍ଧି ରଖିଛନ୍ତି ଶତ ଶତ ଭକ୍ତମାନଙ୍କର ହୃଦୟ ମନ୍ଦିରକୁ ଆଧାତ୍ମିକ ପ୍ରେମରସରେ । ଏତଦ୍‌ବ୍ୟତୀତ ଦେବୀଙ୍କ ଉପରେ ଏକ ଛତ୍ରୀ ଓ ପଛପଟେ ଶୋଭା ପାଉଅଛି ଅର୍ଦ୍ଧବୃତ୍ତାକାର ପ୍ରଭା । ବାରଣ୍ଡାକୁ ସଂଲଗ୍ନ କାନ୍ଥରେ ଖଚିତ ଅଛି ଦଶମହାବିଦ୍ୟାଙ୍କ ବିଗ୍ରହ । ପ୍ରଧାନ ମନ୍ଦିରରେ ଦେବୀଙ୍କ ସମ୍ମୁଖରେ

ଅଛନ୍ତି ଶୀତଳା ଠାକୁରାଣୀ, ଗଣେଶ ଓ ଅନ୍ୟାନ୍ୟ ଦେବୀ ପ୍ରତିମା । ଦେବୀଙ୍କ ଡାହାଣପାର୍ଶ୍ୱରେ ଭୁବନେଶ୍ୱରୀ, ଛତରବାଉତୀ ପୂଜା ପାଉଛନ୍ତି । ବାମ ପାର୍ଶ୍ୱରେ ଘଣ୍ଟାଶିନୀ ପୂଜା ପାଉଛନ୍ତି । ବ୍ରହ୍ମଚାରୀ, ସତ୍ୟନିଷ୍ଠ, ପ୍ରଭୁସେବକ ଓ ବଜରଙ୍ଗବାଲୀଙ୍କୁ ସ୍ୱୟଂ ମା' ସମଲେଶ୍ୱରୀ ନିଜ ପାଖରେ ରଖିଛନ୍ତି । ମନ୍ଦିରବେଢ଼ାର ବାମ ପାର୍ଶ୍ୱରେ କାଳୀ, ରାମଚଣ୍ଡୀ, ମାତଙ୍ଗୀ, ଛିନ୍ନମସ୍ତା, ଘଣ୍ଟାସିନୀ ପଛପାର୍ଶ୍ୱରେ ବରାହୀ, ବନଦୁର୍ଗା, ଜ୍ୱାଳାମୁଖୀ, ହନୁମାନ୍ ଓ ଦକ୍ଷିଣ ପାର୍ଶ୍ୱରେ ଉଗ୍ରତାରା, ମଙ୍ଗଳା, ଦୁର୍ଗା, ନରସିଂହ ବିଗ୍ରହଗୁଡ଼ିକ ବିଭିନ୍ନ ସୂକ୍ଷ୍ମ କାରୁକାର୍ଯ୍ୟରେ ଖଚିତ ହୋଇ ମନ୍ଦିରର ଶୋଭାବର୍ଦ୍ଧନ କରାଇବା ସଂଗେ ସଂଗେ ଶତ ଶତ ଭକ୍ତଙ୍କୁ ଦର୍ଶନ ଦେଇ ସେମାନଙ୍କର ପାପ ମୋଚନ ଓ ଧର୍ମ ଅର୍ଜନ ପାଇଁ ଆଶୀର୍ବାଦ ବିତରଣ କରୁଛନ୍ତି ।

ମନ୍ଦିରର ଦ୍ୱାର ସନ୍ନିକଟ ତଥା ପ୍ରାଙ୍ଗଣରେ ଅଷ୍ଟଧାତୁରେ ନିର୍ମିତ ଏକ ବୃହତ୍ ସିଂହ ମୂର୍ତ୍ତି ପ୍ରତୀୟମାନ । ଏତଦ୍‌ବ୍ୟତୀତ ଏଠାରେ ୨୫ ଫୁଟ ଉଚ୍ଚତା ବିଶିଷ୍ଟ ଏକ ଦୀପଦଣ୍ଡଟିଏ ଅଛି । ଭୂମିଠାରୁ ୪ ଫୁଟ ଉଚ୍ଚତା ପର୍ଯ୍ୟନ୍ତ ଏହି ଦଣ୍ଡର ପ୍ରତିପାଖ ଚଉଡ଼ା ୬ ଫୁଟରେ ମାର୍ବଲ ଖଚିତ ହୋଇଅଛି । ଉପରକୁ ଦଣ୍ଡର ଆକୃତି ଗୋଲାକାର । ଏହାର ଅଗ୍ରଭାଗରେ ମନ୍ଦିର ଆକୃତିର ଏକ ଛୋଟ ଘରଟିଏ ଅଛି । ଏଠାରେ ଦୀପ ଜଳିବାର ବ୍ୟବସ୍ଥା ଅଛି । କାର୍ତ୍ତିକମାସ ତଥା ଅନ୍ୟ ପର୍ବପର୍ବାଣିରେ ଭକ୍ତମାନେ ଏଠାରେ ଦୀପଦାନ ଦେଇଥାଆନ୍ତି । ପ୍ରଧାନ ମନ୍ଦିରର ସମ୍ମୁଖ ବାରଣ୍ଡାକୁ ସଂଲଗ୍ନ କରି ୪୫ ଫୁଟ ଦୈର୍ଘ୍ୟ ଓ ୩୫ ଫୁଟ ପ୍ରସ୍ଥବିଶିଷ୍ଟ ଏକ ମଣ୍ଡପ ଅଛି । ଏହି ମଣ୍ଡପଟି ୧୬ଟି ବିଭିନ୍ନ ସୂକ୍ଷ୍ମ କାରୁକାର୍ଯ୍ୟରେ ଖଚିତ ଖମ୍ବ ଉପରେ ଦଣ୍ଡାୟମାନ । ମନ୍ଦିର ମଝିରେ ଥିବା ୬ଟି ଖମ୍ବରେ ଏକାଧିକ ଠଣା ବିଦ୍ୟମାନ । ଏହି ସବୁ ଠଣାମାନଙ୍କରେ ଗୋଟିଏ ଗୋଟିଏ ସିନ୍ଦୂର ପ୍ରଲେପିତ ଦେବୀମୂର୍ତ୍ତି ବିଦ୍ୟମାନ । ଏହି ମୂର୍ତ୍ତିଗୁଡ଼ିକ କୁଣ୍ଡାପଥରରେ ନିର୍ମିତ । ଏହି ମଣ୍ଡପରେ ପରମଭକ୍ତ ଓ ସାଧୁ ସନ୍ଥମାନେ ମା' ଦେବୀଙ୍କୁ ପ୍ରାର୍ଥନା କରିବା ସଂଗେ ସଂଗେ ପୁରାଣଶାସ୍ତ୍ର ଇତ୍ୟାଦି ଅଧ୍ୟୟନ କରିବାର ବ୍ୟବସ୍ଥା ଅଛି । ମନ୍ଦିର ସମ୍ମୁଖରେ ଅରୁଣସ୍ତମ୍ଭଟି ବିରାଜିତ । ଏତଦ୍‌ବ୍ୟତୀତ ଏଠାରେ ଭୋଗମଣ୍ଡପ, ଯଜ୍ଞ ମଣ୍ଡପ, ବଳୀମଣ୍ଡପ, ଆଖଡ଼ାଘର, ରୋଷଘର, ବିଶ୍ରାମଘର ପରିଚାଳନା କାର୍ଯ୍ୟାଳୟ ଇତ୍ୟାଦି ରହି ମନ୍ଦିର ପରିସରକୁ ଜନଗହଳି କରିବା ସଂଗେ ସଂଗେ ଚଳଚଞ୍ଚଳ କରିଥାଏ ।

ଦୈନନ୍ଦିନ ଦେବୀ ସମଲେଶ୍ୱରୀଙ୍କୁ ୪ ଥର ଭୋଗ ଅର୍ପଣ ହୋଇଥାଏ । ପ୍ରତ୍ୟହ ସକାଳ ୫ ଘଟିକାରେ ପହଡ଼ ଫିଟି ସ୍ନାନ ଓ ଆଳତୀ ଲାଗି ହୋଇଥାଏ । ତା'ପରେ ପ୍ରଥମ ଭୋଗ ଅର୍ପଣ ହୋଇଥାଏ । ସେହି ଭୋଗ ହେଲା ଉଖୁଡ଼ା । ଦିବା ୧୨ ଘଟିକା ସମୟରେ ଅନ୍ନ, ଡାଲି ଓ ତରକାରି ଭୋଗ ହୋଇଥାଏ ଓ ପହଡ଼ ପଡ଼ିଥାଏ । ଅପରାହ୍ଣ ୧ ଘଟିକା ସମୟରେ ପହଡ଼ ଫିଟିଥାଏ । ସନ୍ଧ୍ୟା ଆଳତୀ ପରେ ଉଖୁଡ଼ା, ପେଢ଼ା ଇତ୍ୟାଦି ଭୋଗ ହୋଇଥାଏ । ପୁନରାୟ ରାତି ନଅ ଘଟିକାରେ ଅନ୍ନ ଭୋଗହୋଇ ରାତି ୧୦ ଘଟିକାରେ ମନ୍ଦିର ପହଡ଼ ପଡ଼ିଥାଏ । କିନ୍ତୁ ପ୍ରତି ମଙ୍ଗଳବାର ଓ ଅନ୍ୟାନ୍ୟ ପର୍ବପର୍ବାଣିଗୁଡ଼ିକରେ ପହଡ଼ ପଡ଼ିବା ଓ ଭୋଗ ଅର୍ପଣ କାର୍ଯ୍ୟ ପ୍ରାୟ ୧ ଘଣ୍ଟା ବ୍ୟତିକ୍ରମ ହୋଇଥାଏ । ଏତଦ୍‌ବ୍ୟତୀତ ଭକ୍ତମାନଙ୍କର ମାନସିକ ପୂରଣ ପରେ ଶାଢ଼ୀ, ସିନ୍ଦୂର, କର୍ପୂର, ଧୂପ ଓ ଦୀପ ଇତ୍ୟାଦି ଲାଗି ହୋଇଥାଏ । ସେମାନେ ମଧ୍ୟ ବିଭିନ୍ନ ପ୍ରକାର ଭୋଗ ଯଥା : ନଡ଼ିଆ, କଦଳୀ, ଫଳ, କୋରାଖଇଠାରୁ ଆରମ୍ଭ କରି ନିଷ୍ଠାପର ଭାବରେ ରନ୍ଧନ କାର୍ଯ୍ୟ ଅର୍ପଣ କରିଥାନ୍ତି । କେହି କେହି ଭକ୍ତ ଏଠାରେ ହୋମ ଓ ଚଣ୍ଡୀପାଠ ଇତ୍ୟାଦି ମଧ୍ୟ ସମ୍ପାଦନ କରିଥାନ୍ତି ।

ବାରମାସରେ ତେର ପର୍ବ ପରି ଏଠାରେ ବିଭିନ୍ନ ପର୍ବପର୍ବାଣି ଶୁଦ୍ଧପୂତ ଓ ମହାସମାରୋହରେ ବିଧିବିଧାନ ସହିତ ପାଳିତ ହୋଇଥାଏ । ସେହି ପର୍ବପର୍ବାଣି ଓ ମେଳା ମହୋତ୍ସବମାନଙ୍କ ମଧ୍ୟରେ ମୁଖ୍ୟ ହେଲା– ନୂଆଖାଇ, ଦଶହରା, ମହାଳୟା ଇତ୍ୟାଦି । ମାଙ୍କ ପାଖରେ ଦଶହରା ପର୍ବଟି ପାରମ୍ପରିକ ନୀତିରେ ଦୀର୍ଘ ୯ ଦିନ ଧରି ପାଳିତ ହେଉଥିବାର ବିଧିବିଧାନ ଅଛି । ପ୍ରତ୍ୟହ ସକାଳୁ ରାତିପର୍ଯ୍ୟନ୍ତ ବ୍ରାହ୍ମଣ ପଣ୍ଡିତମାନେ ଚଣ୍ଡୀପାଠ, ହୋମ, ଯଜ୍ଞ ଓ ନାମ ସଂକୀର୍ତ୍ତନ ବୈଦିକ ରୀତିରେ ସମ୍ପାଦନ କରିଥାନ୍ତି । ମା' ସମଲେଶ୍ୱରୀ ନଅ ଦିନରେ ୯ ପ୍ରକାର ବେଶରେ ଆବିର୍ଭୂତା ହୋଇ ଭକ୍ତମାନଙ୍କୁ ଦର୍ଶନ ଦେଇଥାଆନ୍ତି । ଉପରୋକ୍ତ ଦିବସରେ ମନ୍ଦିର ଦକ୍ଷିଣ ପାର୍ଶ୍ୱରେ ଥିବା ଏକ ମଣ୍ଡପରେ ନାଚ, ଗୀତ, ସଂଗୀତ, ଦାସକାଠିଆ, ପାଲା ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥାଏ । ଏହି ମନୋରଞ୍ଜନ କାର୍ଯ୍ୟକ୍ରମରେ ହଜାର ହଜାର ଭକ୍ତ ଓ ଦର୍ଶକ ସମବେତ ହୋଇ ମା'ଙ୍କର ଭଜନ ଓ ଜଣାଣ ଶ୍ରବଣ କରି ଆନନ୍ଦ ଅନୁଭବ କରିଥାନ୍ତି । ଏହି ପର୍ବର ଶେଷ ଦିନରେ ଏକ ସ୍ୱତନ୍ତ୍ର ବିଶେଷତ୍ୱ ପରିଲକ୍ଷିତ ହୋଇଥାଏ । ଦଶମୀ ତିଥିରେ ମା'ଙ୍କର

ପ୍ରତୀକରୂପେ ଏକ ଧ୍ୱଜା ପ୍ରସ୍ତୁତ ହୋଇଥାଏ । ଏହି ଧ୍ୱଜାକୁ ମା'ଙ୍କର ପ୍ରତିନିଧିରୂପେ ଏକ ବିଶାଳ ଶୋଭାଯାତ୍ରାର ସମ୍ମୁଖରେ ରଖି ମହାନଦୀର ତଟ ଦେଶକୁ ନିଆଯାଇଥାଏ ।

ଏହି ଆଧ୍ୟାତ୍ମିକ ତଥା ପବିତ୍ର ଶୋଭାଯାତ୍ରାରେ ହଜାର ହଜାର ଭକ୍ତ ସାଧୁ, ସନ୍ଥ, ଯୋଗ ଦେଇଥାଆନ୍ତି । କଥିତ ଅଛି ଏହି ଶୋଭାଯାତ୍ରାରେ ଯିଏ ଯୋଗ ଦେଇ ମା'ଙ୍କର ପ୍ରତୀକ ଧ୍ୱଜାକୁ ସ୍ପର୍ଶ କରିଥାଆନ୍ତି । ସେମାନଙ୍କର ଶତ ଶତ ଜନ୍ମର ପାପ ନାଶ ହେବା ସଂଗେ ସଂଗେ ପୁଣ୍ୟ ଅର୍ଜନ କରିଥାନ୍ତି । ଏହି ଶୋଭାଯାତ୍ରାରେ ଘଣ୍ଟ, ଘଣ୍ଟା, ଗିନି, ଝାଞ୍ଜ, ମୃଦଙ୍ଗର ନାଦ ଯେତିକି ଆନନ୍ଦ ଦେଇଥାଏ, ତାଠାରୁ ଅଧିକ ଉପଭୋଗ୍ୟ ହୋଇଥାଏ ପାଇକ ଆଖଡ଼ା । ବିଭିନ୍ନ ପ୍ରାନ୍ତରୁ ପାଇକ ଆଖଡ଼ା ଓ ଗୋଟିପୁଅ ଦଳ ସ୍ୱଇଚ୍ଛାରେ ଆସି ନିଜର କଳା ପରିବେଷଣ କରିଥାନ୍ତି । ନଦୀତଟରେ ପାରମ୍ପରିକ ନୀତିରେ ପୂଜାପାଠ କରି ଶୋଭାଯାତ୍ରାଟି ପ୍ରତ୍ୟାବର୍ତ୍ତନ କରିଥାଏ ମା'ଙ୍କ ପୀଠ ନିକଟକୁ ।

ମା' ସମଲେଶ୍ୱରୀଙ୍କର ନୂଆଖାଇ ପର୍ବଟି ମଧ୍ୟ ମହାନ୍ ଗୁରୁତ୍ୱ ବହନ କରିଅଛି । କେବଳ ସମ୍ବଲପୁର ଜିଲ୍ଲା କାହିଁକି ସମଗ୍ର ପଶ୍ଚିମ ଓଡ଼ିଶାର ଏହା ଏକ ମହାନ୍ ପର୍ବ । ଏହି ପର୍ବ ସୃଷ୍ଟି କରିପାରିଛି ଦେବୀଙ୍କ ଉପରେ ଅଗାଢ଼ ଆତ୍ମବିଶ୍ୱାସ ଓ ଆଧ୍ୟାତ୍ମିକ ଚେତନା । ନୂଆ ଚାଉଳର ଅନ୍ନ ପ୍ରଥମେ ମା'ଙ୍କୁ ଅର୍ପଣ ହେଲା ପରେ ଅନ୍ୟମାନେ ଖାଇଥାନ୍ତି । ଏହି ପର୍ବର ଅପରାହ୍ନରେ ଦେବୀଙ୍କ ପୀଠରେ ଅନୁଷ୍ଠିତ ହୋଇଥାଏ ଭେଟଭାଟ ଉତ୍ସବ । ବିପୁଳ ଜନସମାଗମ ହୋଇ ସେହି ପୀଠରେ ବିଭିନ୍ନ ପ୍ରକାର ଆମୋଦ ପ୍ରମୋଦ ନାଚ, ଗୀତ, ସାଂସ୍କୃତିକ କାର୍ଯ୍ୟକ୍ରମ ହୋଇଥାଏ । ନୂଆଖାଇ ପର୍ବ ପରି ମହାଳୟା ପର୍ବଟି ମଧ୍ୟ ଦେବୀଙ୍କର ଏକ ମହାନ୍ ଆଧ୍ୟାତ୍ମିକ ପର୍ବ । ଆଶ୍ୱିନ ଅମାବାସ୍ୟା (ମହାଳୟା) ଦିନ ମା' ଦେବୀଙ୍କୁ 'ଶୁଭାଙ୍ଗୀ' ବେଶରେ ଭୂଷିତ କରାଯାଇଥାଏ । କେହି କେହି ଏହି ବେଶକୁ 'ଧବଳମୁଖୀ' ବେଶ ବୋଲି କହିଥାନ୍ତି । ଏହି ବେଶ ଦର୍ଶନ ପାଇଁ ଦେଶ ବିଦେଶରୁ ହଜାର ହଜାର ଭକ୍ତ ଦିନକ ଆଗରୁ ଆସି ଏଠାରେ ସମବେତ ହୋଇଥାନ୍ତି । କଥିତ ଅଛି ଏହି ବେଶ ଦର୍ଶନ କଲେ ପରିବାରର କୌଣସି ରୋଗ, ବ୍ୟାଧି ହୋଇ ନ ଥାଏ । ଏହି ବେଶକୁ ଗଙ୍ଗାଦର୍ଶନ ମଧ୍ୟ କୁହାଯାଇଥାଏ । ସେହି ଦିନଠାରୁ ଆଶ୍ୱିନ ପୂର୍ଣ୍ଣିମା ପର୍ଯ୍ୟନ୍ତ ମା' ସମଲେଶ୍ୱରୀଙ୍କୁ ବିଭିନ୍ନ ବେଶ କରିବାର ବିଧି ବିଧାନମାନ ଖଞ୍ଜା ହୋଇଛି । ବେଶଗୁଡ଼ିକର ନାମ ହେଲା କାଳୀ, ତାରା, ମହାବିଦ୍ୟା, ଷୋଡ଼ଶୀ, ଭୁବନେଶ୍ୱରୀ, ବଗଳା ମାତଙ୍ଗୀ, ମଙ୍ଗଳା, ଧୂମାବତୀ, କମଳା, ରାଜରାଜେଶ୍ୱରୀ ଇତ୍ୟାଦି । ଆଶ୍ୱିନ କୃଷ୍ଣ ପକ୍ଷ ଅଷ୍ଟମୀ ତିଥି ତଥା ଦ୍ୱିତୀୟା ଓଷା ଦିନ ସନ୍ତାନବତୀ ସ୍ତ୍ରୀମାନେ ମାଙ୍କ ପାଖରେ ସେମାନଙ୍କର ସର୍ବବିଧ କୁଶଳ କାମନା କରିବା ସଂଗେ ସଂଗେ 'ପୁଅ ଜିଉଁତିଆ' ବ୍ରତ ପାଳନ କରିଥାନ୍ତି । ଏତଦ୍‌ବ୍ୟତୀତ ପୌଷ ପୂର୍ଣ୍ଣିମାରେ ପୌଷାଭିଷେକ ଶ୍ରାବଣ ପୂର୍ଣ୍ଣିମାରେ ଶ୍ରାବଣାଭିଷେକ, ଦୋଳ ଉତ୍ସବ, ଜନ୍ମାଷ୍ଟମୀ ଓ ଦେବୀଙ୍କ ଜନ୍ମୋତ୍ସବ ଇତ୍ୟାଦି ପାଳନ କରାଯାଇଥାଏ । ଚୈତ୍ର ମାସର ଅମାବାସ୍ୟାଠାରୁ ଦଶମୀ ପର୍ଯ୍ୟନ୍ତ ବାସନ୍ତୀପୂଜା ଅନୁଷ୍ଠିତ ହୋଇଥାଏ । ଅତୀତରେ ଦେବୀଙ୍କ ପାଖରେ ଛାଗବଳୀ ଦିଆଯାଉଥିଲା । କିନ୍ତୁ ବର୍ତ୍ତମାନ ବଳିପ୍ରଥା ବନ୍ଦ କରାଯାଇଅଛି ।

ଅବିଭକ୍ତ ସମ୍ବଲପୁର ଜିଲ୍ଲାର ଇତିହାସ ପର୍ଯ୍ୟବେକ୍ଷଣ କଲେ ଜଣାଯାଏ ଅତୀତରେ ଏହା ଥିଲା କୋଶଳ ରାଜ୍ୟର କେନ୍ଦ୍ରସ୍ଥଳୀ ଓ ମେରୁଦଣ୍ଡସଦୃଶ । ଭୌଗୋଳିକ ଚିନ୍ତାଧାରାରେ ଏହା ସର୍ବଭାରତୀୟ ସ୍ତରରେ ଯଥେଷ୍ଟ ଯଶ ଓ ଖ୍ୟାତି ଅର୍ଜନ କରିଥିଲା । ଅଦ୍ୟାବଧି ଅତୀତର ଗର୍ବ ଓ ଗୌରବକୁ ଅକ୍ଷୁଣ୍ଣ ରଖିବାରେ ସମ୍ବଲପୁରବାସୀ ସମ୍ଭବପର ହୋଇପାରିଛନ୍ତି । ଏହାର ମୂକସାକ୍ଷୀ ରୂପେ ପରିଲକ୍ଷିତ ହୁଏ ସମ୍ବଲପୁରର କଳା, ସଂସ୍କୃତି, ପରମ୍ପରା, ବାଣିଜ୍ୟ ତଥା ଶିକ୍ଷା ଇତ୍ୟାଦି । ଏହି ପବିତ୍ର ମାଟିରେ ପ୍ରବାହିତ ହେଉଅଛି ଓଡ଼ିଶାର ଗଙ୍ଗା ପୁଣ୍ୟତୋୟା ମହାନଦୀ । ପାହାଡ଼ ପର୍ବତସମେତ ବହୁଳ ତରୁଲତାର ପୂର୍ଣ୍ଣ ବଣଜଙ୍ଗଲ ଇତ୍ୟାଦି ଏହାର ପ୍ରାକୃତିକ ପରିବେଶ ଶୋଭାବର୍ଦ୍ଧନ କରୁଅଛି । ସମ୍ବଲପୁର ନୃତ୍ୟ ଓ ପାଟବସ୍ତ୍ର ଆଜି ସମଗ୍ର ବିଶ୍ୱରେ ପ୍ରସିଦ୍ଧିଲାଭ କରିଅଛି । ଯେପରି ଧମନିରେ ରକ୍ତ ସଞ୍ଚାଳନ ହେବାଦ୍ୱାରା ମାନବ ଶରୀର ସଚେତନ ଓ ସକ୍ରିୟ ରହିଥାଏ ଠିକ୍ ସେପରି ମା' ସମଲେଶ୍ୱରୀଙ୍କର ଶୁଭାଶୀର୍ବାଦ, ଦୟା ଓ କଲ୍ୟାଣ ଫଳରେ ସମ୍ବଲପୁରବାସୀ ପ୍ରଗତିର ଶେଷ ସୋପାନରେ ଉପନୀତ ହୋଇ ପାରିଛନ୍ତି । ସେ କେହି ନୁହନ୍ତି, ସେ ଅଟନ୍ତି ସ୍ୱୟଂ ପରମବୈଷ୍ଣବୀ, ସାବିତ୍ରୀ, ଗାୟତ୍ରୀ ଓ ଯୋଗମାୟାଙ୍କର ପ୍ରତୀକ ସଦୃଶ । ଆଉ ମଧ୍ୟ ସେ ହେଉଛନ୍ତି ବିଶ୍ୱ ଜନନୀଙ୍କର ଐଶ୍ୱର୍ଯ୍ୟ ଓ ବିଭୂତି କଣିକାର ଗନ୍ତାଘର ।

ମାତୃଶକ୍ତି କାଳେ କାଳେ ଅତି ଶକ୍ତିଶାଳୀ, ବରଦାୟିନୀ ଓ କଲ୍ୟାଣମୟୀ । ମା'ଙ୍କ କରୁଣା ବିଶ୍ୱବ୍ରହ୍ମାଣ୍ଡର କଲ୍ୟାଣ ତଥା ମଙ୍ଗଳ ପାଇଁ ଅପରିହାର୍ଯ୍ୟ । ମା'ଙ୍କୁ ଡାକିଲେ ମା' ଡାକ ଶୁଣିଥାନ୍ତି । ସେହି ମା' ସମଲେଶ୍ୱରୀ ସମସ୍ତଙ୍କୁ କଲ୍ୟାଣ ବର୍ଷଣ କରନ୍ତୁ, ଏହା ହିଁ ପ୍ରାର୍ଥନା ।



ଦୁର୍ଗାମାଧବନଗର, ଭରତପୁର, ଭୁବନେଶ୍ୱର

# ବିକାଶ ପ୍ରକ୍ରିୟାରେ ଗଣମାଧ୍ୟମର ଭୂମିକା

ଲୋକନାଥ ସୁଆର

'ବିକାଶ' ଶବ୍ଦ ହେଉଛି ଏକ ବହୁଚର୍ଚ୍ଚିତ ଶବ୍ଦ । ଆଜିକାଲି ଏହି ବିକାଶ ପ୍ରକ୍ରିୟା ଉପରେ ବୁଦ୍ଧିଜୀବୀ, ଶିକ୍ଷାବିତ୍, ବିଚାରପତି, ସମାଜସେବୀ, ରାଜନୈତିକ ବ୍ୟକ୍ତିବିଶେଷ ତଥା ଅନ୍ୟାନ୍ୟ ଶିକ୍ଷିତ ସମାଜ ଅନେକ ତର୍କବିତର୍କ ଓ ଆଲୋଚନା କରୁଛନ୍ତି । ଏଠାରେ ବିକାଶ କହିଲେ, ଆମେ କେବଳ ସମୟ ଅନୁସାରେ ଆମ ସମାଜ ଓ ବ୍ୟକ୍ତିବିଶେଷଙ୍କ ନିୟମିତ ପ୍ରଗତି ବୋଲି ବୁଝିବାକୁ ପଡ଼ିବ । ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ, ଗତିଶୀଳ ଓ ପ୍ରସାରିତ କରୁଥିବା ମାଧ୍ୟମ ମଧ୍ୟରେ ଗଣମାଧ୍ୟମର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହି ଗଣମାଧ୍ୟମଦ୍ୱାରା ଲୋକମାନଙ୍କ ମଧ୍ୟରେ ବିକାଶ ଲାଗି କଣ କଣ ସବୁ କରିହେବ, ସେଥିନେଇ ସଚେତନତା ସୃଷ୍ଟି ହୋଇଥାଏ ଏବଂ ଲୋକମାନଙ୍କୁ ଆବଶ୍ୟକୀୟ ସୂଚନା ମିଳିଥାଏ । ଗଣମାଧ୍ୟମର ପ୍ରଯୁକ୍ତିବିଦ୍ୟା ଆଜି ଆମ ପାଖରେ ଭୌଗୋଳିକ ଦୂରତ୍ୱ କମ କରିବା ସଂଗେ ସଂଗେ ଯେଉଁମାନେ ବିକାଶ ଧାରାରେ ନାମମାତ୍ର ସ୍ତରରେ ରହିଛନ୍ତି, ସେମାନଙ୍କୁ ବିକାଶ ହାସଲ ସକାଶେ ନୂତନ ନିର୍ଣ୍ଣାୟକ ବିନ୍ଦୁ ଭାବରେ ସହାୟତା କରିଥାଏ ।

ଗଣମାଧ୍ୟମ କହିଲେ, ଏଥିରେ ସମସ୍ତ ପ୍ରକାର ଯୋଗାଯୋଗ ମାଧ୍ୟମକୁ ଅନ୍ତର୍ଭୁକ୍ତ କରାଯାଇପାରେ । ଏଠାରେ ଆମେ କେବଳ ଖବରକାଗଜ ଓ ଇଲେକ୍‌ଟ୍ରୋନିକ୍ ଗଣମାଧ୍ୟମ ଉପରେ ଆଲୋଚନା କରିବା । ବର୍ତ୍ତମାନ ଯେଉଁ ବିଶ୍ୱକରଣ ପ୍ରକ୍ରିୟା ବା ଜଗତୀକରଣ ଯୁଗ ଚାଲୁରହିଛି, ଏହା ଫଳରେ ସାରା ବିଶ୍ୱରେ ଏକକ ବ୍ୟବସ୍ଥା ସୃଷ୍ଟି ହେବାରେ ଲାଗିଛି । ପରନ୍ତୁ ଭାରତବର୍ଷରେ ଏଭଳି ଅଞ୍ଚଳ ବା କ୍ଷେତ୍ରମାନ ଅଛନ୍ତି, ସେସବୁ ସାମଗ୍ରିକ ବିକାଶ ପ୍ରକ୍ରିୟାର ପରିସର ବାହାରେ ରହିଯାଇଛନ୍ତି । ଏବେବି ଦେଶ ସ୍ୱାଧୀନତାର ବହୁ ବର୍ଷ ପରେ ବହୁ ଅଞ୍ଚଳ, ରାସ୍ତାଘାଟ, ପାନୀୟଜଳ, ସ୍ୱାସ୍ଥ୍ୟ ସୁରକ୍ଷା ପାଇଁ ସାଧାରଣ ବ୍ୟବସ୍ଥା ଆଦୌ ନାହିଁ କହିଲେ ଚଳେ । କୃଷି କ୍ଷେତ୍ରରେ ପୁରାତନ ଚାଷ ପଦ୍ଧତି ଚାଲୁ ରହିଛି । ଜଳସେଚନର ସୁବିଧା ସେମାନଙ୍କ ନିକଟରେ ପହଞ୍ଚି ପାରି ନାହିଁ । କୃଷିକ୍ଷେତ୍ର ସମ୍ପୂର୍ଣ୍ଣରୂପେ ପ୍ରକୃତିର ଆଶୀର୍ବାଦରେ ବଞ୍ଚିରହିଛି । ପୁରାତନ ଝୁମ ଚାଷ ବା ପୋଡୁଚାଷ ବ୍ୟବସ୍ଥା ଆଜି ପର୍ଯ୍ୟନ୍ତ ଚାଲୁ ରହିଛି । ସେଠାରେ ଜେନେଟିକାଲ ମୋଡ଼ିଫାଏଡ୍ କୃଷି ବ୍ୟବସ୍ଥା ସମ୍ପର୍କରେ ଲୋକମାନେ ଅନଭିଜ୍ଞ । ସମୟାନୁକ୍ରମରେ ଜନସଂଖ୍ୟାର ବୃଦ୍ଧି ଘଟିଛି ଏବଂ ସାମାଜିକ ଓ ଆର୍ଥିକ ବିକାଶମୂଳକ କାର୍ଯ୍ୟମାନ ସବୁ ହେଉଛି । କିନ୍ତୁ ଲୋକମାନଙ୍କ ସାଂପ୍ରତିକ ବିକାଶ ଓ ପରିବର୍ତ୍ତନ ଉପରେ ସଚେତନତା ସ୍ତର ଏପରି ନିମ୍ନରେ ରହିଛି ଯେ ସେମାନେ ପୁରାତନ ଚିନ୍ତାଧାରା ସହ ଯୋଡ଼ି ହୋଇ ରହୁଛନ୍ତି । ଫଳରେ ନୂତନ ଚିନ୍ତାଧାରା ସହ ତାଳ ମିଶାଇ ନ ଚାଲିବା ଫଳରେ ଅଭାବବୋଧ ପରିଲକ୍ଷିତ ହେଉଛି ।

ଦୁଃଖର ବିଷୟ ଏହି ଯେ, ଲୋକମାନଙ୍କ ମଧ୍ୟରେ ଆବଶ୍ୟକ ଜ୍ଞାନର ପ୍ରସାରରେ ଗଣମାଧ୍ୟମ ଯେଉଁଭଳି ଭୂମିକା ନେବା ଆବଶ୍ୟକ, ସେହିଭଳି ବୈପ୍ଳବିକ ଭୂମିକା ଗ୍ରହଣ କରି ନାହିଁ । ଉଦାହରଣସ୍ୱରୂପ ପୋଡୁଚାଷ ଯୋଗୁଁ ପରିବେଶ ସନ୍ତୁଳନ ପ୍ରତି ବିପଦ ସୃଷ୍ଟି ହେଉଛି । ଲୋକମାନଙ୍କୁ ଏହି ପାରମ୍ପରିକ ପୋଡୁଚାଷର ଦୀର୍ଘମିଆଦୀ ବିପଦ ଉପରେ ସଠିକ୍ ସୂଚନା ଯୋଗାଇଦେବା ପାଇଁ ସମସ୍ତ ଗଣମାଧ୍ୟମମାନଙ୍କୁ ସକ୍ରିୟ ଭୂମିକା ନିଭାଇବାକୁ ପଡ଼ିବ ଏବଂ ଏହାର ବିକଳ୍ପ ଉପରେ ମଧ୍ୟ ଲୋକମାନଙ୍କୁ ସଚେତନ କରାଇବାକୁ ପଡ଼ିବ ।

ଆଜିକାଲି ଗଣମାଧ୍ୟମଗୁଡ଼ିକ ମୁଖ୍ୟତଃ ରାଜନୈତିକ ଘଟଣାବଳୀ ଓ ରାଜନୈତିକ ନେତୃବୃନ୍ଦଙ୍କ ଉପରେ ବିଶେଷ ଧ୍ୟାନ ଦେଉଛନ୍ତି । ରାଜନୈତିକ ନେତାମାନେ ଆଜିକାଲି ଯାହା ସବୁ କହୁଛନ୍ତି, ତାହାର ବାସ୍ତବିକ୍ ଦୃଶ୍ୟପଟ ସହ କିଛି ସମ୍ବନ୍ଧ ରହୁ ନ ଥିବା ଯୋଗୁଁ ମିଡ଼ିଆର ରାଜନୈତିକ ଘଟଣାବଳୀ ଉପରେ ଧ୍ୟାନ କେନ୍ଦ୍ରିତ କରିବାର ଅର୍ଥ ହେଲା ଅସତ୍ୟ ଉପରେ ଆଲୋକପାତ କରିବା । କିନ୍ତୁ ଏହା ସବୁ ଆଜିକାଲି ଗଣମାଧ୍ୟମରେ ସବୁଠାରୁ

ଅଧିକ ସ୍ଥାନ ନେଉଛନ୍ତି । ନୀତି ନିର୍ଦ୍ଧାରଣକାରୀମାନଙ୍କୁ ପ୍ରଭାବିତ କରୁଥିବା ଗ୍ରାମାଞ୍ଚଳ ସମ୍ବାଦ ଉପରେ ଆଦୌ ଆବଶ୍ୟକ ଦୃଷ୍ଟି ଗଣମାଧ୍ୟମ ଦ୍ୱାରା ଦିଆଯାଉ ନାହିଁ । ଗଣମାଧ୍ୟମ ଯଦି ବିକାଶଧାରାର ଅସନ୍ତୁଳିତ ଅବସ୍ଥା ଉପରେ ଆଲୋଚନା ନ କରେ ଏବଂ ଗ୍ରାମାଞ୍ଚଳ ଲୋକମାନଙ୍କ ମୌଳିକ ଆବଶ୍ୟକତା ଉପଲବ୍ଧ ନ ହେଉଥିବା ସ୍ଥିତି ଉପରେ ଆଲୋକପାତ ନ କରେ, ତେବେ ଏହି ବିଶାଳ ଗଣତାନ୍ତ୍ରିକ ଦେଶରେ, ଏହି ଦାୟିତ୍ୱ କିଏ ନିଭାଇବ ? ଏଭଳି ସ୍ଥିତିରେ ଆମେ କେବଳ ଏକ ଅବାସ୍ତବ ଦୁନିଆରେ ଘୂରିବୁଲିବା, ଯେଉଁଠାରେ ଆମେ ସୁପର ବଜାରରୁ ସାମଗ୍ରୀ କିଣିବାବେଳେ, ଆମେ ଆଦୌ ଧ୍ୟାନ ଦେବା ନାହିଁ ଯେ ଏହା ସବୁ କିଏ ଉତ୍ପାଦନ କରୁଛି ?

ବିକଶିତ ଦେଶମାନଙ୍କ ମଧ୍ୟରେ ଲୋକମାନଙ୍କ ପାଖରେ ବିକାଶ ସମ୍ପର୍କୀୟ ଯୋଜନାର ସଠିକ୍ ଖବର ପହଞ୍ଚାଇବା କାମ କେବଳ ଗଣମାଧ୍ୟମ ଦ୍ୱାରା ହିଁ କରାଯାଇପାରେ । ତେଣୁ ଗଣମାଧ୍ୟମ ବ୍ୟବସ୍ଥା ସରକାର ଓ ଲୋକମାନଙ୍କ ମଧ୍ୟରେ ଏକ ସେତୁ ରୂପରେ କାମ କରିଥାଏ । ଏହି ବଳିଷ୍ଠ ଗଣମାଧ୍ୟମ ଲୋକମାନଙ୍କୁ ନୂତନ ଚିନ୍ତାଧାରାରେ ଚାଲିବା ପାଇଁ ଉଦ୍‌ବୁଦ୍ଧ କରିପାରିବ । ବିକାଶଧାରାରେ ପାରମ୍ପରିକ ପଦ୍ଧତିରୁ ଲୋକମାନଙ୍କୁ ମୁକୁଳାଇ ନୂତନ ପଦ୍ଧତି ସବୁ ଅବଲମ୍ବନ କରିବା ଲାଗି ଆଗ୍ରହ ସୃଷ୍ଟି କରିପାରିବ । ଅବଶ୍ୟ ଉତ୍ତମ ଜୀବନଯାପନ ଲାଗି ଆଗ୍ରହ ବେଳେବେଳେ ବିବାଦାସ୍ପଦ ସ୍ଥିତି ସୃଷ୍ଟି କରିଥାଏ । ଏହାକୁ ଯୁକ୍ତାତ୍ମକ ବିବାଦ ବୋଲି କୁହାଯାଇପାରିବ, କାରଣ ଏହା ସମସ୍ତଙ୍କୁ ନୂତନ ଧାରା ଆଡ଼କୁ ଆକର୍ଷିତ କରାଏ । ଏହା ଲୋକମାନଙ୍କୁ ସୂଚାଇଦିଏ ଯେ, ପ୍ରଗତି ଲାଗି ଆଗରେ ଯଥେଷ୍ଟ ସୁଯୋଗ ରହିଛି, ଯାହା ସେମାନେ ଆବୋରି ନେଇପାରିବେ ଏବଂ ଗଣମାଧ୍ୟମ ଏଥିଲାଗି ଉଚିତ ଓ ଅନୁଚିତ ଦିଗ ନିର୍ଦ୍ଦେଶ ଯୋଗାଇ ଦେଇଥାଏ ।

ବିକାଶ ଯୋଗାଯୋଗ, ଯାହାକି ଗ୍ରାମ୍ୟ ବିକାଶ ଉପରେ ଧ୍ୟାନ କେନ୍ଦ୍ରିତ କରିଥାଏ, ତାହା ଆଜି ଗଣମାଧ୍ୟମରେ ବିଶେଷତଃ ଗୁରୁତ୍ୱର ସହ ଉପସ୍ଥାପିତ ହୋଇପାରୁ ନାହିଁ । ବେଳ ଥିଲା, ଯେତେବେଳେ ଆମେ କେବଳ ଗୋଟିଏ ଦୂରଦର୍ଶନ ଚ୍ୟାନେଲ ଟେଲିଭିଜନ୍‌ରେ ଦେଖିବାକୁ ପାଉଥିଲୁ । ଆମ ଆଗରେ ଆଉ କୌଣସି ବିକଳ୍ପ ନ ଥିବା ଯୋଗୁଁ ଆମେ ବାଧ୍ୟ ହୋଇ କୃଷି ଦର୍ଶନ ଦେଖୁଥିଲେ । ଏହା ଆମର ଆଶାସ୍ୱରୂପ ନ ଥିଲେ ହିଁ ଆମେ ବାଧ୍ୟ ହୋଇ ଦେଖୁଥିଲେ । କିନ୍ତୁ ଏଥିରେ ଯେଉଁ ବାସ୍ତବତା ଭରି ରହିଥିଲା ଆମେ ତାହାକୁ ବାସ୍ତବତା ସହ ଯୋଡ଼ି ଏହାଦ୍ୱାରା ଆମେ ବାସ୍ତବ ଭାରତବର୍ଷ ସହ ମୁହାଁମୁହିଁ ହେଉଥିଲେ । କୃଷି ଦର୍ଶନ ଯୋଗୁଁ ଆମ କୃଷି କ୍ଷେତ୍ରରେ ଯେଉଁସବୁ ଛୋଟ ବଡ଼ ସଫଳତା ହାସଲ ହେଉଥିଲା ଏବଂ ଗ୍ରାମ୍ୟ ବିକାଶ କ୍ଷେତ୍ରରେ ଯାହା ସବୁ ହାସଲ ହେଉଥିଲା, ସେ ବିଷୟରେ ଆମେ ଜାଣିବାକୁ ପାଉଥିଲେ । ଆଜି କେବୁଲ ଟେଲିଭିଜନ ଯୋଗୁଁ ଦୂରଦର୍ଶନକୁ ଆଜି ଲୋକେ ପ୍ରାୟ ଭୁଲି ଯାଇଛନ୍ତି । ମନେପଡ଼େ, ଏହି ଦୂରଦର୍ଶନ ଦ୍ୱାରା ପ୍ରଦର୍ଶିତ ମେଗା ଧାରାବାହିକ ରାମାୟଣ ଓ ମହାଭାରତ–ସମଗ୍ର ଭାରତ ବର୍ଷରେ ଏହା ଆଧ୍ୟାତ୍ମିକ ଭାବନାର ଅତୁଟ ବନ୍ଧନ ସୃଷ୍ଟି କରିପାରିଥିଲା । ଫଳରେ ଆମ ସାମାଜିକ ଓ ଆଧ୍ୟାତ୍ମିକ ଚରିତ୍ରକୁ ବେଶ୍ ଭଲ ଭାବରେ ସୁଧାରି ପାରିଥିଲା । ତଥାପି ଆଜି ଦୂରାନ୍ତ ଗ୍ରାମାଞ୍ଚଳରେ ଦୂରଦର୍ଶନ ଓ ଆକାଶବାଣୀ ଗ୍ରାମାଞ୍ଚଳ ଓ ସହରାଞ୍ଚଳ ଭାରତ ମଧ୍ୟରେ ସଂଯୋଗ ସ୍ଥାପନ କରିବାରେ ସମର୍ଥ ହୋଇପାରିଛି ।

ତେବେ ବିଡ଼ମ୍ବନାର ବିଷୟ ଏହିକି ଯେ, ସହରାଞ୍ଚଳରେ ଲୋକମାନେ କେବଳ ରୋମାଞ୍ଚକର ଖବର ଦେଖିବାକୁ ପସନ୍ଦ କରୁଛନ୍ତି ଏବଂ ଏହି ଖବର ସବୁ ନୂତନ ନୂତନ ବୈଦ୍ୟୁତିକ ଚ୍ୟାନେଲମାନ ପ୍ରସ୍ତୁତ କରୁଛନ୍ତି, ତାହାକୁ ସହରୀ ସଭ୍ୟତା ଢାଞ୍ଚାରେ ପରିବେଷଣ କରାଯାଉଛି । ଏହି ଇଲେକ୍‌ଟ୍ରୋନିକ୍ସ ଗଣମାଧ୍ୟମମାନ ଏକ ଏକ ବିଶାଳ କର୍ପୋରେଟ୍ ସଂସ୍ଥା । ମହାତ୍ମାଗାନ୍ଧୀଙ୍କ ଭାଷାରେ ଭାରତ ଗ୍ରାମରେ ହିଁ ବଞ୍ଚିଛି । ପାର୍ଥକ୍ୟପୂର୍ଣ୍ଣ, ସହରୀ ଚିନ୍ତାଧାରା ନେଇ ତଥ୍ୟ ପରିବେଷଣ, ଆଜି ଗ୍ରାମାଞ୍ଚଳ ଓ ସହରାଞ୍ଚଳ ମଧ୍ୟ ବ୍ୟାପକ ତଫାତ୍ ଦେଖାଯାଇଛି । ଏବେ ଏହିଭଳି ଚିନ୍ତାଧାରାରୁ ସମ୍ବାଦପତ୍ରମାନେ ତଥା ବୈଦ୍ୟୁତିକ ଗଣମାଧ୍ୟମମାନେ ମୁକୁଳି, ଗାଁ ଚାଲ, ଅଭିଯାନ ଆରମ୍ଭ କଲେଣି । ଯେହେତୁ ଗଣମାଧ୍ୟମ ଆମ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ତେଣୁ ନିଜ ନିଜର ଦାୟିତ୍ୱବୋଧ ସମ୍ପର୍କରେ ସଚେତନ ହୋଇ କାମ କରିବାକୁ ଆରମ୍ଭ କରିଛନ୍ତି । ଏବେ ଚ୍ୟାନେଲମାନଙ୍କରେ ନାଗରିକ ସମ୍ବାଦଦାତା କାର୍ଯ୍ୟକ୍ରମ, ଆମେ ଆପଣ ସାଥିରେ ଭଳି ଉଚ୍ଚମାନର ଗଠନମୂଳକ କାର୍ଯ୍ୟକ୍ରମ ହାତକୁ ନେଇ ବେଶ୍ ପ୍ରଭାବଶାଳୀ ଭୂମିକା ନେଇପାରିଛନ୍ତି ।

ଗଣମାଧ୍ୟମ ହେଉଛି ଆଧୁନିକ ମୁକ୍ତ ଅର୍ଥନୀତି ବିଶ୍ୱରେ ଏକ ଅତ୍ୟାବଶ୍ୟକ ସାମଗ୍ରୀ । ଖାଦ୍ୟ, ବସ୍ତ୍ର ଓ ବାସଗୃହ ଭଳି

ଗଣମାଧ୍ୟମକୁ ଆମେ ଜୀବନଧାରଣର ଏକ ପ୍ରଧାନ ଉପକରଣ ଭାବେ ଗ୍ରହଣ କରିନେଇଛୁ । ମନେହୁଏ, ଗଣମାଧ୍ୟମଦ୍ୱାରା ଚିରଚଞ୍ଚଳ ଆମ ସମାଜର ନାଡ଼ି ସ୍ପନ୍ଦିତ ହେଉଛି ଏବଂ ଇଚ୍ଛା ହୁଏ ସେହି ସ୍ପନ୍ଦନ ମଧ୍ୟରେ ନିଜର ସତ୍ତାକୁ ମଧ୍ୟ ଜଡ଼ିତ କରାଇ ହଜିଯାଏ । ଆଜିର ଗଣମାଧ୍ୟମ ବିଶ୍ୱବଜାର ଅର୍ଥନୀତିକୁ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷରେ ପରିଚାଳନା କରୁଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ସୂଚନା ଦ୍ୱାରା ଆମେ ଜାଗ୍ରତ ରହୁ । ଗଣମାଧ୍ୟମଦ୍ୱାରା ୨୪ ଘଣ୍ଟିଆ ତଥ୍ୟ ପରିବେଷଣ ଯୋଗୁଁ ହୋଟେଲ, ଚା ଦୋକାନୀଠାରୁ ଆରମ୍ଭ କରି ମନ୍ତ୍ରୀ, ହାକିମ, ରାଷ୍ଟ୍ରନେତା, ବ୍ୟବସାୟୀ, ଶିକ୍ଷକ, ଅଧ୍ୟାପକ, ବେକାର ଯୁବକଯୁବତୀ, ମହିଳା ଓ ଶିଶୁମାନେ ସମସ୍ତେ ଖବର ପାଇବା ପାଇଁ ସର୍ବଦା ବ୍ୟାକୁଳ । ଆଗେ ଘରେ ଅଫିସ୍, ସ୍କୁଲ୍ ଓ ଶିକ୍ଷାନୁଷ୍ଠାନରେ ଗଣମାଧ୍ୟମର ଉପସ୍ଥିତି ଦେଖାଯାଉଥିଲା । ବର୍ତ୍ତମାନ ରାସ୍ତାଘାଟ, ଦୋକାନ, ବଜାର, ବ୍ୟକ୍ତିଗତ ମୋବାଇଲ ଫୋନ୍‌ରେ ମଧ୍ୟ ଗଣମାଧ୍ୟମର ଉପସ୍ଥିତି, ନିଶ୍ଚିତଭାବେ ସ୍ୱାଗତଯୋଗ୍ୟ ।

ଗଣମାଧ୍ୟମର ତଥ୍ୟମାନ ବିକାଶ ପ୍ରକ୍ରିୟାରେ ଥିବା ଠିକ୍ ଭୁଲକୁ ତର୍ଜମା କରି ଜନମତ ସୃଷ୍ଟି କରିପାରୁଛନ୍ତି । ଲୋକଙ୍କ ମତାମତ ସରକାରଙ୍କୁ ଜଣାଇ, ଦେଶ ଗଠନରେ ଜଡ଼ିତ କରାଉଛନ୍ତି । ଗଣମାଧ୍ୟମ କେବଳ ମନୋରଞ୍ଜନଧର୍ମୀ ନ ହୋଇ, ବଦଳୁଥିବା ପାରିପାର୍ଶ୍ୱିକ ଅବସ୍ଥାରେ ନିଜର ନୂତନ ଅସ୍ତିତ୍ୱ ଖୋଜିବାରେ ବେଶ୍ ବ୍ୟସ୍ତ । ସଂପ୍ରତି ଗଣମାଧ୍ୟମ ଦ୍ୱାରା ନାରୀ ସଶକ୍ତିକରଣ କାର୍ଯ୍ୟକ୍ରମ ତଥା ଏ ସମ୍ପର୍କୀୟ ଚିନ୍ତାଧାରାମାନ ପ୍ରକାଶ କରାଯାଉଛି । ବେଳେବେଳେ ଘଟଣାକୁ ପରିବେଷଣ କରିବାକୁ ଯାଇ ନିଜେ ନିଜେ ବିଚାରପତି ଭୂମିକା ନେଇ ଭିନ୍ନ ଭିନ୍ନ ମତାମତମାନ ପ୍ରକାଶ କରିବା କାମ ଆମ ସମାଜକୁ ବିଭ୍ରାନ୍ତିକର କରି ଦେଉଛି । ଦେଖନ୍ତୁ ବର୍ତ୍ତମାନ ସମାଜରେ ଯୌତୁକଜନିତ ମୃତ୍ୟୁଠାରୁ ଆରମ୍ଭ କରି ଛାଡ଼ପତ୍ର ପର୍ଯ୍ୟନ୍ତ ଖବରମାନ ବିଶେଷ ଗୁରୁତ୍ୱ ସହ ପରିବେଷଣ କରାଯାଉଛି । ଯଦି ଗଣମାଧ୍ୟମମାନେ ସମାଜ ଗଠନର ଆଭିମୁଖ୍ୟ ନେଇ ଯୁକ୍ତାତ୍ମକ ଖବରକୁ ଗୁରୁତ୍ୱ ଦେଇ ବିଯୁକ୍ତାତ୍ମକ କଥାକୁ ନିନ୍ଦା କଲେ ବେଶ୍ ଭଲ ହୁଅନ୍ତା । ସେହି ସଂକ୍ରାନ୍ତରେ ଜନସଚେତନତା ସୃଷ୍ଟି କରାଇପାରିଲେ, ଭାରତରେ ଭୁଶୁଡ଼ି ପଡୁଥିବା ପରିବାରମାନଙ୍କୁ ସଜାଡ଼ି ହୁଅନ୍ତା । ବରଂ ଏ କ୍ଷେତ୍ରରେ ଗଣମାଧ୍ୟମର ଗଠନମୂଳକ ଭୂମିକାକୁ ଆମେ ସମସ୍ତେ ଆଶା କରୁ । ଗଣମାଧ୍ୟମମାନେ ଶିଶୁବିକାଶ, ରିୟଲିଟ୍ ଶୋ, ସ୍କୁଲକୁ ପାଠ ପଢ଼ିବା ଅଭିଯାନ, ପରିବେଶ ସୁରକ୍ଷା ତଥା ସ୍ୱାସ୍ଥ୍ୟ ସୁରକ୍ଷା କାର୍ଯ୍ୟକ୍ରମମାନ ଦେଖାଉଅଛନ୍ତି । ବେଶ୍ ଏହା ଭଲ । କିନ୍ତୁ ଏହି କ୍ଷେତ୍ରରେ ଉନ୍ନତି ପାଇଁ ଅନେକ ବାଟ ଯିବାର ଅଛି । ଦେଖନ୍ତୁ ଗଣମାଧ୍ୟମରେ କ୍ରିକେଟ ଖବର ବହୁଳ ପ୍ରସାରିତ । ପରନ୍ତୁ ଅନ୍ୟାନ୍ୟ ଖେଳର କୃତିତ୍ୱକୁ ସେହିଭଳି ଗୁରୁତ୍ୱ ସହ ପରିବେଷଣ କରାଯାଉ ନାହିଁ । କ୍ରିକେଟ ଖେଳ କର୍ପୋରେଟ୍ ସଂସ୍ଥାମାନଙ୍କ ସହିତ ଜଡ଼ିତ ଓ ଗଣମାଧ୍ୟମମାନେ ମଧ୍ୟ କର୍ପୋରେଟ୍ ସଂସ୍ଥାର ଅଂଶ ତେଣୁ ପକ୍ଷପାତିତାମୂଳକ ତଥ୍ୟ ପରିବେଷଣ ହୋଇଯାଉଛି ।

କେତେକ ଆଧ୍ୟାତ୍ମିକ ଚ୍ୟାନେଲ ରହିଛି । ପରନ୍ତୁ ଏହାଦ୍ୱାରା ସେହି ଆଧ୍ୟାତ୍ମିକ ଗୁରୁମାନେ ନିଜର ଅର୍ଥନୀତିକୁ ସୁଦୃଢ଼ କରିବା ପାଇଁ ଓ ନିଜର ସମର୍ଥକଙ୍କ ସଂଖ୍ୟା ବଢ଼ାଇବା ପାଇଁ ଗଣମାଧ୍ୟମକୁ ଭ୍ରମାତ୍ମକ ଦିଗରେ ପରିଚାଳିତ କରୁଛନ୍ତି । ଦେଖାଯାଉଛି, ଗଣମାଧ୍ୟମର ପ୍ରତିନିଧିମାନେ ସଠିକ୍ ଖବର ପ୍ରକାଶ କଲେ ସରକାର, ରାଜନୈତିକ ଦଳ ତଥା ନେତାମାନଙ୍କର ଆକ୍ରୋଶର ଶିକାର ହେଉଛନ୍ତି । ବେଳେବେଳେ ସେମାନେ ମୃତ୍ୟୁର ଶିକାର ହେଉଛନ୍ତି । ଗଣମାଧ୍ୟମ ସଂସ୍ଥାର କାର୍ଯ୍ୟାଳୟରେ ପଶି ଭଙ୍ଗାରୁଜାମାନ କରୁଛନ୍ତି । ଯାହାଫଳରେ ଗଣମାଧ୍ୟମମାନେ ସାଲିସ୍ କରି ତଥ୍ୟ ପରିବେଷଣ କରୁଛନ୍ତି । ସତ୍ୟ ପ୍ରକାଶ କରିବାର ପ୍ରଭାବ ସର୍ବଦା ଭୟଙ୍କର ବୋଲି ହୃଦ୍‌ବୋଧ ହେଉଛି । ଏହା ଏକ ଚିନ୍ତାର ବିଷୟ ।

ଦେଖାଯାଉଛି, ଚ୍ୟାନେଲମାନେ ସିରିଅଲ୍‌ମାନଙ୍କରେ ଘରଭଙ୍ଗା, ଶସ୍ତା କାହାଣୀମାନ ପରିବେଷଣ କରୁଛନ୍ତି । ଏହା ସମାଜ ଗଠନ କିମ୍ବା ସାମାଜିକ ବିକାଶରେ ଆଦୌ ସାହାଯ୍ୟ କରୁନାହିଁ । ଗ୍ରାମାଞ୍ଚଳ ତଥା ସହରାଞ୍ଚଳର ମଧ୍ୟବିତ୍ତ ପରିବାରମାନଙ୍କ ଜୀବନଶୈଳୀରେ କୁପ୍ରଭାବ ନିଶ୍ଚିତଭାବେ ଦେଖାଯାଉଅଛି । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଖାଲି ପାଶ୍ଚାତ୍ୟ ସଭ୍ୟତାର ଭଗ୍ନ ଚିନ୍ତାଧାରାର ପ୍ରଚାର ଛଡ଼ା ଆଉ କିଛି ନୁହେଁ ତ ଆଉ କ'ଣ ? ଗଣମାଧ୍ୟମମାନଙ୍କ ଦ୍ୱାରା କିଛି ଅତିରଞ୍ଜିତ ତଥା କାମଳ ଖବର ପରିବେଷଣ ବହୁତ ଅରୁଚି ଓ ଅସୁଖୀକର ହୋଇପଡ଼ିଛି । ଫଳରେ ଶିଶୁ, ମହିଳା ତଥା ଆଜିର ଯୁବପିଢ଼ି ଭୁଲ୍‌ବାଟକୁ ନିଶ୍ଚୟ ଆପଣାଇନେବେ, ଏଥିରେ ସନ୍ଦେହ ନାହିଁ । ଜୀବନଟା କଣ ଖାଲି ଚଳଚ୍ଚିତ୍ର କାହାଣୀ, ବଡ଼ ବଡ଼ ଘରର ଲୋକଙ୍କ ଜୀବନଶୈଳୀ ସହିତ ସାମଞ୍ଜସ୍ୟ ରହିଛି ।

ସେମାନଙ୍କ ଆଭିଜାତ୍ୟପୂର୍ଣ୍ଣ ତଥା ଚାକଚକ୍ୟପୂର୍ଣ୍ଣ ଜୀବନଶୈଳୀକୁ ପ୍ରଚାର ଓ ବହୁଳ ପ୍ରସାର କରିବା ଦ୍ୱାରା ଗରିବ ତଥା ମଧ୍ୟବିତ୍ତ ପରିବାରର ତେଲଲୁଣ ଦୁନିଆ ବେଶ୍ ପ୍ରଭାବିତ । ସହରର ମଡ଼େଲ ସଭ୍ୟତାକୁ ଗୁରୁତ୍ୱ ଦେଇ ଖବର ପ୍ରଚାର କରିବା ଦ୍ୱାରା ବର୍ତ୍ତମାନ ସମସ୍ତେ ସହରୀକରଣର ଅନ୍ଧଦୌଡ଼ରେ ସାମିଲ ହେବାପାଇଁ ଗାଁରୁ ସହରକୁ ଚାଲ ଅନ୍ଧ ଅଭିଯାନ ଆମ ସମାଜରେ ଦେଖାଯାଇଛି ।

ଗ୍ରାମ୍ୟ ଅର୍ଥନୀତି ଭୁଶୁଡ଼ିଯାଇଛି । ବୟସ୍କ ବୁଢ଼ାବୁଢ଼ୀ ଗାଁରେ ରହିଛନ୍ତି । ତାଙ୍କର ଦୁଃଖ ବୁଝୁଛି କିଏ ? ପିଲାସବୁ ସହରରେ ଅସ୍ତିତ୍ୱ ହରାଇ ଘର, ପରିବାର, ସମାଜ, ଦାୟିତ୍ୱ ଓ କର୍ତ୍ତବ୍ୟର ଭାବନାକୁ ଭୁଲିଗଲେଣି । ଏହି ଭୁଶୁଡ଼ି ପଡୁଥିବା ଭାରତୀୟ ସମାଜକୁ ସୁଧାରିବ କିଏ ? ଆମେ ଦୃଢ଼ ଭାବରେ ମତପୋଷଣ କରିପାରିବା ଯେ ଗଣମାଧ୍ୟମ ହିଁ ଏହି ଦାୟିତ୍ୱ ସୁଚାରୁରୂପେ ତୁଲାଇପାରିବ ।

ଦେଶ ସ୍ୱାଧୀନତା ପାଇଁ ଝାସ ଦେଇଥିବା ସମସ୍ତ ବୀର ସ୍ୱାଧୀନତା ସଂଗ୍ରାମୀଙ୍କର ମହାନ୍ ଚିନ୍ତାଧାରାର କଣ, ଆଧୁନିକ ବିଶ୍ୱବଜାରର ଉନ୍ମୁକ୍ତ ଅର୍ଥନୀତି ବ୍ୟବସ୍ଥାରେ ମୂଲ୍ୟହୀନ । ଠିକ୍ ରାସ୍ତା ଦେଖାଇବ କିଏ ? ଏକମାତ୍ର ଗଣମାଧ୍ୟମ ଦ୍ୱାରା ସବୁକିଛି ସମ୍ଭବ ବୋଲି ଆମ ମନକୁ ଆସେ ।

କିଛି ଦିନ ତଳେ ଚାଷୀମାନଙ୍କର ଆତ୍ମହତ୍ୟା ଘଟଣା ସବୁ ଆମ ସମ୍ବେଦନଶୀଳତାକୁ ସ୍ପର୍ଶ କରିପାରି ନାହିଁ । ଏପରିକି ଗ୍ରାମାଞ୍ଚଳ ତଥା ପାର୍ବତ୍ୟାଞ୍ଚଳରେ ଦେଖାଯାଉଥିବା ମରୁଡ଼ି କିମ୍ବା ବନ୍ୟାର ବିଭୀଷିକା ଏବଂ ତଦ୍‌ଜନିତ ବ୍ୟାପକ ଜନଜୀବନ ନଷ୍ଟ ହେବା ଖବର ଆଜିକାଲି ଟି.ଭି. ଚ୍ୟାନେଲ୍‌ରେ କେବଳ ଏକ ଝଲକ ଭାବରେ ପ୍ରଦର୍ଶିତ ହେଉଛି । ଦୁଃଖଦ ଘଟଣାଗୁଡ଼ିକ ପ୍ରଦର୍ଶିତ ହେଉଥିଲେ ହେଁ ଏହା ଉପରେ ପ୍ରଭାବଶାଳୀ ଭାବରେ ସର୍ବସାଧାରଣରେ ଆଦୌ ଆଲୋଚନା କରାଯାଉ ନାହିଁ । ଏହାର ମୁଖ୍ୟ କାରଣ ହେଉଛି ଗଣମାଧ୍ୟମମାନେ ନିଜ ଭୂମିକାକୁ କେବଳ ସମ୍ବାଦ ପରିବେଷଣ ମଧ୍ୟରେ ସୀମିତ ରଖୁଛନ୍ତି ଏବଂ ସମସ୍ୟା ସମାଧାନରେ ଗଣମାଧ୍ୟମର ବି ଯେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ତାହା ଆଦୌ ଭାବୁ ନାହାନ୍ତି । କାରଗିଲ ଯୁଦ୍ଧ ସମୟରେ ବୃହତ୍ କର୍ପୋରେଟ୍ ଗଣମାଧ୍ୟମମାନେ ଦାନ ଲାଗି ବଡ଼ ବଡ଼ ବିଜ୍ଞାପନମାନ ଜାରି କରିଥିଲେ । କାରଗିଲ ଶହୀଦମାନଙ୍କ ପରିବାରଙ୍କୁ ସହାୟତା ଦେବା ଲାଗି ସାରା ଭାରତ ପ୍ରାୟ ଏକତ୍ରିତ ହୋଇ ଯାଇଥିଲେ । କିନ୍ତୁ କାରିଗିଲଠାରୁ ବି ଅତି ଭୟଙ୍କର ବିଭୀଷିକା ଉତ୍ତରପୂର୍ବାଞ୍ଚଳରେ ଘଟିଲାବେଳେ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ସହାୟତା ଲାଗି ଏହି କର୍ପୋରେଟ୍ ଗଣମାଧ୍ୟମମାନେ ଗୋଟିଏ ଶବ୍ଦ ବି କହିଲେ ନାହିଁ । ଏହା କରିଥିଲେ, ଉତ୍ତର ପୂର୍ବାଞ୍ଚଳ ଓ ବାକି ଭାରତ ମଧ୍ୟରେ ଭ୍ରାତୃଭାବର ଏକ ବୃହତ୍ ମୂଳଦୁଆକୁ ବଳିଷ୍ଠ କରାଯାଇପାରିଥାଆନ୍ତା । ବୃହତ୍ ଗଣମାଧ୍ୟମ ସଂସ୍ଥା ସବୁ ଏ କ୍ଷେତ୍ରରେ ବିଫଳ ହୋଇଛନ୍ତି ବୋଲି କହିଲାବେଳେ, ଆଞ୍ଚଳିକ ଗଣମାଧ୍ୟମମାନେ ଯେ କିଛି ଭୁଲ କରୁଛନ୍ତି, ତାହା କୁହାଯାଇପାରିବ ନାହିଁ ।

ଏ ଦେଶରେ ଅନିଶ୍ଚିତ ପାଣିପାଗ ଏବଂ ପୃଥିବୀର ତାପମାନଜନିତ ସମସ୍ୟାରୁ ଯେଉଁମାନେ ପ୍ରଥମେ ପ୍ରଭାବିତ ହେଉଛନ୍ତି ସେମାନେ ହେଲେ ଚାଷୀ । କିନ୍ତୁ ସେମାନଙ୍କ ପ୍ରତି ନାମମାତ୍ର ଦୃଷ୍ଟି ପଡୁଛି । କିନ୍ତୁ ଗୋଧ୍ରା କାଣ୍ଡକୁ ସାରା ଦେଶରେ ଅତି ସମ୍ବେଦନଶୀଳ ଓ ରୋମାଞ୍ଚକର ଭାବରେ ପରିବେଷଣ କରାଯାଇଥିଲା । ଏହା ଅବଶ୍ୟ ଦେଶ ପାଇଁ ଏକ କଳଙ୍କିତ ଘଟଣା ଥିଲା । ଜଣେ ବ୍ୟକ୍ତି ହାତ ଯୋଡ଼ି ଯେଉଁଭଳି ଜୀବନଭିକ୍ଷା ମାଗୁଥିଲା, ସେହି ଦୃଶ୍ୟ ଆମେ କେବେହେଁ ଭୁଲିପାରିବା ନାହିଁ । ତେବେ ଆମ ଦେଶରେ ଅନେକ ଚାଷୀ ଅଛନ୍ତି, ଯେଉଁମାନଙ୍କର ଘରଦ୍ୱାର, ଚାଷ ଜମି ସବୁ ପ୍ରତି ବର୍ଷ ବନ୍ୟାରେ ଧୋଇ ହୋଇଯାଉଛି । କିନ୍ତୁ ଯେଉଁ କୃଷି ଆମ ଜୀବନର ମାନଦଣ୍ଡ ତାହା ସହିତ ଜଡ଼ିତ କୃଷକମାନଙ୍କର ଦୟନୀୟ ଅବସ୍ଥା ଉପରେ ମିଡ଼ିଆର ଆଦୌ ଆଲୋଚନା କରାଯାଉ ନାହିଁ । ବାସ୍ତବିକ୍ ସମସ୍ୟା ତୁଳନାରେ କ୍ରିକେଟ୍, ଅଲିମ୍ପିକ୍ସ ବା ବଲିଉଡ଼୍‌କୁ ପ୍ରାଧାନ୍ୟ ଦିଆଯାଉଛି । ଗଣମାଧ୍ୟମ ଏହି ଦିଗରେ ଦାୟିତ୍ୱବାନ୍ ହେବାର ଆବଶ୍ୟକତା ରହିଛି । ଗଣମାଧ୍ୟମ ପ୍ରତିନିଧିମାନେ ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ସାମାଜିକ ବିଭାଜନ ପାଇଁ ମଧ୍ୟ ସେମାନେ କେତେକାଂଶରେ ଦାୟୀ ।

ଆଜିର ଯୁଗ ହେଉଛି ସୂଚନା ପ୍ରଯୁକ୍ତି ବିଦ୍ୟାର ଯୁଗ । ପ୍ରତ୍ୟେକ ଜିଲ୍ଲା ମୁଖ୍ୟାଳୟ ଓ ସଦର ମହକୁମାରେ ଗୋଷ୍ଠୀ ସୂଚନା କେନ୍ଦ୍ର ସବୁ ଡିଜିଟାଲ ତାରତମ୍ୟ ଦୂର କରିବା ଲାଗି ଖୋଲାଯାଇଛି । ଯେଉଁମାନେ ଏହି କମ୍ପ୍ୟୁଟର ବିପ୍ଳବ ଆରମ୍ଭ କରିଥିଲେ, ସେମାନେ ଭାବିଥିଲେ ଯେ ଖାଲି କମ୍ପ୍ୟୁଟର ଲଗାଇ ଦେଲେ ଗ୍ରାମାଞ୍ଚଳ ଲୋକମାନେ ନିଜ ନିଜର କି.ବୋର୍ଡ଼ ଚଲାଇବା ଶିଖିଯିବେ ଏବଂ ଇଣ୍ଟରନେଟ୍‌ର ପ୍ରୟୋଗ ଆରମ୍ଭ କରିଦେବେ ।

ତେବେ ଅଧିକତଃ ନିରକ୍ଷର ଗ୍ରାମବାସୀମାନଙ୍କୁ କମ୍ପ୍ୟୁଟର ଶିକ୍ଷା ଦେବା ଏତେ ସହଜ କାର୍ଯ୍ୟ ନୁହେଁ । ନିୟମିତ ଅଭ୍ୟାସ ନ କଲେ କମ୍ପ୍ୟୁଟର ସମ୍ପର୍କରେ ଜ୍ଞାନ ପାଇପାରିବା ନାହିଁ । ସରକାରଙ୍କ ଉଦ୍ଦେଶ୍ୟ ଅତି ମହତ୍ ଥାଇପାରେ, କିନ୍ତୁ ଏଥିଲାଗି ଯେଉଁ ପଦ୍ଧତି ଅବଲମ୍ବନ କରାଯାଉଛି, ତାହା ଯଥାର୍ଥ ନୁହେଁ । ଯୋଗାଯୋଗ କେନ୍ଦ୍ରର କିଭଳି ସଫଳ ଉପଯୋଗ କରାଯାଇପାରିବ ସେଥିରେ ବୈଦ୍ୟୁତିକ ଗଣମାଧ୍ୟମ ପ୍ରଭାବଶାଳୀ ଭୂମିକା ନିଭାଇପାରିବେ । ଏହା ବାକ୍‌ବିହୀନ ଲୋକମାନଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ବାକ୍ ମାଧ୍ୟମ ହୋଇପାରିବ । ଏହି କାର୍ଯ୍ୟକ୍ରମ କିପରି ସଫଳ ଭାବରେ କାର୍ଯ୍ୟକାରୀ କରାଯାଇପାରିବ ତାହା ଉପରେ ସେମାନେ ସରକାରଙ୍କୁ ସମ୍ବେଦନଶୀଳ କରିପାରିଥାନ୍ତେ ।

ଗୋଟିଏ ଦିଗରୁ ଦେଖିଲେ, ଦୂରଦର୍ଶନ ଭଳି ସରକାରୀ ଗଣମାଧ୍ୟମରେ ଗ୍ରାମାଞ୍ଚଳ ସମସ୍ୟା ଉପରେ ଅଧିକ ଆଲୋକପାତ କରାଯାଉଛି । ଅପରପକ୍ଷରେ ଘରୋଇ ଚ୍ୟାନେଲମାନଙ୍କରେ ସହରାଞ୍ଚଳ ଉପରେ ଅଧିକ ଦେଖାଯାଉଛି । ଗ୍ରାମାଞ୍ଚଳ ସମସ୍ୟା ଉପରେ ଦୃଷ୍ଟି ନିକ୍ଷେପ କରିବା ଲାଗି ସେମାନଙ୍କ ନିକଟରେ ସ୍ଥାନ ବା ସମୟ ନାହିଁ । ତେବେ ଏଥିରେ କିଛିଟା ବ୍ୟତିକ୍ରମ ମଧ୍ୟ ରହିଛି । ବର୍ତ୍ତମାନ ଘରୋଇ ସମ୍ବାଦ ଚ୍ୟାନେଲମାନେ ଶିକ୍ଷା, ସ୍ୱାସ୍ଥ୍ୟ ସମ୍ପର୍କୀୟ ଅଭାବ ଅସୁବିଧାମାନ ସମ୍ପର୍କରେ ନିୟମିତ ଆଲୋକପାତ କରିବା ଆରମ୍ଭ କରିଛନ୍ତି । ଅଜଣା ରୋଗ ଆଦି ଉପରେ ମଧ୍ୟ ସେମାନେ ସୂଚନା ପ୍ରସାର କରୁଛନ୍ତି । ଖାଉଟି ସୁରକ୍ଷା, ଶିଶୁଜନ୍ମ, ପୋଲିଓ ଟୀକା ସମ୍ପର୍କରେ ସମୟ ସମୟରେ ଆଲୋଚନା ଓ ବିଜ୍ଞାପନମାନ ଦେଖାଇଲେଣି । ଡେରିରେ ହେଲେ ମଧ୍ୟ ଅଣଦେଖା ହୋଇ ପଡୁଥିବା ଜନହିତକାରୀ ଯୋଜନା ସମ୍ପର୍କରେ ତର୍ଜମା, ଆଲୋଚନାର ବ୍ୟବସ୍ଥା ହେଉଛି । ସମସ୍ୟା ଲୋକଲୋଚନକୁ ଆସିଗଲେ, ସରକାର ତାହାର ସମାଧାନ ଖୋଜିବା ଲାଗି ବାଧ୍ୟ ହେଉଛନ୍ତି । ଏହା କେବଳ ଗଣମାଧ୍ୟମର ନିଷ୍ଠାପର ଉଦ୍ୟମ ଯୋଗୁଁ ସମ୍ଭବପର ହୋଇଛି ।

ଆଜିର ସରକାର ଓ ଆଧୁନିକ ସମାଜର ଏକ ବଡ଼ ସମସ୍ୟା ହେଉଛି ଦୁର୍ନୀତି । ଏହା ବିକାଶ କ୍ଷେତ୍ରରେ ଏକ ବଡ଼ ପ୍ରତିବନ୍ଧକ । ଏ କ୍ଷେତ୍ରରେ ମଧ୍ୟ ଗଣମାଧ୍ୟମର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଅନେକ ଦୁର୍ନୀତିର ପର୍ଦ୍ଦାଫାଶ କରିବାରେ ଗଣମାଧ୍ୟମ ସଫଳ ହୋଇଛି । ଏହା ମଧ୍ୟ ସତ୍ୟ ଯେ ଗଣମାଧ୍ୟମରେ ପୋଖତ ସାମ୍ବାଦିକମାନଙ୍କର ଘୋର ଅଭାବ ରହିଛି । ଭଲ ମାତ୍ରାରେ ଭତ୍ତା ଆଦି ନ ମିଳିଲେ, ସେମାନେ ମଧ୍ୟ ଦୁର୍ନୀତିର ଶିକାର ହେଉଛନ୍ତି । ଅନୁସନ୍ଧାନମୂଳକ ସାମ୍ବାଦିକତା ପାଇଁ ପୋଖତ ପେସାଦାର ବ୍ୟକ୍ତିମାନଙ୍କର ଆବଶ୍ୟକତା ରହିଛି ଏବଂ ଉତ୍ତମ ଉତ୍ସ ମଧ୍ୟ ଆବଶ୍ୟକ । ଅଭିଜ୍ଞ ସାମ୍ବାଦିକମାନେ ଭଲ ଦରମା ଓ ଭତ୍ତା ମିଳୁଥିବା ସ୍ଥାନରେ କାର୍ଯ୍ୟ କରିବାକୁ ପସନ୍ଦ କରୁଛନ୍ତି । ସେଥିପାଇଁ ଆମେ ସେମାନଙ୍କୁ ଦୋଷ ଦେଇପାରିବା ନାହିଁ । ସବୁ ସ୍ଥାନରେ ଗଣମାଧ୍ୟମର ବିକାଶ ସଠିକ୍ ଭାବରେ ହୋଇ ନାହିଁ । ଗଣମାଧ୍ୟମ ଯଦି ସବୁଠାରୁ କମ୍ ପଇଠ କରୁଥିବା ଚାକିରି ହୋଇ ରହେ, ତେବେ ଗଣତନ୍ତ୍ରର ପରିପକ୍ୱ ବିକାଶ ହୋଇପାରିବ ନାହିଁ ।

ଆଞ୍ଚଳିକ ସମ୍ବାଦପତ୍ରମାନେ ନିଜ ସଂସ୍ଥାକୁ ବଞ୍ଚାଇବା ପାଇଁ ଅହରହ ସଂଗ୍ରାମ କରନ୍ତି, ପରନ୍ତୁ ମହାନଗରୀରୁ ପ୍ରକାଶିତ ସମ୍ବାଦପତ୍ରମାନଙ୍କ ନିକଟରେ ଏହି ଦୁରବସ୍ଥା ଦେଖାଯାଏ ନାହିଁ । ତେଣୁ ସେମାନେ ଆର୍ଥିକ ଦିଗରୁ ପ୍ରକାଶ ଜାରି ରଖିବାକୁ ହେଲେ, କେବଳ ଯେଉଁ ଖବର ଛାପିଲେ ସମ୍ବାଦପତ୍ର ବିକ୍ରୟ ହେବ, ତାହାହିଁ ଛାପନ୍ତି ଏବଂ ଏହିସବୁ ସମ୍ବାଦ ମୁଖ୍ୟତଃ ରୋମାଞ୍ଚକର ହୋଇଥାଏ । ଏହା ସବୁ ପ୍ରତ୍ୟେକ ଦିନ ପରିବର୍ତ୍ତନ ହୋଇଥାଏ । ଅଭିଯାନ ଭଳି କୌଣସି ସମ୍ବାଦ ଛାପିବା ପାଇଁ ସେମାନଙ୍କ ପାଖରେ ସ୍ଥାନ ହିଁ ନ ଥାଏ । ବିକାଶମୂଳକ ସମ୍ବାଦ ହେଉଛି ଏଭଳି ସମ୍ବାଦ ଯାହା ନିୟମିତ ଭାବରେ ଛାପିବା ଆବଶ୍ୟକ ପଡ଼ିଥାଏ । ଉଦାହରଣସ୍ୱରୂପ, ବସ୍ତୁତଃ କାର୍ଯ୍ୟ କରୁ ନ ଥିବା ଗ୍ରାମାଞ୍ଚଳ ବା ସହରାଞ୍ଚଳ ସ୍କୁଲ, କଲେଜ ଓ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନ ବିଷୟକୁ ନିଆଯାଇପାରେ । ଏଭଳି ଶିକ୍ଷାନୁଷ୍ଠାନ ଅଛନ୍ତି, ଯେଉଁମାନେ କେବଳ କାଗଜରେ କାର୍ଯ୍ୟ କରୁଛି, ଯେଉଁମାନେ ଏହି ବିଦ୍ୟାଳୟ ବା ଶିକ୍ଷାନୁଷ୍ଠାନ ଚଳାଇବା ଲାଗି ଦାୟିତ୍ୱବାନ୍ ବା ଯେଉଁମାନେ ଏଥିଲାଗି ଉଦ୍ଦିଷ୍ଟ ଅର୍ଥ ବାଟମାରଣା କରୁଛନ୍ତି, ସେମାନଙ୍କ ଉପରେ ଗୋଟିଏ ଖବର ଲେଖିନେଲେ ତାହାର ପ୍ରଭାବ କିଛି ହେବ ନାହିଁ । କିନ୍ତୁ ଗଣମାଧ୍ୟମମାନେ ଏକାଠି ହୋଇ କ୍ରମାଗତ ଭାବରେ ଏହି ବିଷୟ ଉପରେ ଲେଖିଲେ ନିଶ୍ଚିତ ଭାବରେ ସ୍ଥିତିରେ ସୁଧାର ହୋଇପାରିବ । ତେଣୁ ନିୟମିତ ଭାବରେ କୌଣସି ସମସ୍ୟା ଉପରେ ଆଲୋକପାତ କରିବା ହେଉଛି ବିକାଶ ଦିଗରୁ ଅତୀବ ଗୁରୁତ୍ୱପୂର୍ଣ୍ଣ ।

ବିକାଶର ପ୍ରତିବନ୍ଧକ ସାଜୁଥିବା କେତେଗୁଡ଼ିଏ କାରଣ ମଧ୍ୟ ରହିଛି । ସେଗୁଡ଼ିକ ହେଲା, ସଡ଼କ ଯୋଗାଯୋଗର ଅଭାବ

ବିପଣନ ସୁବିଧା ସୁଯୋଗର ଅଭାବ, ମୂଲ୍ୟଯୁକ୍ତ ୟୁନିଟ୍‌ଗୁଡ଼ିକର ଅଭାବ ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଲା କାର୍ଯ୍ୟାନୁଷ୍ଠାନ ସଂସ୍ଥାମାନଙ୍କର ଅଭାବ । ବିଭିନ୍ନ ସମସ୍ୟା ଉପରେ ଆଲୋକପାତ କରିବାରେ ଗଣମାଧ୍ୟମର ବି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କେତେକ କ୍ଷେତ୍ରରେ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀମାନେ ବିକାଶମୂଳକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବାରେ ପ୍ରତିବନ୍ଧକ ସୃଷ୍ଟି କରିଥାଆନ୍ତି । ତେଣୁ ଗଣମାଧ୍ୟମମାନେ ବିକାଶ ପଥରେ ପ୍ରତିବନ୍ଧ ସୃଷ୍ଟି କରୁଥିବା କାରଣଗୁଡ଼ିକ ସମାପ୍ତ କରିବା ଉପରେ କାର୍ଯ୍ୟ କରିବାକୁ ପଡ଼ିବ ।

ସାମାଜିକ ସଂହତିରେ ଗଣମାଧ୍ୟମର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଆଜିର ସମୟରେ ଆର୍ଥିକ ପ୍ରାକୃତିକ ମାନବୀୟ ସମ୍ବଳର ଯେଉଁଭଳି ଅନ୍ୟାୟୋଚିତ ଉପଯୋଗ ହେଉଛି, ତାହା ତୁରନ୍ତ ବନ୍ଦ କରିବାକୁ ହେବ । ସତ୍ୟ ପରିବେଷଣ କରିବା ହିଁ ଗଣମାଧ୍ୟମର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । ଆଜି ଗଣମାଧ୍ୟମ ସହଯୋଗୀ ହୋଇଥିଲେହେଁ ସେମାନଙ୍କର ଲକ୍ଷ୍ୟ ସାମାଜିକ ସେବା ନ ହୋଇ, କେବଳ ଲାଭ ହାସଲ କରିବାରେ ସୀମିତ ରହିଛି । ଦେଶର ଯୋଜନା ନିର୍ଦ୍ଧାରଣକାରୀମାନଙ୍କ ଦୃଷ୍ଟିକୁ ଯେକୌଣସି ସମସ୍ୟା ଆଣିବାକୁ ପ୍ରୟାସ କେବଳ ମିଳିତ ଉଦ୍ୟମ ହିଁ ସମ୍ଭବପର । ଏହା ଆଦୌ ଏକାକୀ ପ୍ରୟାସରେ ସମ୍ଭବ ନୁହେଁ । ମୌଳବାଦ, ବିଚ୍ଛିନ୍ନତାବାଦ, ନକ୍ସଲ ସମସ୍ୟା, ଦୁର୍ନୀତି ନିବାରଣ, କନ୍ୟାଭ୍ରୁଣ ହତ୍ୟା, ଯୌତୁକ ନିରୋଧ ଆଇନ୍‌ର ଦୁରୂପଯୋଗ, ରାସ୍ତାଘାଟ, ପିଇବା ପାଣି ଓ ସ୍ୱାସ୍ଥ୍ୟ ସେବା ଭଳି ଅନେକ ସମସ୍ୟାର ଘେରରେ ଆମ ଦେଶ ତଥା ସମାଜ କବଳିତ । ଏହି ସବୁ ସମସ୍ୟାକୁ ଦୃଷ୍ଟି ଆଣିବାକୁ ହେଲେ ଗଣମାଧ୍ୟମମାନଙ୍କର ସଂଘବଦ୍ଧ ଉଦ୍ୟମ ଜରୁରୀ । ଏହାହିଁ ହେଉଛି ଆହ୍ୱାନ । ଆମେ ସତ କହିଲେ ଯଦି ମୃତ୍ୟୁବରଣ କରିବା, ତେବେ ସତ୍ୟ ପରିବେଷଣ ହିଁ ଆମ ଗଣ ମାଧ୍ୟମର ମୁଖ୍ୟ ଆୟୁଧ ହେଉ । ଏଥିପାଇଁ ସମସ୍ତ ଜଳାଞ୍ଜଳି ଦେବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହେବା ଆବଶ୍ୟକ । ମିଥ୍ୟାରେ ହିଁ ବିନାଶ ଆସେ, ସତ୍ୟରେ ବିକାଶ ଆସେ । ତେଣୁ ସତ୍ୟ ସମ୍ବାଦ ପରିବେଷଣ ଆମ ଗଣମାଧ୍ୟମର ଧ୍ୟେୟ ହେଉ । ଭାରତ ବିଶ୍ୱରେ ବିକାଶଶୀଳ ଦେଶ ବଦଳରେ ବିକଶିତ ଦେଶର ମର୍ଯ୍ୟାଦା ପାଉ । ଏଥିପାଇଁ ଗଣମାଧ୍ୟମମାନେ ମିଳିତଭାବେ ବିକାଶର ରାସ୍ତାକୁ ପରିଷ୍କାର ଓ ପ୍ରଶସ୍ତ କରନ୍ତୁ । ସେମାନଙ୍କ ଉଦ୍ୟମରେ ହିଁ ପ୍ରଗତି ଲୁଚି ରହିଛି ।



ଅଧ୍ୟାପକ
ଜି.ଏମ୍.ଲ କଲେଜ, ପୁରୀ–୭୫୨୦୦୩
ଶ୍ରୀବିହାର, ପୁରୀ

# ବିରଜା ଦର୍ଶନ

ମଧୁସୂଦନ ସାହୁ

ଦଶ'ରା ଭିଡ଼ ଠେଲି
ଧୀରେ ଧୀରେ ଯିବା ଚାଲି
ଦେଖିବା ବିରଜା ମାତା ମଣ୍ଡଳୀରେ ସାଙ୍ଗ
ଓଡ଼ିଆ ଶିଳ୍ପୀର କଳାଚାତୁରୀ ।୦।

ଦଶଅଶ୍ୱମେଧ ଘାଟେ ସାରି ତର୍ପଣ
ଯଜ୍ଞ ବିଗ୍ରହଙ୍କୁ ତହିଁ କରି ଦର୍ଶନ
ମନ୍ଦିର ଚଉପାଶେ ବୁଲିବାରେ ହରଷେ
ନବଗ୍ରହଙ୍କୁ ଦେଖି ଆଖି ରହିବ ଲାଖି
ସପ୍ତମାତୃକା ଦେଖ ନ ଭୁଲିରେ ସାଙ୍ଗ ।୧।

ଶ୍ରୀଜଗନ୍ନାଥଙ୍କୁ ତହିଁ ଦର୍ଶନ କରି
ଗୁପ୍ତଗଙ୍ଗା ଦେଖିବାକୁ ଯିବା ବାହାରି
ପାଶେ ଅଛି ମନ୍ଦିର ଶ୍ରୀଆଖଣ୍ଡଳେଶ୍ୱର
ତହିଁ ବିଜେ କରନ୍ତି ଦୁଃଖୀ ଦୁଃଖ ହରନ୍ତି
ଦୁଃଖ ଜଣାଅ ପାଦେ ଜୁହାରିରେ ସାଙ୍ଗ ।୨।

ଶତଶମ୍ଭୁ ସ୍ନାନନୀରେ ହୋଇଛି ପୂର୍ଣ୍ଣ
କୁସୁମାସର ବୋଲିଣ ଖ୍ୟାତ ତା ନାମ
ତେନ୍ତୁଳିମାଳ ଯିବା-ଶୁଭସ୍ତମ୍ଭ ଦେଖିବା
କର୍ପୂର ଗଲା ଉଡ଼ି କନା ରହିଛି ପଡ଼ି
କିଏ ଶୁଣିବ ଦୁଃଖ ଆମ୍ଭରିରେ ସାଙ୍ଗ ।୩।

ଜଗତ ଜନନୀ ପଦ ଦର୍ଶନ ପାଇଁ
ଦେବୀଦ୍ୱାର ଉପକଣ୍ଠେ ମିଳିବୁ ଯାଇଁ
ବ୍ରହ୍ମାକୁଣ୍ଡ ପାଶରେ ଦଣ୍ଡେ ରହ ସେଠାରେ
ବ୍ରହ୍ମା ଆହୁତି କାଳେ ଜାଗରୁ ଜନ୍ମ ନେଲେ
ଯାଜ୍ଞସେନୀ ଜନନୀ ଆମରିରେ ସାଙ୍ଗ ।୪।

ତିନି ଭୁବନରେ ନାହିଁ ଏପରି ଦେବୀ
ଜଗତ ମଙ୍ଗଳପାଇ ହୁଅଇ ଭାବି
ରଥାରୂଢ଼ ସେ ହୋଇ ଦୁଷ୍ଟ ଦର୍ପ ଗଞ୍ଜଇ
ପଞ୍ଚ ପାପ ବିନାଶି ମୁଖ ଦିଏ ଭରସି
ଦୁଃଖ ଦେଖେନା ଭବେ କାହାରିରେ ସାଙ୍ଗ ।୫।

ବେଢ଼ାରେ ଦେଖ ଗରୁଡ଼ ଯୋଡ଼ ହସ୍ତରେ
ନାଭିଗୟା ନାଭି କୁଣ୍ଡ ଅଛି ପାଶରେ
ଅସୁମାରି ଛପତ୍ୱ ଶୋହେ ମନ୍ଦିର ଗାତ୍ର
ଭାଙ୍ଗି କଳାପାହାଡ଼ କରିଛି ନାରଖାର
ମନ୍ଦିରେ ନାହିଁ ପୂରୁବ ଶିରୀରେ ସାଙ୍ଗ ।୬।

ଶତ ଅଷ୍ଟୋତ୍ତର ଶିବଲିଙ୍ଗ ଦେଖିବା
ସଂସାର ଦୁଃଖଯାତନା ସବୁ ଭୁଲିବା
ଭୋଗମଣ୍ଡପ ଯାଇ ଭୋଗ କିଣିବା ଭାଇ
ଧୂପବତୀ ଜଳାଇ ଗନ୍ଧ କୁସୁମ ନେଇ
ଜୁହାର କର ଜାଳି ଦୀପାଳୀରେ ସାଙ୍ଗ ।୭।

ଦର୍ଶନ କରିବା ମାତଃ ସିଂହବାହିନୀ
ଶୂଳବିଦ୍ଧ ମହିଷାର ପୁଚ୍ଛଧାରିଣୀ
ଦକ୍ଷହସ୍ତେ ତ୍ରିଶୂଳ ବାମ କରେ ଲଙ୍ଗୁଳ
ବାମ ପାଦରେ ଚାପି ମହିଷାସୁର ତୋଟି
ଦର୍ଶନେ ପାପ ଯିବ ବାହୁଡ଼ିରେ ସାଙ୍ଗ ।୮।

ବହୁ ପୁରାତନ କ୍ଷେତ୍ର ବିରଜା କ୍ଷେତ୍ର
ରଥେ ବସି ଦେଖିଥିଲ ବିଶ୍ରବା ସୁତ
କେତେ ଯେ ମୁନିଋଷି ସାଧୁ ବିପ୍ରସନ୍ନ୍ୟାସୀ
ବହୁତ କଷ୍ଟ କରି ନଦୀ ହୁଅନ୍ତି ପାରି
ବିକଳେ ଗୋକୁଳ ପୁଚ୍ଛକୁ ଧରି ରେ ସାଙ୍ଗ ।୯।

ଲୋମଶ ମୁନି ବଚନେ ପଣ୍ଡୁ କୁମର
ଅଜ୍ଞାତବାସେ ଆସିଲେ କ୍ଷେତ୍ର ପ୍ରବର
ଦ୍ରୌପଦୀ ସଙ୍ଗେ ଘେନି ପବିତ୍ର ଜଳେ ସ୍ନାନି
ପାପତାପ ନାଶିଲେ ପିତୃଗଣ ତୋଷିଲେ
ରାଜ୍ୟ ଭୋଗିଲେ ନାଶି ଅଇରିରେ ସାଙ୍ଗ ।୧୦।

ସେହି ଦେବୀ ପଦ କଞ୍ଜେ କରି ପ୍ରଣତି
ଗୁହାରିବା ଦେଶୁ ଦୂର ହେଉ ବିପତ୍ତି
ଶୌର୍ଯ୍ୟଶାଳୀ କ୍ଷତ୍ରିୟ ବେଦ ବିପ୍ରତନୟ
ବିଜ୍ଞ ସାଧବ କୁଳ ଆସନ୍ତୁ ମହୀତଳ
ଦେଶରୁ ହଟିଯିବ ବେକାରୀରେ ସାଙ୍ଗ ।୧୧।



ରୁଦ୍ରପୁର, ଯାଜପୁର